# ଜ୍ଞାନ ବିଜ୍ଞାନ

ଅଧ୍ୟାପକ : ନିଖିଳାନନ୍ଦ ପାଣିଗ୍ରାହୀ



ଜ୍ଞାନ ବିଜ୍ଞାନ : ଲେଖକ : ନିଖିଳାନନ୍ଦ ପାଣିଗ୍ରାହୀ, ପ୍ରକାଶକ : ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ପ୍ରକାଶ : ୧୯୯୧ ପ୍ରଚ୍ଛଦପଟ : ଅସିତ୍ ମୁଖାର୍ଜୀ, ମୁଦ୍ରକ : ରଞ୍ଜିତ୍ ପ୍ରିଣ୍ଟର୍ସ, ରାଜାବଗିଚା, କଟକ-୯

---

**Gyan Bigyan** : Nikhilananda Panigrahi, Publishers : Friends' Publishers, Binod Behari, Cuttack-753002 (ORISSA) INDIA, First Edition : 1991, Cover Design : Asit Mukherjee, Printer : Ranjit Printers, Rajabagicha, Cuttack-9

Price : Rs. 25

ଓଡ଼ିଆ ଦର୍ଶନ-ସାହିତ୍ୟର ଅମ୍ଲାନ ପ୍ରତିଭା ଡକ୍ଟର ଦେବକାନ୍ତ ମିଶ୍ରଙ୍କ କରକମଳରେ ଗଭୀର ସମ୍ମାନର ସହିତ ଉତ୍ସର୍ଗୀକୃତ···

ଲେଖକ

# ପଦେ

ଏହି ସଙ୍କଳନର ସନ୍ନିବେଶିତ ପ୍ରବନ୍ଧମାନ ଧରଣୀ, ବିଜ୍ଞାନ ପ୍ରଭା, ସମାଜ, ପୌରୁଷ, ଗୋକର୍ଣ୍ଣିକା, ସମ୍ବାଦ, ପରିବେଶ ସୁରକ୍ଷା ବର୍ତ୍ତିକା ଓ ପ୍ରବନ୍ଧ ସଙ୍କଳନ, ଫଲ୍‌ଗୁ, ଅମୃତାୟନ, ବିଜ୍ଞାନାଲୋକ, ସଜଫୁଲ, ଜୀବନରଙ୍ଗ, ଓ ଅନେକରେ ବିଭିନ୍ନ ସମୟରେ ପ୍ରକାଶିତ ହୋଇଛି । ସମ୍ପୃକ୍ତ ପତ୍ରପତ୍ରିକାର ସମ୍ପାଦକମାନଙ୍କୁ ଏହି ଅବସରରେ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ଓଡ଼ିଆ ଭାଷାରେ ବିଜ୍ଞାନ-ସାହିତ୍ୟର ଯେଉଁ ଶୋଚନୀୟ ଅଭାବ ପରିଦୃଷ୍ଟ ହେଉଛି, ତାହା ପୂରଣ କରିବା ପାଇଁ ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସର ପ୍ରୋପ୍ରାଇଟର ଶ୍ରୀ ସହଦେବ ପ୍ରଧାନ ଆଗେଇ ଆସି ଏହି ସଙ୍କଳନଟିର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଥିବା ଯୋଗୁଁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଛି ।



ଲେଖକ

# ସୂଚୀପତ୍ର


୧ । ଠିଆ ମଣିଷର ମାପ ୧

୨ । ଅବସ୍ତୁବ ଜୀବତ ବା ମୃତ ୧୧

୩ । ତର ଜୀବନ ତର ସ୍ୱଭାବ ୧୯

୪ । ବୈଜ୍ଞାନିକ ଦୃଷ୍ଟିରେ ଖାଦ୍ୟ-ସମସ୍ୟା ୨୬

୫ । 'ଶବ'ର ମାନବୃଦ୍ଧି ପ୍ରସଙ୍ଗ ୩୮

୬ । ଟିକାଳ ଓ ଜନ୍ମମୃତ୍ୟୁ ରହସ୍ୟ ୪୬

୭ । ଉଲ୍କା ବସ୍ତୁ ଉପରେ ଅନୁସନ୍ଧାନ ୫୨

୮ । ଚନ୍ଦ୍ରର ପ୍ରକୃତ ଓ ଉତ୍ପତ୍ତି ୫୯

୯ । ଅନ୍ତରୀକ୍ଷ ଗବେଷଣା ଓ ଚନ୍ଦ୍ର ୬୫

୧୦ । ବିଦ୍ୟୁତ୍ ଓ ମୃତ୍ୟୁ ୭୪

୧୧ । ପ୍ରଳୟର ଅଗ୍ନିବେଶ ୭୯

୧୨ । ଜୀବସତ୍ତ୍ୱ ଓ ପରିବେଶ ୮୫

୧୩ । ପରିବେଶ ଓ ସହଯୋଗ ୯୨

୧୪ । ଲୁଚି ରହିଥିବା ଆମ ସାଥୀ ୯୯

୧୫ । ପଶୁଜଗତର ବୈଜ୍ଞାନିକତା ୧୧୦

୧୬ । ଜଳର ଜୀବନ ରୂପ ଧାରଣ ୧୧୬

୧୭ । ସ୍ୱପ୍ନ ଜଗତର ପ୍ରାସଙ୍ଗିକତା ୧୨୬

୧୮ । ଘଡ଼ି ଓ ଇଲେକ୍ଟ୍ରୋନିକ୍ସ ୧୩୫

୧୯ । ଏକ ଉଜ୍ଜ୍ୱଳ ମସ୍ତିଷ୍କ ୧୩୯

# ଠିଆ ମଣିଷର ମାପ

ଆମ ମୁଣ୍ଡରେ ଠେଙ୍ଗା ପଡ଼ିଲେ ପଡ଼ୁ ପଡ଼େ, ଆମେ ଡେଙ୍ଗା ହେବା ପାଇଁ ଆଗ୍ରହୀ । ବିଶେଷତଃ ଯେଉଁମାନେ ଯୌବନାବସ୍ଥାରେ ଥାଆନ୍ତି, ସେମାନେ ଅଧିକ ଆକର୍ଷଣୀୟ ଦେଖାଯିବେ ବୋଲି ଲମ୍ବା ହେବାକୁ ଅସ୍ତବ୍ୟସ୍ତ ହୋଇପଡ଼ନ୍ତି । ସୃଷ୍ଟି ସଂପ୍ରତିକ ପରିସ୍ଥିତିରେ ଦେଖିବାକୁ ଏମାନଙ୍କ ମଧ୍ୟରୁ ଯଦି କେହି ହଠାତ୍ ଚଳଚ୍ଚିତ୍ର ଜଗତର ନମ୍ବରୱାନ୍ ଷ୍ଟାର୍ ହେବା ପାଇଁ ସ୍ୱପ୍ନରେ ବିଭୋର ହୋଇଥାନ୍ତି, ତାହାହେଲେ ନିଜ ଉଚ୍ଚତା ବଢ଼ାଇବା ପାଇଁ ଅମିତାଭ ବଚ୍ଚନଙ୍କୁ ସ୍ମରଣପୂର୍ବକ ପ୍ରାଣମୂର୍ଚ୍ଛା ଉଦ୍ୟମ ଆରମ୍ଭ କରିଦିଅନ୍ତି ।

ଅବଶ୍ୟ ଡେଙ୍ଗା ହେବା ପାଇଁ ଇଚ୍ଛା ଯେମିତି ଲୋକମାନଙ୍କୁ ପାଉଛି, ତାହା କେବଳ ଆମ ଦେଶରେ କିମ୍ବା ବିଂଶ ଶତାବ୍ଦୀର ଅପରାର୍ଦ୍ଧରେ ସୀମିତ ନୁହେଁ । ବିଭିନ୍ନ ସମୟରେ ଅଲଗା ଅଲଗା ପରିସ୍ଥିତିରେ ବିଶ୍ୱସାରା ଡେଙ୍ଗାମାନଙ୍କର ଜୟଗାନ କରିବା ଦୃଷ୍ଟାନ୍ତ ରହିଛି । ଏପରିକି ମହାପୁରୁଷଙ୍କର ଜୀବନୀପରି ସେମାନଙ୍କ ଜୀବନର ଟିକିନିଖି ବିଷୟ ଜାଣିବାକୁ ସାଧାରଣ ଲୋକେ ଆଗ୍ରହ ପ୍ରକାଶ କରିଥାନ୍ତି । ରବର୍ଟ ପେର୍ସିଙ୍ଗ ଓ୍ୱାଡ୍‌ଲୋ ଏହାର ଏକ ପ୍ରକୃଷ୍ଟ ଉଦାହରଣ ।

୧୯୧୮ ମସିହା ଫେବୃଆରି ୨୨ ତାରିଖ ଦିନ ବିଶ୍ୱର ସବୁଠାରୁ ଡେଙ୍ଗା ବ୍ୟକ୍ତି ବୋଲି ବୁଝାପାଉଥିବା ଓ୍ୱାଡ୍‌ଲୋ ମହାଶୟ ଆମେରିକାର ଆଲଟନଠାରେ ଜନ୍ମଗ୍ରହଣ କରିଥିଲେ । ସେ ୧୯୪୦ ମସିହାରେ ମରିବା ବେଳେ ପ୍ରାୟ ନଅ ଫୁଟ ଲମ୍ବା ଥିଲେ । ତାଙ୍କ ଶବକୁ କବର ଦେବା ପାଇଁ ଯେଉଁ ଶବାଧାରଟି ବ୍ୟବହୃତ ହୋଇଥିଲା, ତାର ଆକାର ଥିଲା—୧୦'୯''[ × ୩୨'' × ୩୦'' । ତାଙ୍କ ଜୋତାର ଦୈର୍ଘ୍ୟ ଥିଲା ୧୮.୫ଇଞ୍ଚ ଏବଂ ହାତ କଚଠାରୁ ମଧ୍ୟମ ଆଙ୍ଗୁଠି ଯାଏଁ ଲମ୍ବାଥିଲା ୧୨.୭୫ ଇଞ୍ଚ । ସେ ଦୈନିକ ଆଠ ହଜାର କେଲୋରି ଖାଦ୍ୟ ଖାଉଥିଲେ । ତାଙ୍କୁ ମୋଟେ ନଅ ବର୍ଷ ବୟସ

ହୋଇଥିବା ବେଳେ ସେ ୧୬୦ ପାଉଣ୍ଡ ଓଜନ ବିଶିଷ୍ଟ ତାଙ୍କ ପିତାଙ୍କୁ ଗୃହ ଉପରକୁ ଟେକି ଟେକି ନେଇ ଯାଉଥିଲେ । ୧୯୩୯ ସାଲରେ ସେ ଯେତେବେଳେ ସେଣ୍ଟ୍ ଲୁଇସ୍ ପରିଦର୍ଶନରେ ଯାଇଥିଲେ, ସେଠାକାର ଲୋକେ ଶହ ଶହ ସଂଖ୍ୟାରେ ତାଙ୍କୁ ଦେଖିବା ପାଇଁ ଜମା ହୋଇଥିଲେ ।

ମଣିଷର ଅନ୍ୟ କୌଣସି ଗୁଣ ଥାଉ ବା ନଥାଉ, ସେ ଯଦି ଖାଲି ଅସାଧାରଣ ଭାବେ ଡେଙ୍ଗା ହୋଇପାରିଲା, ତାହାହେଲେ ବିଶ୍ୱବିଖ୍ୟାତ ହେବା ପାଇଁ ସେ ଯୋଗ୍ୟ ହୋଇପାରୁଛି । ଯଦି ଦୈବାତ୍ ସେ କୌଣସି ସର୍କସ ପାର୍ଟିରେ ଯୋଗଦିଏ, ତାହା ହେଲେ ସର୍କସ-ମାଲିକ ତାକୁ ଦର୍ଶନୀୟ ବାଘ, ସିଂହ ଇତ୍ୟାଦି ପଶୁ ପରି ବିଜ୍ଞାପନ ଭାବେ ବ୍ୟବହାର କରେ ଏବଂ ଅଜସ୍ର ଅର୍ଥ ଉପାର୍ଜନ କରିଥାଏ ମଧ୍ୟ । ଡେଙ୍ଗା ହେବା ଦ୍ୱାରା ଏପରି ଧନ, ମାନ, ସମ୍ମାନ ମିଳୁଥିବା ଯୋଗୁଁ ସାମାନ୍ୟ ଡେଙ୍ଗା ବ୍ୟକ୍ତିମାନେ ମଧ୍ୟ ମିଥ୍ୟା ଓ ଅସାଧୁ ଉପାୟ ଅବଲମ୍ବନ କରିଥାନ୍ତି । ସେମାନଙ୍କୁ ପରୀକ୍ଷା କରି ମାପଜୋଖ କରୁଥିବା ଡାକ୍ତରମାନଙ୍କୁ ଧରାଧରି କରି ନିଜ ଉଚ୍ଚତାକୁ ବଢ଼ାଇଥାନ୍ତି । ଡାକ୍ତରମାନେ ମଧ୍ୟ ବେଳେବେଳେ ଏହି କାଳ୍ପନିକ ଉଚ୍ଚତା ପାଇଁ ପ୍ରମାଣପତ୍ର ଦେବାକୁ ପଶ୍ଚାତ୍‌ପଦ ହୋଇନଥାନ୍ତି । ଉଦାହରଣ ଭାବେ ମିଅ ଖାଁ ଇବାନ ଭାର୍ଣ୍ଣିସ ଖାଁ (ଜନ୍ମ ୧୯୧୩)ଙ୍କ ବିଷୟରେ ବିଚାର କରାଯାଉ । ତାଙ୍କର ତଥାକଥିତ ଉଚ୍ଚତା ବିଷୟରେ ଜାଣିବା ପାଇଁ ୧୯୩୫ ସାଲରେ ଭିଏନା ଠାରେ ସୋସାଇଟି ଅଫ୍ ଫିଜିସିଆନ୍ ତରଫରୁ ଯେଉଁ ସମ୍ମିଳନୀ ଆୟୋଜନ କରାଯାଇଥିଲା, ସେଥିରେ ପ୍ରଫେସର ଫ୍ଲକ୍ସ, ମିଅ ଖାଁଙ୍କର ବହୁତ ଫୋଟୋଗ୍ରାଫ ଦେଖାଇ ସେ ୧୦' ୨" ବୋଲି ଦର୍ଶାଇଥିଲେ । କିନ୍ତୁ ଯେତେବେଳେ ମିଆ ଖାଁ ଡେହେରାଡୂନ୍‌ର ଗୋଟିଏ ଚିକିତ୍ସାଳୟରେ ଅପରେସନ୍ ପାଇଁ ପହଞ୍ଚିଲେ, ସେତେବେଳେ ଜଣାଗଲା ଯେ, ତାଙ୍କର ପ୍ରକୃତ ଉଚ୍ଚତା ହେଉଛି ମାତ୍ର ୭' ୩" । ଏଥିରୁ ଜଣାଯାଏ, ମିଅ ଖାଁ କେମିତି ତାଙ୍କର ଉଚ୍ଚତାକୁ ମିଛରେ ବଢ଼ାଇ ଚଢ଼ାଇ ଜନସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କରୁଥିଲେ ।

ଠିକ୍ ସେମିତ ବର୍ନ୍ୟୁମ ଆଣ୍ଡ୍ ବେଲି ସର୍କସ୍‌ର ମିଃ ଏଡ଼ି କାର୍‌ମେଲ (ଇସ୍ରାଏଲର ତେଲଅଭିଭ ଠାରେ ୧୯୩୬ ସାଲରେ ଜନ୍ମିତ) ନାମକ ଜଣେ ବ୍ୟକ୍ତି ନିଜକୁ ନଅ ଫୁଟ ଉଚ୍ଚତା ବିଶିଷ୍ଟ ବୋଲି ପରିଚୟ ଦେଇ, 'ପୃଥିବୀର ସବୁଠାରୁ ଡେଙ୍ଗା ବ୍ୟକ୍ତି' ଭାବେ ନାମିତ ହେବାକୁ ଦାବି କରିଥିଲେ । କିନ୍ତୁ ତାଙ୍କର ପ୍ରକୃତ ଉଚ୍ଚତା ଥିଲା ମୋଟେ ୭' ୭" । ଅବଶ୍ୟ ଏଡ଼ି କାର୍‌ମେଲ ଗୋଟିଏ ସର୍କସରେ କାମ କରୁଥିବା ଯୋଗୁଁ ତାଙ୍କ ଉଚ୍ଚତା ଅତିରଞ୍ଜିତ କରି କହିବା ବ୍ୟବସାୟିକ ଦୃଷ୍ଟିରୁ ଆବଶ୍ୟକ

ଥିବ ! ସେ ଯାହାହେଉ, ଏହି ପ୍ରକାର ଜାଣିଶୁଣି ଭୁଲ୍ ତଥ୍ୟ ଦିଆଯାଉଥିବା ଯୋଗୁଁ ସର୍କସ୍‌ପାର୍ଟି'ର ଲମ୍ବା ଲୋକଙ୍କ ତଥାକଥିତ ଉଚ୍ଚତାକୁ ସାଧାରଣତଃ ଅନ୍ତର୍ଜାତିକ ସ୍ତରରେ ସ୍ୱୀକାର କରାଯାଇ ନଥାଏ ।

କିନ୍ତୁ ପ୍ରଶ୍ନ ଉଠୁଛି ଯେ, ଏହି ଲମ୍ବା ମଣିଷମାନେ ନିଜ ଶାରୀରିକ ଦୈର୍ଘ୍ୟତା ଯୋଗୁଁ କେତେ ଦୂର ଖୁସି । ବିଶେଷତଃ ସେମାନେ ବିବାହ କରିବା ପାଇଁ ସହଜରେ ଉପଯୁକ୍ତ ଜୀବନ-ସଙ୍ଗିନୀଟିଏ ଖୋଜି ପାଉଥାନ୍ତି କି ?

ଆମେ ଜାଣୁଁ ଯେ, ବର ଓ କନ୍ୟା ଠିକ୍ ଯୋଡ଼ି ହେବା ପାଇଁ ସମାନ୍ତର ଉଚ୍ଚତା ଆବଶ୍ୟକ । ନଚେତ୍ ସ୍ୱାଙ୍ଗ ହୋଇ ସବୁ ବାହାରିବା ପାଇଁ ମନ ବଳିବ ନାହିଁ । ଏହି ବିଷୟ ପ୍ରତି ସଚେତନ ହୋଇ କାନାଡ଼ାସ୍ଥିତ ନୋଭାସ୍କୋଟିଆର ଶ୍ରୀମତୀ ଆନ୍ନା ସ୍ୱାନେନ ସ୍ୱାନ (ଉଚ୍ଚତା ୭' ୫½")ଙ୍କୁ ହ୍ୱାଇଟସ୍‌ବର୍ଗର ମାର୍ଟିନ ବେଟ୍‌ସ୍ (ଉଚ୍ଚତା ୭' ୨½")ଜୁନ୍ ୧୮୭୧ରେ ବିବାହ କରିଥିଲେ । ସ୍ତ୍ରୀର ଉଚ୍ଚତା ସାମାନ୍ୟ ଅଧିକ ହୋଇଥିଲେ ମଧ୍ୟ ସେ ଚଳାଇ ନେଇଥିଲେ । ନିକଟରେ ଏମିତି ଗୋଟିଏ ସମସ୍ୟା ଲମ୍ବା ଦମ୍ପତି ପାକିସ୍ଥାନରେ ସାକାର ରୂପ ନେଇଛି ! ପାକିସ୍ଥାନର ଲାଲ ସହବାଜ କଲନ୍ଦରଠାରେ ଆଟେଣ୍ଡେଣ୍ଟ୍ ଭାବେ କାର୍ଯ୍ୟରତ ୭'୭" ଲମ୍ବା ଉଷିଷ୍ଟ ଆଲମ ସ୍ୱାନ୍ନା ବେଲୁଚିସ୍ଥାନର ଜଣେ ସୁନ୍ଦରୀ ଓ ଖୁବ୍ ଡେଙ୍ଗୀ ଯୁବତୀକୁ ନିଜ ପତ୍ନୀ ଭାବେ ଗ୍ରହଣ କରିଛନ୍ତି ।

ତେବେ ଏମିତି ଡେଙ୍ଗା ଡେଙ୍ଗୀ ଯୋଡ଼ି ସବୁବେଳେ ସହଜରେ ସମ୍ଭବ ହୋଇ-ପାରୁନାହିଁ । ତେଣୁ ଏହି ସମସ୍ୟାରୁ ରକ୍ଷା ପାଇବା ପାଇଁ ଡେଙ୍ଗା ଲୋକେ କ୍ଲବମାନ ଗଠନ କରିବା ପାଇଁ ବାଧ୍ୟ ହେଉଛନ୍ତି । ଏହି ପ୍ରକାର ଏକ କ୍ଲବ ରୁଷର ଲେନିନଗ୍ରାଡ଼ଠାରେ ଗଠିତ ହୋଇ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିପାରିଛି । କ୍ଲବ୍‌ର ନିୟମ ଅନୁସାରେ କେବଳ ଡେଙ୍ଗା ଲୋକେ ହିଁ ତାର ରେଜିଷ୍ଟ୍ରିକୃତ ସଦସ୍ୟ ହୋଇ-ପାରିବେ । ଏହାଦ୍ୱାରା ଲେନିନଗ୍ରାଡରେ ଥିବା ଦଶହଜାର ଡେଙ୍ଗା ଲୋକ ବିଶେଷ ଭାବେ ଉପକୃତ ହେବେ ବୋଲି ଆଶା କରାଯାଉଛି । ନିକଟ ଅତୀତରେ "ପକ୍ଲଇର୍ କ୍ଲବ୍" ନାମକ ଏମିତି ଏକ ସଙ୍ଗଠନ ଦୁଇଟି ଡେଙ୍ଗା ଦମ୍ପତିଙ୍କ ବିବାହ ପାଇଁ ସୂତ୍ରଧର ଭାବେ କାର୍ଯ୍ୟ କରି ସଫଳ ହୋଇଥିବା ଉଲ୍ଲେଖଯୋଗ୍ୟ ।

କେବଳ ବିବାହ ନୁହେଁ, ଡେଙ୍ଗାମାନଙ୍କର ଅନ୍ୟାନ୍ୟ ସମସ୍ୟା ପ୍ରତି ମଧ୍ୟ ଏହି କ୍ଲବ୍ ପ୍ରଶଂସନୀୟ କାର୍ଯ୍ୟ କରୁଛି । ବସ୍‌ଗୁଡ଼ିକର ଛାତ ସେମାନଙ୍କ ପାଇଁ ନିମ୍ନ ହେବା ଯୋଗୁଁ, ଜୋତା-ଦୋକାନର ଜୋତା ସେମାନଙ୍କ ପାଦକୁ ଛୋଟ ହୋଇଯାଉଥିବାରୁ, ସାଧାରଣ ଲୋକଙ୍କ ସହିତ କଥାବାର୍ତ୍ତା ହେବା ବେଳେ ତାଙ୍କ ମୁଣ୍ଡ ତଳକୁ ନୁଆଁଇବାକୁ

ପଡ଼ୁଥିବା ଯୋଗୁଁ—ଏମିତି ବିଭିନ୍ନ ପ୍ରକାର କାରଣରୁ ସେମାନେ କେବଳ ଅଡୁଆ ପରିସ୍ଥିତିର ସମ୍ମୁଖୀନ ହେଉନାହାନ୍ତି; ନିଜକୁ ଏକାକୀ, ନିଃସଙ୍ଗ ଏବଂ ସାମାଜିକ ସ୍ତରେ ବାଧିତ ହୋଇଥିବା ବ୍ୟକ୍ତି ପରି ସ୍ଥାନ ଅନୁଭବ କରୁଛନ୍ତି । ତେଣୁ ବୁଢ଼ାମାନଙ୍କର କ୍ଲବ୍ ଏହି ଜଟିଳ ସମସ୍ୟାମାନଙ୍କର ସମାଧାନ ପାଇଁ ବର୍ତ୍ତମାନ ବ୍ୟସ୍ତ ।

ବୁଢ଼ାମାନେ ଦୈନିକ ଯେପରି ଦୁଃସହ ପରିସ୍ଥିତିର ସମ୍ମୁଖୀନ ହେଉଛନ୍ତି, ଏହି ବିଷୟ ପ୍ରତି ସଚେତନ ହେଲେ, ଲୋକେ ଆଉ ନିଜ ଇଚ୍ଛା ବଢ଼ାଇବାରେ ଅକ୍ଷମ ହେବେ ନାହିଁ । ପ୍ରକୃତରେ ମଣିଷର ଇଚ୍ଛା କେତେ ହେବା ଉଚିତ, ତାହା ଉପରେ ବିଜ୍ଞ ବ୍ୟକ୍ତିମାନେ ଥରକୁ ଥର ଆଲୋଚନା କରିଥାନ୍ତି । ତଥାପି ସେମାନେ ନିର୍ଦ୍ଧାର୍ଯ୍ୟ ସ୍ତରେ କିଛି ଉପସଂହାରରେ ପହଞ୍ଚି ପାରୁନଥିବା କୌତୁହଳଜନକ ମନେ-ହୁଏ । ବୈଜ୍ଞାନିକମାନେ ମଧ୍ୟ ବିଭିନ୍ନ ସୂତ୍ରରେ ମଣିଷର ଶାରୀରିକ ବିକାଶ ଉପରେ ଇଚ୍ଛାର ପ୍ରଭାବ ସମ୍ପର୍କରେ ଅନୁଧ୍ୟାନ କରିଛନ୍ତି ! କିନ୍ତୁ କୌଣସି ନିଶ୍ଚିତ ସିଦ୍ଧାନ୍ତରେ ଉପନୀତ ହୋଇପାରୁନାହାନ୍ତି ।

ଡାରଉଇନଙ୍କ ବିବର୍ତ୍ତନବାଦ ଅନୁସାରେ ଭବିଷ୍ୟତରେ ମଣିଷର ଆକାର ପ୍ରକାର କଣ ହୋଇପାରେ, ସେଇ ବିଷୟରେ କିଛି ଧାରଣା କରିହେବ ବୋଲି ଆମେ ଭାବୁଁ, କାରଣ ଏହି ସୂତ୍ରରେ ଭବିଷ୍ୟତବାଣୀ ଶୁଣାଇବାପରି କ୍ଷମତା ଅବଶ୍ୟ ରହିଛି । ଦୃଷ୍ଟାନ୍ତ ସ୍ୱରୂପ, ନିକଟ ଅତୀତରେ ଗୋଟିଏ ସର୍ଭେ କରାଯାଇଥିଲା, ଯାହାର ଉଦ୍ଦେଶ୍ୟ ହେଉଛି ଆମ ବଂଶଧରମାନଙ୍କ ଦାନ୍ତ ଭବିଷ୍ୟତରେ କେଉଁ ରୂପ ଧାରଣ କରିବ ? ଏହି ବିଶେଷଜ୍ଞମାନେ ସର୍ଭେ କରି ଜାଣିପାରିଲେ ଯେ, ବର୍ତ୍ତମାନ ଆମ ଦାନ୍ତ ଆମ ପୂର୍ବପୁରୁଷର ଦାନ୍ତର ଅଧା ସାଇଜ୍‌ରୁ ମଧ୍ୟ କମ୍ । ପ୍ରତି ହଜାରେ ବର୍ଷରେ ମଣିଷର ଦାନ୍ତର ଆକାର ବୁଝାଇ ଶତକଡ଼ା ଏକ ଭାଗ ହ୍ରାସ ପାଏ, କାରଣ ଦିନକୁ ଦିନ ମଣିଷର ଖାଦ୍ୟ ଏତେ ନରମ ଓ କୋମଳ ହୋଇଯାଉଛି ଯେ, ଖାଦ୍ୟପଦାର୍ଥ ଆଉ ଚୋବାଇ ବା କାମୁଡ଼ି ଖାଇବାକୁ ତାକୁ ଆଉ ଆବଶ୍ୟକ ହେଉନାହିଁ । ଫଳରେ ତାର ଦାନ୍ତ କେବଳ ଦୁର୍ବଳ ହୋଇଯାଉ ନାହିଁ, ବିନା ବ୍ୟବହାର ଯୋଗୁଁ କ୍ଷୁଦ୍ର ହୋଇଯାଉଛି ମଧ୍ୟ । ଯଦି ଏହି କ୍ଷୟକ୍ଷତି ଭବିଷ୍ୟତରେ ସ୍ଥିର ରହେ, ତାହା-ହେଲେ ଆଉ ଲକ୍ଷେ ବର୍ଷ ପରେ ମଣିଷ ଦାନ୍ତବିହୀନ ହୋଇ ପାରୁଅପାଟି ସ୍ତରେ ପୃଥିବୀରେ ବଞ୍ଚିବ ।

ବିବର୍ତ୍ତନବାଦକୁ ଭିତ୍ତିକରି ଦାନ୍ତ ସମ୍ବନ୍ଧରେ ଏପରି ଗ୍ରୁଣ୍ଟଙ୍କର ସମ୍ବାଦ ପରିବେଷଣ କରିବା ଯେପରି ସମ୍ଭବ ହୋଇଛି, ଆମ ଇଚ୍ଛା ସମ୍ପର୍କରେ ମଧ୍ୟ ଏମିତି

କିଛି ବିଚିତ୍ର ତଥ୍ୟ ପ୍ରକାଶ କରିବା ସମ୍ଭବ କି ? ଜାପାନର ଶିକ୍ଷା ମନ୍ତ୍ରଣାଳୟ ତରଫରୁ ନିକଟ ଅତୀତରେ ୬୯୫,୦୦୦ ଜଣ ନର୍ସରୀ, ପ୍ରାଥମିକ ଓ ମାଧ୍ୟମିକ ସ୍କୁଲ ଛାତ୍ରଛାତ୍ରୀଙ୍କୁ ନମୁନା ସ୍ୱରୂପେ ନେଇ ଯେଉଁ ତଥ୍ୟ ସଂଗ୍ରହ କରାଯାଇଥିଲା, ସେଥିରୁ ଜଣାଗଲା ଯେ ବର୍ତ୍ତମାନର ଜାପାନୀ ଶିଶୁର ଉଚ୍ଚତା ୧୫ ବର୍ଷର ଜାପାନୀ ଶିଶୁଠାରୁ ଯଥେଷ୍ଟ ବେଶି ହେଉଛି । ଏହାର କାରଣ କଣ ହୋଇପାରେ ? ବିଭିନ୍ନ କାରଣ ମଧ୍ୟରୁ ଆମେ ଦୁଇଟି ଉଲ୍ଲେଖ କରି ପାରିବା—ଅଧିକ ପ୍ରୋଟିନ୍‌ଯୁକ୍ତ ଖାଦ୍ୟ ଗ୍ରହଣ; ନଚେତ ଡାରୱିନ୍‌ଙ୍କ ଭବିଷ୍ୟତ ସମ୍ପର୍କରେ ସୂଚନା ଦେଇପାରୁଥିବା ବିବର୍ତ୍ତନବାଦ । ବିଶେଷଜ୍ଞମାନେ ଏହି ଦୁଇଟି କାରଣ ଉପରେ ଅଧିକ ଅନୁଧ୍ୟାନ କରି ଜାଣି ପାରିଛନ୍ତି ଯେ, ଜାପାନରେ ଅଧିକ ପ୍ରୋଟିନଯୁକ୍ତ ଖାଦ୍ୟ ଗ୍ରହଣ ହିଁ ଉଚ୍ଚତା ବଢ଼ାଇବା ପାଇଁ ଦାୟୀ; କିନ୍ତୁ ବିବର୍ତ୍ତନବାଦ ଦାୟୀ ନୁହେଁ, କାରଣ ବିବର୍ତ୍ତନବାଦ ଆମ ଭବିଷ୍ୟତ ବଂଶଧରଙ୍କ ଉଚ୍ଚତା ବଢ଼ିବ ବୋଲି କୌଣସି ନିର୍ଦ୍ଦିଷ୍ଟ ସୂଚନା ଦେଉନାହିଁ ।

ମଣିଷର ଉଚ୍ଚତାର କ୍ରମବିକାଶ ସମ୍ପର୍କରେ ବିବର୍ତ୍ତନବାଦ କଣ ମତ ଦେଉଛି—ତାହା ଜାଣିବା ପାଇଁ ଆମକୁ ମଣିଷ-ଜାତିର ପ୍ରାରମ୍ଭରୁ ଆଜିଯାଏଁ ଯାହା ଯାହା ଘଟିଯାଇଛି, ତାର ଇତିହାସ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ଦୁଇନିୟୁତ ବର୍ଷ ପୂର୍ବେ ପୃଥିବୀ ପୃଷ୍ଠରେ ଅଷ୍ଟ୍ରେଲୋପିଥେକସ୍ ନାମକ ଯେଉଁ ବିଶାଳକାୟ ନରବାନର ଦେଖାଦେଲେ, ସେମାନେ କ୍ଷୁଦ୍ରକାୟ ଏବଂ ବୁଦ୍ଧିମାନ୍ ଜୀବମାନଙ୍କୁ ବଞ୍ଚିବାକୁ ଦେଇ ନିଜେ ଅଦୃଶ୍ୟ ହୋଇଗଲେ । ଏହି ଦୃଷ୍ଟାନ୍ତରୁ କ୍ଷୁଦ୍ରକାୟ ଜୀବର ବଞ୍ଚିବା ଅଧିକାର ସାବ୍ୟସ୍ତ ହେଉଥିବା ପରି ମନେହେଉଛି । ପ୍ରକୃତରେ ଏହାର ପାଖାପାଖି ଲକ୍ଷ ବର୍ଷ ପରେ ପିଥେକାନ୍‌ଥ୍ରୋପସ୍ ନାମକ ଯେଉଁ ମଣିଷର ଉଦ୍ଭବ ହେଲା, ତାର ଉଚ୍ଚତା ଥିଲା ୮' ୧'' । କିନ୍ତୁ ଏକଲକ୍ଷ ବର୍ଷ ପରେ ସିନାଂଥ୍ରୋପସ୍ ଜାତିର ପୁରୁଷର ଉଚ୍ଚତା ୫' ୧'' ଓ ନାରୀର ଉଚ୍ଚତା ୪' ୮''କୁ ଖସି ଆସିଲା । ଏହି ଘଟଣା ମଧ୍ୟ କ୍ଷୁଦ୍ରକାୟକୁ ସମର୍ଥନ ଯୋଗାଏ ।

କିନ୍ତୁ ଆଜକୁ ପ୍ରାୟ ଦେଢ଼ଲକ୍ଷ ବର୍ଷ ପୂର୍ବେ ଯେଉଁ ନିଏଣ୍ଡାର୍‌ଥାଲ୍ ମଣିଷ ଆବିର୍ଭାବ ହେଲା, ତାର ଉଚ୍ଚତା ଥିଲା ୫' ୯'' ଥିବାବେଳେ ଘଟଣାର ପ୍ରାୟ ପଚିଶ ହଜାର ବର୍ଷ ପରେ ଯେଉଁ କ୍ରୋମାଗନୋନ୍ ମଣିଷ ଉଦ୍ଭବ ହେଲା, ତାର ଉଚ୍ଚତା ୬' ୧''କୁ ବଢ଼ିଯାଇଥିଲା । ଏହି ଦୃଷ୍ଟାନ୍ତ କ୍ଷୁଦ୍ରକାୟକୁ ସମର୍ଥନ କରିବା ପରିବର୍ତ୍ତେ ଦୀର୍ଘକାୟକୁ ସୂଚାଇଲା ।

ପ୍ରକୃତରେ ମଣିଷଜାତିର ଏହି କ୍ରମବିବର୍ତ୍ତନବାଦ ବିଶ୍ଳେଷଣ କଲେ ଜଣାଯାଏ ଯେ, ଆମର ଉଚ୍ଚତା ପୁରାନୁକ୍ରମେ କ୍ରମାଗତ ଭାବେ ବଢ଼ିନଥାଏ କିମ୍ବା କମି-

ନଥାଏ । ବାସ୍ତବରେ ଆମ ଉଚ୍ଚତା ସମ୍ପର୍କରେ କୌଣସି ମାନ ନିୟମ ବା ନିର୍ଦ୍ଦିଷ୍ଟତା ନାହିଁ । ଭଗବାନ ଆମ ଉଚ୍ଚତାକୁ ତାଙ୍କ ଇଚ୍ଛା ମୁତାବକ ବଢ଼ାଇଥାନ୍ତି ଓ କମାଇଥାନ୍ତି । ତେଣୁ ଭବିଷ୍ୟତରେ ଯେ ଆମ ବଂଶଧରମାନେ ଆମଠାରୁ ଅଧିକ ଡେଙ୍ଗା ହେବେ, ଏହି ପ୍ରକାର ଭବିଷ୍ୟବାଣୀ ବିବର୍ତ୍ତନବାଦର ପରିପ୍ରେକ୍ଷୀରେ ଶୁଣାଇବା ଯୁକ୍ତିଯୁକ୍ତ ନୁହେଁ । ତେବେ ବିଭିନ୍ନ ଯୁଗ ପ୍ରତି ଦୃଷ୍ଟି ଦେଲେ ଜଣାଯାଏ ଯେ, ଡେଙ୍ଗାମାନଙ୍କ ଅପେକ୍ଷା ଅପେକ୍ଷାକୃତ ବାଙ୍ଗରମାନେ ଅଧିକ ବର୍ଷ ବଞ୍ଚିଥାନ୍ତି ।

ଆମ ଶାରୀରିକ ଶକ୍ତି-ସାମର୍ଥ୍ୟ ସମ୍ପର୍କରେ ସମ୍ୟକ୍ ଧାରଣା ପାଇଁ ଅନ୍ୟ ଏକ ଦିଗରୁ ଆଲୋଚନା କରାଯାଇପାରେ—ବିଭିନ୍ନ ଖେଳକୁଦରେ ଭାଗ ନେଉଥିବା ପ୍ରତିଯୋଗୀମାନଙ୍କ ସଫଳତା ପ୍ରତି ଦୃଷ୍ଟି ଦେଲେ ଜଣାଯାଏ ଯେ, ଯେଉଁମାନେ ଲମ୍ବା, ସେମାନେ ଶହେ ମିଟର କିମ୍ବା ତାଠାରୁ କମ୍ ଦୂରତ୍ୱ ଦୌଡ଼ ପ୍ରତିଯୋଗିତାରେ କ୍ଷୁଦ୍ରକାୟବିଶିଷ୍ଟ ଗେଡ଼ାମାନେ ହିଁ ସଫଳତା ହାସଲ କରନ୍ତି ।

ବାଙ୍ଗରମାନେ ଲମ୍ବା ଦୌଡ଼ରେ ଯଶସ୍ୱୀ ହେବାର କାରଣ ହେଉଛି ଯେ, ସେମାନଙ୍କ ଶରୀରର ବିଭିନ୍ନ ଅଂଶ ମଧ୍ୟରେ ଭଲ ସମନ୍ୱୟ ଥାଏ । ତେଣୁ ସେମାନେ ପୂର୍ଣ୍ଣ ଏକତା ରକ୍ଷା କରି କାର୍ଯ୍ୟ କରନ୍ତି ଏବଂ ଦୀର୍ଘ ସମୟ ଧରି ସେମାନଙ୍କ ଦକ୍ଷତା ବଜାୟ ରହିଥାଏ । ଏହି କାରଣରୁ ଯେଉଁ କାର୍ଯ୍ୟ ପାଇଁ ଦୀର୍ଘ ସମୟ ଧରି ପରିଶ୍ରମ ଦରକାର, ସେଥିରେ ବାଙ୍ଗର ଲୋକମାନେ ନିଜ ସହନଶୀଳତା ଓ ଧୈର୍ଯ୍ୟ ଯୋଗୁଁ କୃତିତ୍ୱ ହାସଲ କରିଥାନ୍ତି । କିନ୍ତୁ ଡେଙ୍ଗା ଲୋକଙ୍କର ଶରୀରର ଅଙ୍ଗପ୍ରତ୍ୟଙ୍ଗମାନ ଦୀର୍ଘ ତଥା ବିଶାଳ ହୋଇଥାଏ, ଯାହା କି ଅନାବଶ୍ୟକ । ନିଜ ନିଜର ଏହି ସ୍ୱଗରୁ-ବଳତା-ଲମ୍ବା ଅଙ୍ଗମାନଙ୍କର ରକ୍ଷଣାବେକ୍ଷଣ ପାଇଁ ଲମ୍ବା ବ୍ୟକ୍ତିମାନଙ୍କୁ ଅଯଥାରେ ଶକ୍ତି ବ୍ୟୟ କରିବାକୁ ପଡ଼ିଥାଏ । ଫଳରେ ପ୍ରକୃତ କାର୍ଯ୍ୟ କରିବା ପାଇଁ ସେମାନଙ୍କ ଶକ୍ତି ନିଅଣ୍ଟ ପଡ଼େ । ତେଣୁ ଲମ୍ବା ବ୍ୟକ୍ତିମାନେ ସାଧାରଣତଃ 'ବଡ଼ ଅଡ଼ମ୍ବରେ ଲଙ୍କ ଡିଆଁ' ପରି ପ୍ରକୃତ କାର୍ଯ୍ୟ କ୍ଷେତ୍ରରେ ଅଧମ ଓ ନିକମ୍ମାପରି ଜଣାପଡ଼ିବା ବିଚିତ୍ର ନୁହେଁ । ବେଳେବେଳେ କମ୍ ଅର୍ଥବ୍ୟୟରେ ଫୁଟ୍‌ପାଥ୍‌ରେ ଛୋଟ ପସରା ଖୋଲିଥିବା ଲୁଗା ବେପାରୀଟିଏ ବହୁ ପୁଞ୍ଜି ବିନିଯୋଗ କରିଥିବା ହୋଲ୍-ସେଲର୍ ଲୁଗା ବ୍ୟବସାୟୀଠାରୁ ଅଧିକ ଲାଭବାନ୍ ହୋଇଥିବା ବିଷୟ ଆମେ ଜାଣୁ । ତୁଳନାତ୍ମକ ଭାବେ ଆମେ କହିପାରୁ ଯେ, ବାଙ୍ଗରମାନେ ଏଷ୍ଟାବ୍ଲିଶ୍‌ମେଣ୍ଟ ପାଇଁ କମ୍ ଖର୍ଚ୍ଚ କରୁଥିବା ଫୁଟ୍‌ପାଥ୍‌ର ସ୍ମଲକ୍ ଖୁଚୁରା ଦୋକାନୀ ହୋଇଥିବା ବେଳେ, ଲମ୍ବା ଲୋକମାନେ ଅଯଥା ହୋଲ୍-ସେଲର୍‌ଙ୍କ ପରି !

ପ୍ରକୃତରେ ଭଗବାନ ବାଙ୍ଗୁମାନଙ୍କୁ ସୃଷ୍ଟି କଲାବେଳେ ସ୍ୱତନ୍ତ୍ର ସେଠଳ ହାଡ଼ ମାଂସ, ଟିସ୍ୟୁ ତନ୍ତୁ ଦରକାର, ସେତକରେ ଗଢ଼ିଥାନ୍ତି । କିନ୍ତୁ ସେ ଲମ୍ବା ଲୋକଙ୍କୁ ଗଢ଼ିବା ବେଳେ ବେପରୁଆ ଭାବେ ସେମାନଙ୍କ ଶରୀରରେ ହାଡ଼-ମାଂସର ବୋଝ ଲଦି ଦେଇଥାନ୍ତି, ଯାହା ଫଳରେ ଏକ ବିଶାଳ ଶରୀର ବୋହିବାରେ ସେମାନଙ୍କ ବହୁ ଶକ୍ତି ଅପଚୟ ହୋଇଯାଏ । ତେଣୁ ସମାଜର ଉନ୍ନତି ପାଇଁ ଯେତେ ଲମ୍ବା ଲୋକେ କାମ କରିପାରନ୍ତି ନାହିଁ, ତାହାହେଲେ ସେମାନଙ୍କୁ ନିନ୍ଦା କରି ସେମାନଙ୍କ ବିଶାଳ ବପୁକୁ ନିନ୍ଦା କରିବା ଉଚିତ ହେବ । ପ୍ରକୃତରେ ଗୋଦରମାନଙ୍କର ଅକର୍ମଣ୍ୟତାକୁ ଆମେ ସେପରି ରୋଗର ଦ୍ୱାହିଦେଇ କ୍ଷମା କରିଥାଉ, ତେଙ୍ଗା ଲୋକଙ୍କୁ ମଧ୍ୟ ସେହି ଦୃଷ୍ଟିକୋଣରୁ କ୍ଷମାଦେବା ଯଥାର୍ଥ ହେବ । ଏହି ପରିପ୍ରେକ୍ଷୀରେ ଆମେ ତେଙ୍ଗା ହେବା ପାଇଁ କେବେ ଝୁରିବା ନାହିଁ । ବାସ୍ତବିକ ଜାପାନୀମାନେ ନିଜ ଶରୀରର ଉଚ୍ଚତା ଅଯଥାରେ ବଢ଼ାଇବା ପାଇଁ ଆଗ୍ରହୀ ନୁହନ୍ତି । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ, ସେମାନେ ବାଙ୍ଗୁ ହେବାପାଇଁ ଚେଷ୍ଟା କରିବେ । ତେବେ ପ୍ରକୃତ କଥାଟି ହେଉଛି ଯେ, ନୈଗ୍ରି ଜାତିର ହାରାହାରି ଉଚ୍ଚତା ଯେତିକି ହେବା ଉଚିତ, ସେତିକି ହେଲେ ଯଥେଷ୍ଟ । ପ୍ରକାଶଥାଉ କି, ଏହି ହାରାହାରି ଉଚ୍ଚତା ଭିନ୍ନ ଭିନ୍ନ ଜାତି ପାଇଁ ଭିନ୍ନ ଭିନ୍ନ ହୋଇଥାଏ । ଅଫ୍ରିକାର ଜାଏର ଅନ୍ତର୍ଗତ ଇଟୁରି ନଦୀ କୂଳରେ ବସବାସ କରୁଥିବା ଗ୍ୱଟି ଆଦିବାସୀଙ୍କ ପାଇଁ ଏହା ୪' ୭'' ହୋଇଥିବା ବେଳେ ସୁଦାନର ଡିଙ୍କା ନାମକ ଜାତି ପାଇଁ ଏହା ଛଅ ଫୁଟରୁ ଅଧିକ; ପଟାଗୋନିଆର ଟିହ୍ୟୁଲ୍‌ଚେଚ୍ ଇଣ୍ଡିଆନଙ୍କର ହାରାହାରି ଉଚ୍ଚତା ହେଉଛି ୫' ୧୦'' । ତେଙ୍ଗା ଓ ବାଙ୍ଗର ଆପେକ୍ଷିକ ଅର୍ଥ ହୋଇଥିବା ଯୋଗୁଁ, ଏହାର ସଂଜ୍ଞା ନିରୂପଣ କରିବା ବେଳେ ସ୍ଥାନ-କାଳ-ପାତ୍ର ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ ।

ସେ ଯାହାହେଉ, ବର୍ତ୍ତମାନ ପ୍ରଶ୍ନ ଉଠୁଛି ଯେ, ଯଦି ଲମ୍ବା ଲୋକମାନେ ଅନୁପଯୁକ୍ତ, ତାହାହେଲେ ବିବର୍ତ୍ତନବାଦ ପ୍ରକ୍ରିୟାରେ କ୍ରମଶଃ ସେମାନଙ୍କ ବଂଶନାଶ ହୋଇଯିବା କଥା । କିନ୍ତୁ ସେମାନେ ଆଜିଯାଏ ବଞ୍ଚି ରହିଛନ୍ତି କିପରି ? ପ୍ରକୃତ କଥାଟି ହେଉଛି ଯେ, ସେମାନେ ଦୀର୍ଘସମୟ ଯାଏଁ କାର୍ଯ୍ୟ କରିବା ପାଇଁ ଅନୁପଯୁକ୍ତ ହେଲେ ସୁଦ୍ଧା, ସେମାନଙ୍କ ଅନ୍ତର୍ନିହିତ ବିପୁଳ ବଳ ଯୋଗୁଁ ସେମାନେ ଶକ୍ତିଶାଳୀ ହୋଇଥାନ୍ତି । ତେଣୁ କ୍ଷଣିକ ସମୟ ମଧ୍ୟରେ ସେମାନେ ଦୁଃସାଧ୍ୟ କାର୍ଯ୍ୟ ସାଧନ କରିପାରନ୍ତି । ଏହାଦ୍ୱାରା ସେମାନେ ନିଜର ଅସ୍ତିତ୍ୱ ଯୁଗ ଯୁଗ ଧରି ବଜାୟ ରଖି ପାରିଛନ୍ତି ।

ତେବେ ଲମ୍ବା ଲୋକେ ଯୁଗୋପଯୋଗୀ ନୁହନ୍ତି ଏବଂ ସେମାନଙ୍କ ଭବିଷ୍ୟତ ମଧ୍ୟ ଉଜ୍ଜ୍ୱଳ ନୁହେଁ, କାରଣ ଏହି ଯୁଗରେ ବିଶେଷଜ୍ଞମାନେ କହନ୍ତି ଯେ, 'ଦୀର୍ଘ

ସମସ୍ତବ୍ୟାପୀ କାର୍ଯ୍ୟକ୍ଷମତା ଏବଂ ଧୈର୍ଯ୍ୟ ତଥା ସହନଶୀଳତା' ହେଉଛି ଆଧୁନିକ ଯୁଗର ମୂଳମନ୍ତ୍ର।

ବାମନମାନେ ଚନ୍ଦ୍ରକୁ ହାତ ବଢ଼ାଇଲେ, ଯମେ ସେମାନଙ୍କୁ ମୂର୍ଖ ବୋଲି ଭାବି ଥଟ୍ଟା କରୁ । କିନ୍ତୁ ଏପ୍ରକାର ବ୍ୟତିକ୍ରମ ଘଟିପାରେ ବୋଲି ଆମକୁ ମନେରଖିବାକୁ ହେବ । ଏହି ପ୍ରସଙ୍ଗରେ ଜେଫରି ହୁଡ୍‌ସନ (୧୬୧୯-୧୬୮୨)ଙ୍କ ବିଷୟ ବିଚାର କରାଯାଉ । ଅଠବର୍ଷ ହୋଇଥିବା ବେଳେ, ତାଙ୍କ ଉଚ୍ଚତା ଥିଲା ମୋଟେ ୧୮'' ଏବଂ ପୂର୍ଣ୍ଣ ଯୌବନ ପ୍ରାପ୍ତି ବେଳେ ତାଙ୍କ ଉଚ୍ଚତା ୩' ୯''କୁ ବୃଦ୍ଧି ପାଇଥିଲା । ସେ ଶୈଶବାବସ୍ଥାରେ ଥିବାବେଳେ ଡ୍ୟୁକ ଅଫ୍ ବକିଙ୍ଗହାମ ତାଙ୍କୁ ଇଂଲଣ୍ଡର ରାଣୀ ହେନେରିଏଟା ମାରିଆଙ୍କୁ ଉପହାର ସ୍ୱରୂପ ଦେଇଥିଲେ । କିନ୍ତୁ ସେତେବେଳେ ଡ୍ୟୁକ୍ ଜାଣି ନଥିଲେ ଯେ, ଜେଫରି ହୁଡ୍‌ସନ ବାମନ ହୋଇ ମଧ୍ୟ ଦୁଃସାହସିକ ହୋଇପାରନ୍ତି ! ହୁଡ୍‌ସନ ରାଣୀଙ୍କୁ ଧରି ଫ୍ରାନ୍ସରୁ ଲୁଚି ପଳାଇଲେ; ଘୋଡ଼ା ପିଠିରେ ବସି ଯୁଦ୍ଧକରି ଶତ୍ରୁକୁ ନିପାତ କରିଥିଲେ । ପୁଣି ଫ୍ରାନ୍ସରୁ ଫେରି ଆସୁଥିବାବେଳେ ଦୈବାତ୍ ମୁରିସ୍ ଜଳଦସ୍ୟୁଙ୍କ ଦ୍ୱାରା ଧରାପଡ଼ିଲେ; କିନ୍ତୁ ଏଥିରେ ସେ ଧୈର୍ଯ୍ୟ ନହରାଇ ଚତୁରତାର ସହିତ ସେମାନଙ୍କ ଆଖିରେ ଧୂଳିପକାଇ ପୁଣି ଇଂଲଣ୍ଡକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ବାମନ ହୁଡ୍‌ସନଙ୍କ ପରି ପାରିବାପଣିଆ ନ ହୋଇପାରିଲେ ମଧ୍ୟ ସେହି ଲୋକମାନେ ଯେ ବେଶ୍ ହସଖୁସିରେ ରହି ପାରନ୍ତି, ତାର ପ୍ରମାଣ ଅନ୍ୟାନ୍ୟ ଦୃଷ୍ଟାନ୍ତରୁ ମିଳେ । ଦିଲ୍ଲୀର ଓ୍ୱାଲ୍ଡ ସିଟିରେ ରହୁଥିବା ୨' ୧'' ଉଚ୍ଚତା ବିଶିଷ୍ଟ ଗୁଲ ମହମ୍ମଦଙ୍କ ଜୀବନଯାପନ ପ୍ରଣାଳୀରୁ ଏହା ସୁସ୍ପଷ୍ଟ । ଗୁଲ୍‌ଙ୍କ ବର୍ତ୍ତମାନ ବୟସ ୩୨ ବର୍ଷ । ସେ ଗୋଟିଏ ମିଠା ଦୋକାନ କରି ଚଳୁଛନ୍ତି । ତାଙ୍କ ଦୋକାନରେ ଛୋଟ ଛୋଟ ପିଲାଙ୍କର ଭିଡ଼ ଜମେ ଏବଂ କଣାରାଜା ମଧ୍ୟ ଭଲ ଚାଲେ । ସେ ଦିନକୁ କୋଡ଼ିଏଟି ସିଗାରେଟ୍ ଓ କୋଡ଼ିଏ କପ୍ ଚା' ପିଅନ୍ତି । ଦର୍ପଣରେ ମୁହଁ ଦେଖି ଛୋଟ ପାନିଆରେ ମଥାବାଳ କୁଣ୍ଡାଇବା ତାଙ୍କର ଏକ ସଉକ । ତାଙ୍କ ଜୀବନର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଲକ୍ଷ୍ୟ ହେଉଛି ଗୋଟିଏ ସର୍ବାଙ୍ଗସୁନ୍ଦର ଯୁବତୀର ପାଣିଗ୍ରହଣ କରିବା । ବାସ୍ତବିକ ସେ ସବୁ ବିଷୟରେ ଆମମାନଙ୍କପରି ମନସ୍ତୁଷ୍ଟିରେ ସମୟ କଟାନ୍ତି । କେବଳ ଦୂର ସ୍ଥାନକୁ ଟ୍ରେନ ବା ବସ୍‌ରେ ସ୍ୱଚ୍ଛନ୍ଦରେ ଯାଇପାରୁ ନଥିବା ଯୋଗୁଁ ତାଙ୍କ ମନରେ ବେଳେବେଳେ ଦୁଃଖଜାତ ହୁଏ ।

ଡେଙ୍ଗା ଲୋକମାନେ ନିଜର ଉଚ୍ଚତାକୁ ବଢାଇ ଚଢ଼ାଇ କହି ଗିନିସ୍ ବୁକ୍ ଅଫ୍ ରେକର୍ଡ଼ସ୍‌ରେ ଯେପରି ସ୍ଥାନ ପାଇବାକୁ ବ୍ୟଗ୍ର, ସେହିପରି ଛୋଟ ଲୋକେ ମଧ୍ୟ ନିଜ ଉଚ୍ଚତାକୁ

ଜମାନ୍ ରେକର୍ଡର ଅଧିକାରୀ ହେବା ପାଇଁ ବ୍ୟାକୁଳ । ୧୯୩୮ରେ ହେନ୍‌ରି ପଲ୍ ହେଲ୍ ହିଟଙ୍କ ଉଚ୍ଚତା ୮'୯" ବୋଲି ଲାଇଫ ମ୍ୟାଗାଜିନ ଦ୍ୱାରା ପ୍ରକାଶିତ ହୋଇଥିଲେ ମଧ୍ୟ ସେ ପ୍ରକୃତରେ ୭'୭" ବୋଲି ଅନୁମାନ କରାଯାଇଥିଲା । ଗେଡ଼ା ଲୋକେ ଏପରି ଉଚ୍ଚତା ଲୁଚାଇବା ପାଇଁ ଆଗ୍ରହୀ ହେବାର କାରଣ ହେଉଛି ଯେ, ଏହା ଦ୍ୱାରା ସେମାନେ ବଡ଼ ସର୍କସମାନରେ ପୃଥିବୀ-ପ୍ରସିଦ୍ଧ ହୋଇପାରିବେ । ବାସ୍ତବିକ ୧୦।୨।୮୯ ତାରିଖ ଶୁକ୍ରବାର ଦିନ ବିଶ୍ୱର ସବୁଠାରୁ ଗେଡ଼ା ଅନ୍ତୋନିଓ ଲୋପସ ଫେରେରା! ମରିବା ବେଳେ ଯେମିତି ଚହଳ ସୃଷ୍ଟି ହୋଇଥିଲା, ତାହା ଜାଣିଲେ ଅନେକଙ୍କ ମନରେ ଈର୍ଷା ଜାତ ହୋଇପାରେ । "ଲିଟିଲ୍ ଝୋ" ନାମରେ ସର୍ବତ୍ର ପରିଚିତ ଲୋପସ ଫେରେରାଙ୍କ କ୍ଷୁଦ୍ରକାୟ ମରଣଶରୀରକୁ ତାଙ୍କ ଜନ୍ମସ୍ଥାନ ଆର୍ଗୋଦେଲ୍ଲେ ଠାରେ ବହୁ କୌତୂହଳୀ ଲୋକଙ୍କ ସମାବେଶରେ ଅତି ସମ୍ମାନର ସହିତ କବର ଦିଆଯାଇଥିଲା ।

ଠିକ୍ ସେମିତି ବାଙ୍ଗୁ ଦମ୍ପତିଙ୍କୁ ଅସାଧାରଣ ଭାବେ ସମ୍ମାନିତ କରାଯାଇଥିବା ବିଷୟ ଇତିହାସ ପୃଷ୍ଠାରୁ ଜଣାଯାଏ । ୩' ୪'' ଉଚ୍ଚତା ବିଶିଷ୍ଟ ଟମ୍ ଥମ୍ବ ୧୮୬୩ ସାଲରେ ଯେତେବେଳେ ୨' ୮'' ଉଚ୍ଚତାର ଲାଭିନିଆ ୱାରେନ୍‌ଙ୍କୁ ବିବାହ କଲେ, ସେତେବେଳେ ଏହି ଉତ୍ସବ ଦେଖିବା ପାଇଁ ଚର୍ଚ୍ଚରେ ଦୁଇହଜାର ଲୋକ ଆଗ୍ରହର ସହିତ ଯୁଣ୍ଡ ହୋଇଥିଲେ । ଦେଶଗଣ୍ୟମାନ୍ୟମାନଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଇବା ପାଇଁ ଏହି ଗେଡ଼ା ଦମ୍ପତି ଯେଉଁ କେକ୍‌ଟି ପ୍ରସ୍ତୁତ କରିଥିଲେ, ତାର ଓଜନ ଉଭୟଙ୍କର ଶାରୀରିକ ଓଜନଠାରୁ କୁଆଡ଼େ ଅଧିକ ଥିଲା । ଏହି ଗେଡ଼ା ଦମ୍ପତି ଉପରେ ସନ୍ତୁଷ୍ଟ ଅବ୍ରାହମ୍ ଲିଙ୍କନ୍ ଖୁସି ହୋଇ ସେମାନଙ୍କୁ ହ୍ୱାଇଟ୍ ହାଉସ୍‌ରେ ସମ୍ବର୍ଦ୍ଧନା ଦେବାକୁ ଉତ୍ସବ ଆୟୋଜନ କରିଥିଲେ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ 'ଏକ୍‌ସଟ୍ରା ଟେରେଷ୍ଟ୍ରିଆଲ୍' ନାମରେ ଯେଉଁ ଚଳଚ୍ଚିତ୍ରଟି ନିର୍ମାଣ କରାଯାଇଥିଲା, ସେଥିରେ ଜଣେ ବାଙ୍ଗୁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ଚଳଚ୍ଚିତ୍ରର ପ୍ରଯୋଜକ ଗୋଟିଏ ଯନ୍ତ୍ର ଦ୍ୱାରା ନକଲି ଗେଡ଼ା ଲୋକଟିଏ ସୃଷ୍ଟି କରି କାମ ଚଳାଇବାକୁ ଯୋଜନା କରିଥିଲେ ମଧ୍ୟ, ଏଥିରେ ସନ୍ତୁଷ୍ଟ ନ ହୋଇ ଅଧିକ ବିଶ୍ୱାସନୀୟତା ପାଇଁ ରକ୍ତମାଂସଧାରୀ ଗୋଟିଏ ଗେଡ଼ା ଲୋକ ଖୋଜିଆଣି ତାଙ୍କ ଫିଲ୍ମରେ ଦେଖାଇବାକୁ ବାଧ୍ୟ ହୋଇଥିଲେ । (ଦ୍ରଷ୍ଟବ୍ୟ : ମହାଥନ୍ ଲମ୍ବ୍ରେ, ସିର୍‌ମା, ୧୯୮୨) ।

କିନ୍ତୁ ଲମ୍ବା ହେଉ ବା ବାଙ୍ଗର ହେଉ, ଯେଉଁମାନଙ୍କ ଶାରୀରିକ ଉଚ୍ଚତାରେ ଅସାଧାରଣତା ପରିଲକ୍ଷିତ ହୁଏ, ସେମାନଙ୍କ ଆୟୁଷ୍ୟ କେତେ ଦୀର୍ଘ ? ଏହି ପ୍ରସଙ୍ଗରେ ଗିନିସ୍ ବୁକ୍‌ରେ ଉଲ୍ଲେଖ କରାଯାଇଥିବା ପ୍ରଥମ ନଅଜଣ ଲମ୍ବା ଲୋକଙ୍କ ଆୟୁଷ୍ୟ ପ୍ରତି

ଦୃଷ୍ଟି ଦେଉଥାଉ ! ୩୨, ୫୪, ୫୨, ୨୪, ୫୫, ୪୨, ୩୦, ୪୧ ଓ ୪୨ ବର୍ଷ । ଏହି ଅନୁଷ୍ୟମାନଙ୍କ ମଧ୍ୟରେ ସର୍ବାଧିକ ୫୨ ବର୍ଷ ହୋଇଥିବା ବେଳେ ସର୍ବନିମ୍ନ ହେଉଛି ୨୪ ବର୍ଷ । ଏଥିରୁଠାରୁ ଦୁଃଖର ବିଷୟ ହେଉଛି ଯେ, ସେମାନଙ୍କ ହାରାହାରି ବୟସ ମାତ୍ର ୪୦ ବର୍ଷ; ଯାହାକି ଦୀର୍ଘାୟୁ ବୋଲି କଦାପି କହିହେବ ନାହିଁ । ବିଶେଷତଃ ଭାରତରେ ଅନୁଷ୍ୟ ଖାଠିଏ ବର୍ଷ ବୋଲି ଧରାଯାଉଥିବା ବେଳେ, ଲମ୍ବା ଲୋକଙ୍କର ଅନୁଷ୍ୟ ଷାଠିଏ ବର୍ଷକୁ ଛୁଇଁ ପାରୁଥିବା ଯୋଗୁଁ ସାଧାରଣ ଲୋକଙ୍କ ମନ ଦରଣାରେ ହଠାତ୍ ଶଙ୍କା ପଡ଼େ । ବାସ୍ତବିକ ଲମ୍ବା ଲୋକର ଆୟୁ ଲମ୍ବା ନ ହେବା ଯୋଗୁଁ ଅମେ ଏହା ପଛରେ କାରଣ କଣ ଥାଇପାରେ, ତାହା ଜାଣିବା ପାଇଁ ଆଗ୍ରହୀ ।

ଶରୀର ତତ୍ତ୍ୱବିତ୍‌ମାନଙ୍କ ମତରେ ଆମର ଖପୁରିର ମଧ୍ୟ ସ୍ଥଳରେ ଏବଂ ନାକର ପଛ ପଟେ ପିଟୁଇଟାରି ଗ୍ଲାଣ୍ଡ୍ ଅଛି । ଏହାର ଆକାର କ୍ଷୁଦ୍ର ହେଲେ ମଧ୍ୟ ଏହା ଆମର ସ୍ନାୟୁତନ୍ତ୍ର ଓ ଅନ୍ତଃସ୍ରାବୀ ଗ୍ରନ୍ଥି ସମୂହ ମଧ୍ୟରେ ମୁଖ୍ୟ ସଂଯୋଗକାରୀ । ଆମ ଶରୀରର ହାଡ଼, ମାଂସପେଶୀ ଏବଂ ଅନ୍ୟାନ୍ୟ ଅଙ୍ଗର ଅଭିବୃଦ୍ଧି ପାଇଁ ଏଥିରୁ ନିର୍ଗତ ହେଉଥିବା ଗ୍ରୋଥ୍-ହରମୋନ୍ (ସୋମାଟୋଟ୍ରୋପିନ୍) ମୁଖ୍ୟତଃ ଦାୟୀ । ଯଦି ପିଟୁଇଟାରି ଗ୍ରନ୍ଥିରେ କୌଣସି କାରଣରୁ ଟ୍ୟୁମର୍ ହୋଇ ଅଧିକ ହରମୋନ୍ ନିଃସୃତ ହୁଏ, ତାହାହେଲେ ମଣିଷର ଉଚ୍ଚତା ଅତ୍ୟଧିକ ବୃଦ୍ଧି ପାଏ । ଏହି ଅବାଞ୍ଛିତ ଟ୍ୟୁମର ବା ଅର୍ବୁଦକୁ ଚିକିତ୍ସା ଦ୍ୱାରା ଦୂର କରି ନ ଗଲେ, ମଣିଷର ଯୌନଶକ୍ତି ହ୍ରାସ ପାଏ । ପୁଣି ସମୟ କ୍ରମେ ଏହି ଅର୍ବୁଦର ଆକାର ଏମିତି ବଢ଼ିଯାଏ ଯେ, ଏହା ପରିଶେଷରେ ପିଟୁଇଟାରି ଗ୍ଲାଣ୍ଡ୍‌କୁ ନଷ୍ଟ କରିଦିଏ । ତେଣୁ ଯୌବନାବସ୍ଥାରେ ରୋଗୀ ମୃତ୍ୟୁବରଣ କରିବାର ସମ୍ଭାବନା ଦେଖାଦିଏ । ଏଥିରୁ ଜଣାଯାଏ ଯେ, ଅତଏବ ଦୀର୍ଘକାୟ ବ୍ୟକ୍ତିମାନେ ତୁରନ୍ତ ଏବଂ ଯଥାଶୀଘ୍ର ଚିକିତ୍ସାଧୀନ ହେବା ଉଚିତ୍ । ପ୍ରକୃତରେ ଗ୍ରନ୍ଥିରେ ଅର୍ବୁଦ ଥାଇ ଲମ୍ବା ହେବା ଅପେକ୍ଷା, ଆବୁ ନ ଥାଇ ଗେଡ଼ାହେବା ଅଧିକ ଶ୍ରେୟସ୍କର ।

ଆମ ଜାଣିବାରେ ଲୋକେ ଦୁଇ ପ୍ରକାର ଉପାୟରେ ଖ୍ୟାତ ଅର୍ଜିଥା'ନ୍ତି; 'ଦେଉଳ ତୋଳିବା ଯୋଗୁଁ, ନଚେତ୍ ବାଟରେ ଝାଡ଼ା ଫେରିବା ଯୋଗୁଁ ।' କିନ୍ତୁ ଅତିରିକ୍ତ ଗେଡ଼ା ବା ଲମ୍ବା ଲୋକେ ଯେଉଁ ପ୍ରକାର ଖ୍ୟାତ ଲାଭ କରିଥାନ୍ତି, ତାହା ଏହି ଦୁଇ ପ୍ରକାର ଠାରୁ ସମ୍ପୂର୍ଣ୍ଣ ଭିନ୍ନ—ନୂତନ ଧରଣର । ପ୍ରକୃତରେ ଗେଡ଼ା ବା ଢେଙ୍ଗା ଲୋକଙ୍କର ଖ୍ୟାତ 'ଦେଉଳ ତୋଳା'ରୁ ନହେଲେ ମଧ୍ୟ 'ବାଟରେ ଝାଡ଼ା ଫେରିବା' ଯୋଗୁଁ ନ ହୋଇଥିବାରୁ ଆମେ ଅବଶ୍ୟ ଖୁସୀ ।



# ଅବୟବ ଜୀବିତ ବା ମୃତ

ବିଶ୍ୱବିଖ୍ୟାତ କଥାକାର ଲିଓ ଟଲଷ୍ଟୟଙ୍କ ରଚନା ଯେମିତି ଚମତ୍କାର ତାଙ୍କ ଜୀବନୀ ମଧ୍ୟ ସେମିତି ପ୍ରଭାବଶାଳୀ । କଥା ପ୍ରସଙ୍ଗରେ ଜନ ଜୀବନର ଗୋଟିଏ ଶିକ୍ଷଣୀୟ ଘଟଣା ସେ ବର୍ଣ୍ଣନା କରିଛନ୍ତି । ତାହାର ବାସ୍ତବତା ମୂଲ୍ୟାଙ୍କ ଅନ୍ୟ ପ୍ରକାରେ ଉଲ୍ଲେଖ କରାଯାଇପାରେ ।

ଥରେ ଗୋଟିଏ ବେକାର ଯୁବକ ଟଲଷ୍ଟୟଙ୍କ ନିକଟରେ ପହଞ୍ଚି ଆର୍ଥିକ ସାହାଯ୍ୟ ମାଗିଲା । ଟଲଷ୍ଟୟ ଦେଖିଲେ ଯେ, ଯୁବକଟି ବେଶ୍ ସୁସ୍ଥ ସବଳ ଓ ରୋଜଗାରକ୍ଷମ । କେବଳ ଅଳସୁଆମି ଯୋଗୁଁ କାମ କରୁ ନାହିଁ । ତେଣୁ ତା' ପ୍ରତି ଦୟାପରବଶ ହେବା ପରିବର୍ତ୍ତେ ସେ ତାକୁ କାମ କରି ପେଟ ପୋଷିବା ପାଇଁ ଉପଦେଶ ଦେଲେ । କିନ୍ତୁ ଏଥିରେ ନାରାଜ ହେବାରୁ ସେ ତାକୁ ଉପଦେଶ ଦେଲେ, "ଚଳିବା ପାଇଁ ଯିନା ତମ ପାଖରେ ପଇସାପତ୍ର ନାହିଁ; କିନ୍ତୁ ରୋଜଗାର କରିବା ପାଇଁ ତ ତମେ ବେଶ୍ ସକ୍ଷମ ।" ଯୁବକ ଜଣକ ତତ୍‌କ୍ଷଣାତ୍ ଜବାବ ଦେଲା, "ଆଜ୍ଞା ! ସେଇ କ୍ଷମତା ମୋ ପାଖରେ ନାହିଁ ବୋଲି ତ ମୁଁ ଆପଣଙ୍କ ଦ୍ୱାରସ୍ଥ ହୋଇଛି ।"

ଟଲଷ୍ଟୟ ପ୍ରତ୍ୟୁତ୍ତର ଦେଲେ, "ଶୁଣିଛି ଯେ, ଜଣେ ଔଷଧ-ବ୍ୟବସାୟୀ ମଣିଷର ଶରୀରରୁ ଏକ ପ୍ରକାର ଔଷଧ ପ୍ରସ୍ତୁତ କରୁଛନ୍ତି । ତମେ ଏକଲକ୍ଷ ଟଙ୍କାରେ ତମ ଦେହଟା ତାକୁ ବିକ୍ରୀ କରିଦେଲେ, ସେ ଖୁସି ଖୁସି ହେବ ।" ଯୁବକ ଜଣକ ରେକ୍‌ଠୋକ୍ ମନାକରି କହିଲା, "ଲକ୍ଷେ ଟଙ୍କା କାହିଁକି; କୋଡ଼ିଏ ଲକ୍ଷ ଟଙ୍କା ଦେଲେ ସୁଦ୍ଧା କେହି କ'ଣ ତାହାର ଶରୀର ବିକି ପାରିବେ ?···ଆଉ ମୁଁ ବେକାର ହୋଇଛି ବୋଲି ଏମିତି ବୋକାମି କରିବାକୁ କାହିଁକି ଯିବି ?"

"ତମେ ଯଦି ସାରା ଶରୀରଟା ବିକିବା ପାଇଁ ଅମଙ୍ଗ ହେଉଛ, ତାହାହେଲେ ଅନ୍ତତଃ ଆଖି ଦୁଇଟି ବିକି ଦିଅ । ତାହାହେଲେ ସେଇ ଔଷଧ-ବ୍ୟବସାୟୀ ତମକ

ଅଠ ଟେମ୍‌ରେ ତୋତ୍ରଏ ହଜାର ଟଙ୍କା ଦେବ···ଅଚ୍ଛା ! ଯଦି ଆଖି ପାଇଁ ତମର ବିଶେଷ ନେଇ ଇଚ୍ଛା, ତାହାହେଲେ ହାତ ଦୁଇଟି ବିକିବାକୁ ପ୍ରସ୍ତୁତ ହୋଇଯାଅ । ତମକୁ ପନ୍ଦର ହଜାର ଟଙ୍କା ମିଳିଯିବ ବୋଲି ମୋର ବିଶ୍ୱାସ ।”

ଯୁବକଟି ଏହି ପ୍ରସ୍ତାବରେ ମଧ୍ୟ ଅରାଜି ହେବା ଯୋଗୁଁ ଟଲ୍‌ଷ୍ଟୟ ବୁଝାଇଲେ, “ହେଉ; ତମେ ଯଦି ଆଖି କିମ୍ବା ହାତ ବିକିବା ପାଇଁ ଅନିଚ୍ଛୁକ, ତାହାହେଲେ ଗୋଡ଼ ଦୁଇଟି ଦେଇଦିଅ । ଏଥିପାଇଁ ଦଶ ହଜାର ଟଙ୍କା ତମକୁ ମିଳିବ ।”

ଟଲ୍‌ଷ୍ଟୟଙ୍କ ଠାରୁ ଏହା ଶୁଣି ନିଜ ଶରୀରରେ ଭର୍ତ୍ତି ହୋଇଥିବା ଅମାପ ସମ୍ପଦ ସମ୍ପର୍କରେ ସେତେବେଳେ ଯାଏଁ ସଚେତନ ହୋଇ ନ ଥିବା ଯୋଗୁଁ ଯୁବକଟି ଲଜ୍ଜିତ ହୋଇଗଲା । ପ୍ରକୃତରେ ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ମଣିଷର ଶରୀର, ଏପରିକି ଗୌଣ ବୋଲି ମନେ କରାଯାଉଥିବା ତାର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ମଧ୍ୟ ଖୁବ୍ ମୂଲ୍ୟବାନ । ଆମେ ଏହି ବିଷୟ ପ୍ରତି ସଚେତନ ନ ହେଲେ ବି ଏହା ଯେ ଅକ୍ଷରେ ଅକ୍ଷରେ ସତ୍ୟ—ଏଥିରେ କୌଣସି ସନ୍ଦେହ ନାହିଁ । ପ୍ରକୃତରେ ଉପରୋକ୍ତ ଘଟଣା ମାଧ୍ୟମରେ ଟଲ୍‌ଷ୍ଟୟ ମତବ୍ୟକ୍ତ କରିବାକୁ ଚାହୁଁଥିଲେ ଯେ, ଯୁବକଟି ନିଜ ଶରୀରର ବିଭିନ୍ନ ଅବୟବମାନ ଅତି ମୂଲ୍ୟବାନ ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରୁ ।

କିନ୍ତୁ କିଏ ଜାଣିଥିଲା ଯେ, ଟଲ୍‌ଷ୍ଟୟ ବର୍ଷବର୍ଷ ପୂର୍ବେ ଅଙ୍ଗପ୍ରତ୍ୟଙ୍ଗର ମୂଲ୍ୟ ସମ୍ପର୍କରେ ଯାହା କହିଥିଲେ, ତାହା ଆଜିକାଲିର ବୈଜ୍ଞାନିକ ଯୁଗରେ ଏକ ନଗ୍ନ ସତ୍ୟ ଭାବେ ରୂପାନ୍ତରିତ ହେବ—ପୁଣି ଝୁଲବିଶେଷରେ ଅତି ନିଷ୍ଠୁର ଭାବେ ! ନିକଟ ଅତୀତରେ ଲାଟିନ ଆମେରିକାର ଗୁଏଟେମାଲାରେ ପୋଲିସ ଯେଉଁ ସମାଜବିରୋଧୀ ଦଳକୁ ଗିରଫ କରିଛନ୍ତି, ସେମାନେ ଏକ ଲୋମହର୍ଷଣକାରୀ ବୀଭତ୍ସ କାଣ୍ଡରେ ଲିପ୍ତ ଥିଲେ; ସେମାନେ ଲାଟିନ ଆମେରିକାର ବିଭିନ୍ନ ଦେଶରୁ ଶିଶୁମାନଙ୍କୁ କରଗତ କରି ସେମାନଙ୍କ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ କାଟି ନେଇ ଯାଉଥିଲେ ଏବଂ ବିଦେଶରେ ଥିବା ଅର୍ଗାନ-ବ୍ୟାଙ୍କମାନଙ୍କୁ ଖୁବ୍ ଚଢ଼ା ଦରରେ ଲୁଚ୍ଚଚୋରରେ ଯୋଗାଉଥିଲେ । ଗୋଟିଏ ଗୋଟିଏ ଅଙ୍ଗର ମୂଲ୍ୟ ୭୫ ହଜାର ଡଲାରରେ ବିକ୍ରି ହୋଇଥିଲା ବୋଲି ଖବର ମଧ୍ୟ ସେତେବେଳେ ପ୍ରକାଶିତ ହୋଇଥିଲା ।

ଉକ୍ତ ନାରକୀୟ କାଣ୍ଡରେ ଲିପ୍ତ ଥିବା ଦଲାଲମାନେ ଲାଟିନ ଆମେରିକାସ୍ଥ ରାଷ୍ଟ୍ର-ମାନଙ୍କର ଦାରିଦ୍ର୍ୟର ସୁଯୋଗ ନେଇ ସେଠାକାର କୋମଳ ଶିଶୁମାନଙ୍କୁ ବିକଳାଙ୍ଗ କରି ବେଶ୍ ଲାଭବାନ ହେଉଥିଲେ । ଏହି ଧରଣର ଅମାନୁଷିକ କାର୍ଯ୍ୟକଳାପକୁ ରୋକିବା ପାଇଁ ୧୯୮୪ ମସିହାରେ ଯୁକ୍ତରାଷ୍ଟ୍ରରେ ଜାତୀୟ-ଅଙ୍ଗପ୍ରତ୍ୟଙ୍ଗ-ରୋପଣ

ଆଇନ ପ୍ରଣୟନ କରାଯାଇଛି, ଯାହା ଫଳରେ ମନୁଷ୍ୟ ଅବୟବର ଛନ୍ଦ-ବିଚ୍ଛେଦ ଉପରେ କଡ଼ା କଟକଣା ଜାରି କରାଯାଇଛି । ଏହା କେବଳ ଦାତାର ସ୍ୱେଚ୍ଛାକୃତ ଦାନ ଦ୍ୱାରା କରାଯାଇ ପାରିବ ବୋଲି ଉଲ୍ଲେଖ ହୋଇଛି । ଅଷ୍ଟ୍ରିଆ, ଡେନ୍‌ମାର୍କ, ଫ୍ରାନ୍ସ, ସୁଇଜରଲାଣ୍ଡ ପ୍ରଭୃତି ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ମଧ୍ୟ ମୃତ ବ୍ୟକ୍ତିର ପୂର୍ବ ସମ୍ମତି ଥିଲେ ହିଁ, ଶବ ସତ୍କାର ପୂର୍ବରୁ ତାର ଅଂଶ ସଂଗ୍ରହ କରାଯାଇପାରିବ ବୋଲି ଆଇନ ପ୍ରଣୀତ ହୋଇଛି ।

କିନ୍ତୁ ବିଭିନ୍ନ ଆଇନ ସତ୍ତ୍ୱେ ସ୍ୱେଚ୍ଛା ଅବୟବ-ଦାନପ୍ରାର୍ଥୀମାନଙ୍କ ପୂରଣ କରିବା ସମ୍ଭବପର ହୋଇପାରୁ ନାହିଁ । ତାର ମୂଳ କାରଣ ହେଉଛି; ଶରୀର ଅଙ୍ଗପ୍ରତ୍ୟଙ୍ଗ ପାଇଁ ଯଥେଷ୍ଟ ପରିମାଣରେ ସ୍ୱଳ୍ପତା ବୃଦ୍ଧି । ଆଜିକାଲି ଅବୟବ-ରୋପଣ ଦ୍ୱାରା ଦୁର୍ଘଟଣାଗ୍ରସ୍ତ କିମ୍ବା ବିକଳାଙ୍ଗ ବ୍ୟକ୍ତିମାନଙ୍କୁ ଯେପରି ସଫଳତାର ସହିତ ସୁସ୍ଥ ସବଳ କରି ହେଉଛି, ତାହା ବାସ୍ତବିକ୍ ଏଇ ଶତାବ୍ଦୀର ଏକ ଉଲ୍ଲେଖନୀୟ ବୈଜ୍ଞାନିକ କୃତିତ୍ୱ । ବର୍ତ୍ତମାନ ହୃତ୍‌ପିଣ୍ଡ, ଯକୃତ, ବୃକ୍କ ଏବଂ ମସ୍ତିଷ୍କର ଅତି ଉପାଦେୟ ଅଂଶମାନଙ୍କୁ ଅତ୍ୟଧିକ ଥଣ୍ଡା କରାଇ ଶୀତଳୀକୃତ ଅବସ୍ଥାରେ ଅନାୟାସରେ ଦୁଇ ତିନି ଦିନ ଯାଏଁ ସାଇତି ରଖାଯାଇ ପାରୁଛି । ଅସ୍ଥି, ମାଂସପେଶୀ ଓ ଚର୍ମ ପରି ଅପେକ୍ଷାକୃତ କମ୍ ଜଟିଳ ଅଙ୍ଗମାନଙ୍କୁ ଆହୁରି ଅଧିକ ସମୟ ଯାଏଁ ସଂରକ୍ଷିତ କରି ହେଉଛି । ଅବଶ୍ୟ ଏଥିପାଇଁ ଶୀତଳତା ସୃଷ୍ଟି କରି ପାରୁଥିବା ଉପଯୁକ୍ତ ପଦାର୍ଥ ଆବଶ୍ୟକ ।

ତରଳ ଯବକ୍ଷାରଜାନ ବ୍ୟବହାର କରି ଏମାନଙ୍କୁ ୧୯୬ ଡିଗ୍ରୀ ସେଣ୍ଟିଗ୍ରେଡ୍ ତଳକୁ ଉତ୍ତାପ ଅତି ସୁବିଧାଜନକ ଉପାୟରେ ଆଜିକାଲି ବ୍ୟବସାୟିକ ଭିତ୍ତିରେ ଉପଲବ୍ଧ ହେଲାଣି । ଟେକ୍ସାସ୍‌ର ନାଇଟ୍ରୋ ସେଲ୍ କର୍ପୋରେସନ ଇତ୍ୟବସରରେ ଏମିତି ଉପାୟ ଉଦ୍ଭାବନ କଲେଣି ଯେ ପ୍ରତି ସେକେଣ୍ଡରେ ଦଶ ହଜାର ସେଣ୍ଟିଗ୍ରେଡ୍ ହିସାବରେ ସେମାନେ ତନ୍ତୁକୁ ଥଣ୍ଡା କରିବାରେ ସକ୍ଷମ ହୋଇପାରୁଛନ୍ତି । ଅବଶ୍ୟ ଏଥିପାଇଁ ସେମାନେ ତନ୍ତୁକୁ ପତଳା-ପତଳା ଖଣ୍ଡରେ ନେଉଥିଲେ । ତଥାପି ଏହି ସଫଳତା ପଛରେ ଯଥେଷ୍ଟ ଉଜ୍ଜ୍ୱଳ ସମ୍ଭାବନା ଦେଖା ଦେଉଛି । ଅତି କ୍ଷିପ୍ର ଭାବେ ତନ୍ତୁକୁ ଶୀତଳ କରିବା ଦ୍ୱାରା ଗୋଟିଏ ବିଶେଷ ସୁବିଧା ହେଉଛି ଯେ, ତନ୍ତୁରେ ଥିବା ଜଳୀୟ ଅଂଶ ବରଫରେ ପରିଣତ ହୋଇ ଜମାଟ ବାନ୍ଧିବାକୁ ସମୟ ପାଉନ୍ତି ନାହିଁ । ଫଳରେ ଏହି ଉପାୟରେ ବିଭିନ୍ନ ସ୍ତରରୁ ସଂଗୃହୀତ ଅଂଶମାନ ବହୁଦିନ ଧରି ଥଣ୍ଡାରେ ଅର୍ଗାନ୍-ବ୍ୟାଙ୍କମାନଙ୍କରେ ସାଇତା ରଖାଯାଇ ପାରିବ ଏବଂ ଆବଶ୍ୟକ ହେଲାବେଳେ ଏହି ଶୀତଳୀକୃତ ଅଂଗମାନଙ୍କୁ ଉଦ୍ଧାର କରି ଦୁର୍ଘଟଣାଗ୍ରସ୍ତ ବ୍ୟକ୍ତିମାନଙ୍କ ଶରୀରରେ ରୋପଣ କରାଯାଇ ପାରିବ ।

ଚିକିତ୍ସାବିଜ୍ଞାନୀମାନେ ଉପରୋକ୍ତ ପ୍ରଣାଳୀ ଅନୁସରଣ କରିବା ପୂର୍ବରୁ ଏହି ବିଷୟରେ ଗଭୀର ଅନୁଧ୍ୟାନ କରିଥିଲେ । ଏଥିପାଇଁ ସେମାନେ ବେଙ୍ଗ ପରି କେତେକ ଶୀତ-ସୁପ୍ତି-ବିଶିଷ୍ଟ ଜୀବମାନଙ୍କର ଜୀବନୀ ପ୍ରତି ଦୃଷ୍ଟି ଦେଇଥିଲେ । ସେମାନେ ଲକ୍ଷ୍ୟ କଲେ ଯେ, ଏହି ଜୀବମାନେ ନିଜ ଶରୀରର ଉତ୍ତାପ, କମାଇ ପାରନ୍ତି, ଯାହାଦ୍ୱାରା ସେମାନଙ୍କ ଶରୀରର ବିଭିନ୍ନ ଜୈବିକ ପ୍ରକ୍ରିୟା ଓ ମେଟାବୋଲିଜମ୍ ବା ବିପାକର ହାର ହ୍ରାସ ପାଏ । ଏହି ଅସ୍ୱାଭାବିକ ଅବସ୍ଥାରେ ସେମାନେ ବାହାରକୁ ମୃତ ପରି ଦେଖାଗଲେ ସୁଦ୍ଧା, ପ୍ରକୃତରେ ମରି ନଥାନ୍ତି; କେବଳ ସୁପ୍ତ ଅବସ୍ଥାରେ ଥାଆନ୍ତି । ପୁଣି ଋତୁ ବଦଳିଲେ, ସେମାନେ ଶାରୀରିକ ଉତ୍ତାପ ବଢ଼ାଇ ପୁନର୍ଜୀବନ ପାଇବା ପରି ପୂର୍ବବତ୍ ଚଳ ପ୍ରଚଳ ହୋଇଥାନ୍ତି ।

ପ୍ରକୃତରେ କେବଳ ଜୀବ ନାହିଁକି, ବିଭିନ୍ନ ଜୈବିକ ବସ୍ତୁର ଉତ୍ତାପ କମାଇ ଆମେ ତାହା ପରୀକ୍ଷା କରିପାରୁଁ । ତାର ପ୍ରକୃଷ୍ଟ ଉଦାହରଣ ହେଉଛି ଘରେ ଘରେ ବ୍ୟବହାର କରାଯାଉଥିବା ରେଫ୍ରିଜରେଟର୍ ଏବଂ ବିଭିନ୍ନ ଶୀତଳ ଭଣ୍ଡାର । ଏଥିରେ ଜୈବିକ ବସ୍ତୁ ରଖିଲେ ସେମାନଙ୍କ ବିଘଟନ ତଥା ଅବକ୍ଷୟ ବହୁତ ପରିମାଣରେ କମିଯାଏ । ତେଣୁ ମାମସ୍ପିକ ସବେ ଆମେ ସେମାନଙ୍କୁ ସତେଜ ଓ ନିଟୋଳ ଅବସ୍ଥାରେ ସଂରକ୍ଷିତ କରିବା ସମ୍ଭବପର ହୋଇଥାଏ ।

ଏହି ଦୃଷ୍ଟାନ୍ତମାନଙ୍କରୁ ପ୍ରତୀତ ହୁଏ ଯେ, ସ୍ଥଳବିଶେଷରେ ଜୀବ ଶରୀରର ରକ୍ଷଣାବେକ୍ଷଣ ପାଇଁ ଶୀତଳତା ଅପରିହାର୍ଯ୍ୟ । ପ୍ରସଙ୍ଗକ୍ରମେ 'ଦା ସ୍ଲିପର' ନାମକ ଚଳଚ୍ଚିତ୍ରର ବିଷୟବସ୍ତୁ ଏଠାରେ ଅବତାରଣା କରାଯାଇପାରେ । ଫିଲ୍ମର ନାୟକ ହେଉଛନ୍ତି ଉଡ଼ି ଏଲନ୍ ନାମକ ଏକ ରୋଗୀ, ଯିଏକି ପେପ୍ଟିକ୍ ଅଲସର୍ ଦ୍ୱାରା ଆକ୍ରାନ୍ତ । ଡାକ୍ତରମାନେ ତାଙ୍କୁ କୌଣସି ଉପାୟରେ ସୁଦ୍ଧା ଆରୋଗ୍ୟ କରିପାରିଲେ ନାହିଁ । ପରିଶେଷରେ ସେମାନେ ଅନ୍ୟ କୌଣସି ରାସ୍ତା ନ ପାଇ ତାଙ୍କୁ ତରଳ ଯବକ୍ଷାରଜାନରେ ବୁଡ଼ାଇ ଦେଲେ । ଶୀତଋତୁରେ ବେଙ୍ଗ ପରି ଅସମତାପୀ ପ୍ରାଣୀର ଅଙ୍ଗପ୍ରତ୍ୟଙ୍ଗମାନ ଯେମିତି ଅଚଳ ହୋଇପଡ଼େ, ତାଙ୍କ ଅବସ୍ଥା ମଧ୍ୟ ସେମିତି ହୋଇଗଲା । କିନ୍ତୁ ଏହା ମୃତ୍ୟୁ ନୁହେଁ, ପୁନର୍ଜୀବନ ପାଇଁ ଏକ ବୈଜ୍ଞାନିକ ପ୍ରସ୍ତୁତି ମାତ୍ର । ଆବଶ୍ୟକ ଅନୁସାରେ ଏହି ନିଦ୍ରିତ ଅବସ୍ଥା ଦୀର୍ଘ କରି ହେବ । ଡାକ୍ତରମାନେ ସ୍ଥିର କଲେ ଯେ, ଯେତେବେଳେ ସେମାନେ ଗବେଷଣାଗାରରେ ତାଙ୍କ ପାଇଁ ଉପଯୁକ୍ତ ଔଷଧ ଉଦ୍ଭାବନ କରିବେ ସେତେବେଳେ ତାଙ୍କୁ ତଥାକଥିତ ମହାନିଦ୍ରାରୁ ଉଠାଇବେ ଓ ସଦ୍ୟ ଉଦ୍ଭାବିତ ଔଷଧ ପ୍ରୟୋଗ କରି ଆରୋଗ୍ୟ କରାଇ ପାରିବେ !

ଏବେ 'ଦା ସି୍ପର' ଚଳଚ୍ଚିତ୍ରକୁ ଅତି ଅବାସ୍ତବ ବୋଲି କହି ପରିହାସ କରାଯାଉଥିଲା । କିନ୍ତୁ ବର୍ତ୍ତମାନ ତାର ବିଷୟବସ୍ତୁ ବାସ୍ତବତା ଆଡ଼କୁ ଅଗ୍ରସର ହେଉଛି । କାଲିଫର୍ଣ୍ଣିଆର ଓକ୍‌ଲାଣ୍ଡରେ ଟ୍ରାନ୍‌ସ ଟାଇମ୍‌ ନାମକ ଗୋଟିଏ କମ୍ପାନୀ ଅଛି, ଯିଏକି ଅଲେନ୍‌ଙ୍କ ପରି ଦୁରାରୋଗ୍ୟ ରୋଗୀମାନଙ୍କର ସଦ୍ୟମୃତ ଶରୀରକୁ ବଡ଼ ବଡ଼ ଷ୍ଟିଲଖୋଳ କିମ୍ବା ପାନ୍ଥିଅନ ଯୋଉଁଥି ମଧ୍ୟରେ ତରଳ ଯବକ୍ଷାରଜାନ ଦ୍ୱାରା ଅତି ଶୀତଳ ଅବସ୍ଥାରେ ସଂରକ୍ଷିତ କରନ୍ତି ।

ଜୀବନ୍ତ କିମ୍ବା ସଦ୍ୟମୃତ ବ୍ୟକ୍ତିମାନଙ୍କର ଅଙ୍ଗପ୍ରତ୍ୟଙ୍ଗ ଅଥବା ସାରା ଶରୀର ପାଇଁ ବର୍ତ୍ତମାନ ଯେଉଁ ଚାହିଦା ଦେଖା ଦେଇଛି, ତାର ପୃଷ୍ଠଭୂମିରେ ଉପରୋକ୍ତ ବୈଜ୍ଞାନିକ ପ୍ରୟୋଗ ବିଦ୍ୟମାନ । ଦିନ ଥିଲା, ଯେତେବେଳେ ଆମେ ହାତୀ ପାଇଁ କହୁଥିଲୁ ଯେ, ସେ ଜୀଇଁଥିଲେ ଯେମିତି ମୂଲ୍ୟବାନ, ମଲେ ମଧ୍ୟ ସେମିତି ମୂଲ୍ୟବାନ । କିନ୍ତୁ ବର୍ତ୍ତମାନ ଏହି ବାକ୍ୟ ମଣିଷ ପାଇଁ ମଧ୍ୟ ପ୍ରଯୁଜ୍ୟ । ବାସ୍ତବିକ୍‌ ଆମେ ମୃତ ଶରୀର ପାଇଁ ଖୁବ୍‌ ଲାଳାୟିତ । ଏହି ଶବଗୁଡ଼ିକୁ ପୋଡ଼ିବା, ପୋତିବା କିମ୍ବା ଫୋପାଡ଼ିବା ପରିବର୍ତ୍ତେ ଆମେ ସେଗୁଡ଼ିକୁ ଅତି ଅମୂଲ୍ୟ ସମ୍ପଦ ବୋଲି ବିଚାର କରୁଛୁଁ ଏବଂ ସାରା ଶବଟି ନ ହେଲେ ସୁଦ୍ଧା ତନ୍ମଧ୍ୟରୁ ବଭିନ୍ନ ସୁସ୍ଥସବଳ ଅଙ୍ଗ ପ୍ରତ୍ୟଙ୍ଗ ରୋଗୀ କିମ୍ବା ଦୁର୍ଘଟଣାଗ୍ରସ୍ତ ବ୍ୟକ୍ତିଙ୍କ ଆରୋଗ୍ୟ ପାଇଁ ସଂଗ୍ରହ କରୁଛୁଁ ।

ଏହି ପରିପ୍ରେକ୍ଷୀରେ ଅଙ୍ଗ ରୋପଣର ଉପାଦେୟତା ଏବଂ ସଫଳତା ପ୍ରତି ଦୃଷ୍ଟିଦେବା ଆବଶ୍ୟକ । ଉଦାହରଣ ସ୍ୱରୂପ ବୃକ୍‌କ ବା କିଡ୍‌ନି ଟ୍ରାନ୍‌ସପ୍ଲାଣ୍ଟ ବିଷୟ ଆଲୋଚନା କରାଯାଉ । କିଡ୍‌ନି ମୁଖ୍ୟତଃ ଆମ ରକ୍ତରୁ ଦୂଷିତ ଓ ବିଷାକ୍ତ ପଦାର୍ଥରୁ ମୁକ୍ତ କରିଥାଏ । ଏହା ଅକାମୀ ହୋଇଗଲେ ବଞ୍ଚିବା ପାଇଁ ବିକଳ୍ପ ବ୍ୟବସ୍ଥା ଗ୍ରହଣ କରିବା ଅପରିହାର୍ଯ୍ୟ ହୋଇପଡ଼େ । ଯଥା : କୃତ୍ରିମ ବୃକ୍‌କର ବ୍ୟବହାର ଯାହାକି ହେମୋଡ଼ାଇଲିସିସ୍‌ ନାମରେ ପରିଚିତ । ଏତଦ୍‌ ବ୍ୟତୀତ ବୃକ୍‌କ ରୋପଣ ଅନ୍ୟ ଏକ ସୁପରିଚିତ ବିକଳ୍ପ ପନ୍ଥା ।

ବୃକ୍‌କ ରୋପଣ ସମ୍ପର୍କରେ କୁହାଯାଇପାରେ ଯେ, ଏହା ସାଧାରଣତଃ ସବୁବେଳେ ସଫଳ ହୋଇ ନ ଥାଏ । ଏଥିପାଇଁ କିଡ଼ନି ଦାତା ଓ ଗ୍ରହୀତା ମଧ୍ୟରେ ତନ୍ତୁ ଓ ରକ୍ତ-ଶ୍ରେଣୀର ସମାନତା ରହିବା ଆବଶ୍ୟକ । ଏହି ଦୃଷ୍ଟିରୁ ଯମଜ ସନ୍ତାନମାନଙ୍କ ଏହା ଅତ୍ୟନ୍ତ ଉପଯୋଗୀ । ନଚେତ୍‌ ଭାଇ, ଭଉଣୀ କିମ୍ବା ନିକଟ ସମ୍ପର୍କୀୟଙ୍କ ଠାରୁ କିଡ଼ନି ବାହାର କରିଆଣି ରୋପଣ କରାଯାଇପାରେ । ପରୀକ୍ଷାରୁ ଜଣାଯାଏ ଯେ, ଯେଉଁମାନେ ନିଜ ଜୀବିତ ସମ୍ପର୍କୀୟଙ୍କ ଠାରୁ କିଡ୍‌ନି ଗ୍ରହଣ

ରହିଥାନ୍ତି, ସେମାନଙ୍କ ମଧ୍ୟରୁ ଶତକଡ଼ା ନବେଭାଗ ବ୍ୟକ୍ତି ଦୁଇବର୍ଷ ଯାଏଁ ନିରାପଦରେ ବଞ୍ଚିଥାନ୍ତି । କିନ୍ତୁ ମୃତଙ୍କ ଠାରୁ କିଡ୍‌ନି ଗ୍ରହଣ କରାଗଲେ, ଏହି ସଫଳତା-ହାର ଶତକଡ଼ା ପଞ୍ଚଷଠି ଭାଗକୁ ଖସି ଆସେ । ଏହି ଦୃଷ୍ଟିରୁ ମୃତ ଅପେକ୍ଷା ଜୀବିତଙ୍କ ଠାରୁ ଅଙ୍ଗ ସଂଗ୍ରହ କରିବା ଅଧିକ ଉପଯୋଗୀ ।

ଆମ ଦେଶରେ ବୃକ୍କ ରୋପଣ ସର୍ବପ୍ରଥମେ ୧୯୭୧ ମସିହାରେ କରାଯାଇଥିଲା । ୧୯୮୨ ସୁଦ୍ଧା ୮୭୫ ଜଣଙ୍କର ବୃକ୍କ ବଦଳା ଯାଇଥିବା ସ୍ଥଳେ ଯୁକ୍ତରାଷ୍ଟ୍ରରେ ଏହି ସଂଖ୍ୟା ଷାଠିଏ ହଜାର ଥିଲା । ବୃକ୍କ ଅପେକ୍ଷା ହୃତ୍‌ପିଣ୍ଡ ରୋପଣ ଅଧିକ କଷ୍ଟସାଧ୍ୟ । ଏହି କ୍ଷେତ୍ରରେ ରୋଗୀର ବଞ୍ଚିବାର ସମ୍ଭାବନା ମୋଟେ ଶତକଡ଼ା ଦଶଭାଗ । ପୁଣି ଏମାନଙ୍କ ମଧ୍ୟରୁ ମାତ୍ର ଶତକଡ଼ା ପନର ଭାଗ ଦୁଇ ବର୍ଷରୁ ଅଧିକା ସମୟ ବଞ୍ଚିଥାନ୍ତି । ଅପେକ୍ଷାକୃତ ଭାବେ ହୃତ୍‌ପିଣ୍ଡ ରୋପଣରେ ସଫଳତା ସନ୍ତୋଷଜନକ ନୁହେଁ । କିନ୍ତୁ ମସ୍ତିଷ୍କରୋପଣ ଅତ୍ୟନ୍ତ ଅଧିକ ନୈରାଶ୍ୟଜନକ । ଏହାର ପ୍ରତ୍ୟକ୍ଷ ଉଦାହରଣ ଭାବେ ଯୁକ୍ତରାଷ୍ଟ୍ରର ଇଲିଓନସ ମାୟୋନିକ ହାସପାତାଲରେ ନିକଟ ଅତୀତରେ ସମ୍ପନ୍ନ କରାଯାଇଥିବା ଅପରେସନ ମାଧ୍ୟମରେ ଅବତାରଣା କରାଯିବ । ସେଠାରେ ୧୮ ବର୍ଷିୟା ତରୁଣୀ ମାର୍ଗା ଓର୍ଟିଜ ଓ ତାଙ୍କର ଜଣେ ଅନ୍ତରଙ୍ଗ ବାନ୍ଧବୀଙ୍କୁ କେନ୍ଦ୍ର କରି ଘଟଣାଟି ଘଟିଥିଲା ଓର୍ଟିଜଙ୍କର ହୃତ୍‌ପିଣ୍ଡ ଅତ୍ୟନ୍ତ ଦୁର୍ବଳ ଥିବାବେଳେ ତାଙ୍କର ବାନ୍ଧବୀଙ୍କର ମସ୍ତିଷ୍କ ଅକାମୀ ଅବସ୍ଥାରେ ଥିଲା । ଯେଣୁ ଉଭୟେ ମୃତ୍ୟୁ ସହ ସଂଗ୍ରାମ ଚଳାଇ ପରାଜିତ ହେବା ଅବସ୍ଥାରେ ଚିକିତ୍ସକମାନେ ମସ୍ତିଷ୍କରୋଗୀର ଅନୁରୋଧ କ୍ରମେ ତାଙ୍କ ଠାରୁ ହୃତ୍‌ପିଣ୍ଡଟି ନେଇ ଓର୍ଟିଜଙ୍କର ଶରୀରରେ ସଂସ୍ଥାପନ କଲେ । ଫଳରେ ହୃତ୍‌ପିଣ୍ଡ ରୋଗୀ ଜଣକ ନୂଆ ଜୀବନ ପାଇଲେ ! ଅବଶ୍ୟ ଏହାଦ୍ୱାରା ମସ୍ତିଷ୍କ ରୋଗୀ ଜଣକର ଜୀବନ କ୍ଷୁଦ୍ର ହୋଇଗଲା ।

ବାସ୍ତବିକ ମସ୍ତିଷ୍କ ରୋପଣର ସଫଳତା ସମ୍ପର୍କରେ ବୈଜ୍ଞାନିକମାନେ ଅଦ୍ୟାବଧି ନିଶ୍ଚିତ ନୁହନ୍ତି । ପୁଣି ଏହାର ସମ୍ଭାବନା ଓ ଭବିଷ୍ୟତ କେତେ ଦୂର ନିର୍ଭରଯୋଗ୍ୟ ତାହା ମଧ୍ୟ ବାଦାନୁବାଦରୁ ମୁକ୍ତ ନୁହେଁ । ଏହି ସମ୍ପର୍କରେ ନିମ୍ନ ଦୃଷ୍ଟାନ୍ତ ପ୍ରତି ଦୃଷ୍ଟି ଦିଆଯାଉ ।

ଆମେ ସମସ୍ତେ ସ୍ୱୀକାର କରୁଛେ ଯେ, ଆଇନ୍‌ଷ୍ଟାଇନ୍‌ଙ୍କ ପରି ପ୍ରଚଣ୍ଡ ପ୍ରତିଭା ସମ୍ପନ୍ନ ମସ୍ତିଷ୍କ ବିରଳ ଏବଂ ଅନେକ ସମୟରେ ଆମେ ମନାସୁଥାଉଁ—ଆଇନ୍‌ଷ୍ଟାଇନଙ୍କ ପରି ଉଚ୍ଚର ମସ୍ତିଷ୍କ ଅମର ଥାଆନ୍ତା କି ! ତାହାହେଲେ ଆମେ କେତେ ନୂତନ ତଥ୍ୟ ଦେଇ ବିଶ୍ୱର ଜ୍ଞାନଭଣ୍ଡାରରେ ବୈପ୍ଳବିକ ପରିବର୍ତ୍ତନ ସୃଷ୍ଟି କରି ପାରିଥାନ୍ତେ ଏବଂ ଆମ ନାମ ଇତିହାସରେ ଅମର ହୋଇ ରହିଥାନ୍ତା !

ହୁଏତ ଜଣେ ଆଇନ୍‌ଷ୍ଟାଇନ୍ ତାଙ୍କ ଜୀବଦ୍ଦଶାରେ ଅମର ଏହି ଅଜ୍ଞାତ ସମ୍ପର୍କରେ ଅବଗତ ହୋଇଥିବେ । ଏହି ସମ୍ପର୍କରେ ଆଉର କୌତୂହଳ ପ୍ରଶମିତ କରିବା ପାଇଁ ବୋଧହୁଏ ସେ ଘୋଷଣା କରିଥିଲେ ଯେ, ମୃତ୍ୟୁ ହେବା ପରେ ତାଙ୍କର ମସ୍ତିଷ୍କ ବ୍ୟତୀତ ଶରୀରର ଅନ୍ୟାନ୍ୟ ଅଂଶ ଦାହ କରାଯାଇପାରେ; ମସ୍ତିଷ୍କଟି ଅଲଗା କରାଯାଇ ତାହା ଉପରେ ବୈଜ୍ଞାନିକ ଗବେଷଣା ଚଳାଇବା ତାଙ୍କର ଉଦ୍ଦେଶ୍ୟ ଥିଲା ।

ପ୍ରକୃତରେ ସେ ଯେତେବେଳେ ୧୯୫୫ ମସିହାରେ ପ୍ରାଣତ୍ୟାଗ କଲେ, ବୈଜ୍ଞାନିକମାନେ ତାଙ୍କ ମସ୍ତିଷ୍କ ପୃଥକ୍ ଭାବେ ସଂରକ୍ଷିତ କରି ଅନୁସନ୍ଧାନ ଆରମ୍ଭ କଲେ । ଜଣେ ପାଥୋଲୋଜିଷ୍ଟ ଅତି ଶକ୍ତିଶାଳୀ ଯନ୍ତ୍ରର ବ୍ୟବହାର କରି ଦେଖିଲେ ଯେ, ଆଇନ୍‌ଷ୍ଟାଇନ୍‌ଙ୍କ ମସ୍ତିଷ୍କ ଏବଂ ସାଧାରଣ ବ୍ୟକ୍ତିଙ୍କ ମସ୍ତିଷ୍କ ମଧ୍ୟରେ ସେମିତି କିଛି ପାର୍ଥକ୍ୟ ନାହିଁ । ୧୯୮୫ ମସିହାରେ ଅନ୍ୟ ଜଣେ ଗବେଷକ ମତପୋଷଣ କଲେ ଯେ, ଆଇନ୍‌ଷ୍ଟାଇନଙ୍କ ମସ୍ତିଷ୍କରେ ଅପେକ୍ଷାକୃତ ଅଧିକ ଗ୍ଲାଏଲ୍ କୋଷ ରହିଛି । କିନ୍ତୁ ଏହି କୋଷ ସାଧାରଣତଃ ବାର୍ଦ୍ଧକ୍ୟ ଅବସ୍ଥାରେ ଅଧିକ ଦେଖାଯାନ୍ତି ଏବଂ ସୃଜନଶୀଳତା କିମ୍ବା ନୂତନ ଚିନ୍ତାଧାରାର ଉଦ୍ରେକ କରିବା ଶକ୍ତି ଏମାନଙ୍କର ନାହିଁ ।

ସେ ଯାହାହେଉ, ଆଇନ୍‌ଷ୍ଟାଇନ୍‌ଙ୍କ ପ୍ରତିଭାର ରହସ୍ୟ ଆଜିଯାଏଁ ଉଦ୍‌ଘାଟିତ ହୋଇପାରି ନାହିଁ । ଏହି ପରିପ୍ରେକ୍ଷୀରେ ମନରେ ଧାରଣା ଜନ୍ମେ ଯେ, ସର୍ବସାଧାରଣଙ୍କ ମସ୍ତିଷ୍କ ଗଠନ ଆଇନ୍‌ଷ୍ଟାଇନ୍‌ଙ୍କ ସହିତ ସମାନ । ତେବେ କୌଣସି ବୈଜ୍ଞାନିକ କୌଶଳ ଦ୍ୱାରା ଆମ ମସ୍ତିଷ୍କ ବାହାର କରାଯାଇ ଆଇନ୍‌ଷ୍ଟାଇନ୍‌ଙ୍କ ମସ୍ତିଷ୍କ ରୋପଣ କରାଗଲେ, ଆମେ ତାଙ୍କ ପରି ବୁଦ୍ଧିମାନ ହୋଇପାରିବା କି ? ବୋଧହୁଏ ବୁଦ୍ଧି ସହିତ ମସ୍ତିଷ୍କର ସେମିତି ପ୍ରତ୍ୟକ୍ଷ ସମ୍ପର୍କ ନାହିଁ ! ଯଦି ରହନ୍ତା, ତାହାହେଲେ ରହସ୍ୟଜନକ ହବେ ! ତେଣୁ ମୂର୍ଖ ବୋଲି କୁହାଯାଉଥିବା ହାତୀର ମୁଣ୍ଡକୁ ପ୍ରଭୁ ଗଣେଶ ଧାରଣ କରି କିପରି ସର୍ବଜ୍ଞାନର ସୃଷ୍ଟିକର୍ତ୍ତା ହୋଇପାରିଲେ, ତାହା ଆମକୁ ରହସ୍ୟାବୃତ ଜଣାଯାଏ । ଅବଶ୍ୟ ଏଠାରେ ସ୍ମରଣ କରାଯାଇପାରେ ଯେ, ଅନ୍ୟର ମସ୍ତିଷ୍କ ଦ୍ୱାରା ଆମର ବୁଦ୍ଧିମତ୍ତା ବୃଦ୍ଧି ନ ହେଲେ ମଧ୍ୟ, ସାଧାରଣ ଭାବେ ବଞ୍ଚିବା ପାଇଁ ମସ୍ତିଷ୍କ ଅପରିହାର୍ଯ୍ୟ । ତେଣୁ ମସ୍ତିଷ୍କ କିମ୍ବା ମସ୍ତକ ରୋପଣର ମହତ୍ତ୍ୱ ଅବଶ୍ୟ ରହିଛି ।

ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଇପାରେ ଯେ, ବର୍ତ୍ତମାନ ଅଙ୍ଗରୋପଣ ପରିବର୍ତ୍ତେ ଅନ୍ୟ ଏକ ବିଷୟ ପ୍ରତି ଭେଷଜ ବୈଜ୍ଞାନିକମାନେ ବିଶେଷ ଦୃଷ୍ଟି ଦେଉଛନ୍ତି, ଯାହାକି ଅସମ୍ଭବ ବୋଲି ମନେ ହେଉଥିଲେ ମଧ୍ୟ ଆଗାମୀ ଶତାବ୍ଦୀରେ ବାସ୍ତବ ରୂପ

ନେଇପାରେ । ଏହା ହେଉଛି ମଣିଷର କଟିଯାଇଥିବା କିମ୍ବା ନଷ୍ଟ ହୋଇଯାଇଥିବା ଅଙ୍ଗ ଉଠିଲେଇବା ! ଆମେ ଜାଣୁ ଯେ, ବୃକ୍ଷର କଟା ହୋଇଥିବା ଶାଖା ପ୍ରଶାଖା ପୁଣି ଉଠିଲେ । ଠିକ୍ ସେମିତି କେତେକ ପ୍ରାଣୀମାନଙ୍କ କ୍ଷେତ୍ରରେ ଏହା ଘଟିଥାଏ । ଉଦାହରଣ ସ୍ୱରୂପ ହିଟିପିଟିର ଲାଙ୍ଗୁଡ଼ ଓ ଗୋଧି ଜାତୀୟ ପ୍ରାଣୀ (ସାଲାମେଣ୍ଡର)ର ଅଂଶ ବିଶେଷ ଶରୀରରୁ ଖସିଯାଇପାରେ । ଏମାନେ ହରାଇଥିବା ଅଙ୍ଗମାନ ପୁଣି ଉଠିଲେଇ ନିଜ ପୂର୍ବାକୃତି ଫେରାଇ ଆଣିଥାନ୍ତି ।

ବିଖ୍ୟାତ ବୈଜ୍ଞାନିକ ବେକର୍ ବେଙ୍ଗ ଉପରେ ଗବେଷଣା କରି ଜାଣି ପାରିଛନ୍ତି ଯେ, ତାର କଟା ସ୍ଥାନରେ କୃତ୍ରିମ ଉପାୟ ଦ୍ୱାରା ଧନାତ୍ମକରୁ ଋଣାତ୍ମକ ବୈଦ୍ୟୁତିକ ପରିବର୍ତ୍ତନ ଘଟାଇ ପାରିଲେ, ନଷ୍ଟ ହୋଇଥିବା ଅଙ୍ଗଟି ଉଠିଲ ଉଠେ । ଏହା ମନୁଷ୍ୟ କ୍ଷେତ୍ରରେ ସମ୍ଭବ ହୋଇପାରେ ବୋଲି କେତେକ ବୈଜ୍ଞାନିକ ଆଶା ପୋଷଣ କରୁଥିବା ଲକ୍ଷେଣୀୟ ।



# ଚିର ଜୀବିତ ଚିର ହରିତ୍

ଯୌବନାବସ୍ଥାରେ ସଂସାର ତ୍ୟାଗ କରିବାକୁ ବୁଦ୍ଧଦେବଙ୍କୁ ଯେଉଁ ଚାରୋଟି ଦୃଶ୍ୟ ଅତିଶୟ ବାଧ୍ୟ କରିଥିଲା, ସେଗୁଡ଼ିକ ହେଲା, କୌଣସି ଏକ ରୋଗୀ, କେହି ଜଣେ ବୃଦ୍ଧ ଏବଂ ତାହାର ଗୋଟିଏ ଶବ । ଏହି ଚାରୋଟି ଦୃଶ୍ୟ ମଧ୍ୟରୁ ଶବଟି ସବୁଠାରୁ ପ୍ରଭାବଶାଳୀ ଥିଲା । ଏହା ମଣିଷର ଅନ୍ତିମ ଦୁଃଖଦ ପରିଣତି ମୃତ୍ୟୁ, ଯାହାକି ଅନିବାର୍ଯ୍ୟ । ଏହା ଚିନ୍ତାଶୀଳ ବୁଦ୍ଧଦେବଙ୍କର ଜୀବନର ଗତିପଥକୁ ସମ୍ପୂର୍ଣ୍ଣ ଭାବେ ବଦଳାଇ ଦେଇଥିଲା । ବାସ୍ତବିକ ସମସ୍ତେ ମୃତ୍ୟୁକୁ ଏକ ଭୟଙ୍କର ଘଟଣା ବୋଲି ବିଚାର କରିଥାନ୍ତି ଏବଂ ସେଥିରୁ ରକ୍ଷା ପାଇବା ପାଇଁ ବିଭିନ୍ନ ଉଦ୍ୟମ କରିଥାନ୍ତି ।

ଏହି ସମ୍ପର୍କରେ ଗ୍ରୀସ୍ ଦେଶର ଏକ କାହାଣୀ ପ୍ରଣିଧାନଯୋଗ୍ୟ । ପ୍ରାଚୀନ-କାଳରେ ଜଣେ ସିଦ୍ଧହସ୍ତ ଓ ବିଚକ୍ଷଣ ମୂର୍ତ୍ତିକାର ଗ୍ରୀସ୍ ଦେଶରେ ବସବାସ କରୁଥିଲେ । ସେ ପଥରରେ ଅତି ଜୀବନ୍ତ ମୂର୍ତ୍ତିମାନ ପ୍ରସ୍ତୁତ କରି ସମସ୍ତଙ୍କୁ ବିସ୍ମିତ କରି ଦେଉଥିଲେ । କେତେକ ବର୍ଷ ପରେ ମୂର୍ତ୍ତିକାରଙ୍କର ଯେତେବେଳେ ବୃଦ୍ଧାବସ୍ଥା ପହଞ୍ଚିଲା; ସେ ଭାବିନେଲେ ଯେ, ଏଥର ଯମରାଜା ତାଙ୍କୁ ଟାଣି ନେଇଯିବେ । ତେଣୁ ମୃତ୍ୟୁମୁଖରୁ ବଞ୍ଚିବା ପାଇଁ ସେ ଗୋଟିଏ ଉପାୟ ପାଞ୍ଚିଲେ । ସେ ନିଜର ଦଶଗୋଟି ନିଖୁଣ ମୂର୍ତ୍ତି ନିର୍ମାଣ କରି ଗୋଟିଏ ଘରେ ରଖିଲେ ଏବଂ ଯମରାଜା ଯେତେବେଳେ ଭଗବାନଙ୍କ ଆଦେଶ ପାଇ ତାଙ୍କ ନିକଟକୁ ଆସିଲେ ସେ ସେହି ମୂର୍ତ୍ତିମାନଙ୍କ ଗହଣରେ ରହିଗଲେ । ଯମରାଜା ଆସି ଦେଖନ୍ତି ତ, ଜଣଙ୍କ ବଦଳରେ ଏକାପରି ଏଗାରଟି ଲୋକ ଅଛନ୍ତି । ମୂର୍ତ୍ତିଗୁଡ଼ିକ ଏତେଦୂର ଜୀବନ୍ତ ଥିଲେ ଯେ, ତନ୍ମଧ୍ୟରୁ କିଏ ସଜୀବ, କିଏ ନିର୍ଜୀବ—ସେ ଜାଣି ପାରିଲେ ନାହିଁ । ନିରାଶ ହୋଇ ସେ ଭଗବାନଙ୍କ ନିକଟକୁ ଫେରିଯାଇ ନିଜର ଅସାମର୍ଥ୍ୟ ପ୍ରକାଶ କଲେ । ତାପରେ ସ୍ୱୟଂ ଭଗବାନ ଯମରାଜାଙ୍କ ସହିତ ସେଠାରେ ପହଞ୍ଚି ଦେଖନ୍ତି ତ, ମୂର୍ତ୍ତିକାର ସେମିତି ଏଗାରଜଣ ଏକାପରି ବ୍ୟକ୍ତିଙ୍କ ଗହଣରେ ରହିଛନ୍ତି; କିନ୍ତୁ ଏଥିରେ ସେ ବିଚଳିଲେ ନାହିଁ ।

ମୂର୍ତ୍ତିକାର ସେତେ ବଡ଼ ଶିଳ୍ପୀ ହୁଅନ୍ତୁ ନା କାହିଁକି, ସେ ଭଗବାନଙ୍କ ଠାରୁ ବଡ଼ ସ୍ରଷ୍ଟା ହୋଇପାରିବେ ନାହିଁ କିମ୍ବା ଭଗବାନଙ୍କ ଠାରୁ ଅଧିକ ଚତୁର ହୋଇପାରିବେ ନାହିଁ । ଭଗବାନ ଗୋଟିଏ ରହସ୍ୟପୂର୍ଣ୍ଣ ମୁରୁକି ହସ ସହିତ ସଂକ୍ଷିପ୍ତ ସ୍ୱରେ କହିଲେ, "ଯମରାଜ ! ଦେଖୁଛ ତ...ଏଇ ଏଗାର ଜଣଙ୍କ ମଧ୍ୟରୁ ଜଣକ ମଧ୍ୟରେ କିଛି ତ୍ରୁଟି ରହିଯାଇଛି..." ଏହା ଶୁଣିବା ମାତ୍ରେ ଏଗାରଟି ମୂର୍ତ୍ତି ହଲଚଲ ହେଲେ ନାହିଁ । କିନ୍ତୁ ମୂର୍ତ୍ତିକାର କଣେ ଚମକି ପଡ଼ିଲେ । କାରଣ ତାଙ୍କ ମନରେ ସେତେବେଳେ ହଠାତ୍ ଆଶଙ୍କା ଜାତ ହେଲା ସେ ଯେତେ ତ୍ରୁଟି ସମ୍ଭବ, ଭଗବାନ ତାଙ୍କୁ ଚିହ୍ନିଦେବେ ।

ଭଗବାନ ମୂର୍ତ୍ତିକାରଙ୍କ ହଲଚଲ ଦେଖି ତାଙ୍କୁ ଚିହ୍ନି ପାରିଲେ ଏବଂ ତାଙ୍କୁ ଡାକିନେଇ କହିଲେ, "ମୁଁ ପରା ତମକୁ ଭବବନ୍ଧନରୁ ନେବା ପାଇଁ ଯମରାଜାଙ୍କୁ ପଠାଇଥିଲି ! ଆସ, ଶୀଘ୍ର ଯିବା—" ଫଳରେ ମୂର୍ତ୍ତିକାରଙ୍କ ମୁଖରୁ ଏଡ଼ାଇବା ଉଦ୍ୟମ ଫସର ଫାଟିଲା । ଯେ କୌଣସି ଜୀବ ପାଇଁ ମୃତ୍ୟୁ ସେ ଅବଶ୍ୟମ୍ଭାବୀ, ଏହା ସମସ୍ତେ ସର୍ବଦା ଏଥିରେ ହୃଦୟଙ୍ଗମ କରିବା ଉଚିତ ।

ତଥାପି ଯୁଗ ଯୁଗ ଧରି ମଣିଷ ମୃତ୍ୟୁ ମୁଖରୁ ରକ୍ଷା ପାଇବା ପାଇଁ ଅହରହ ଉଦ୍ୟମ କରି ଆସିଛି । ଏଥିପାଇଁ ସେ କଠୋର ତପସ୍ୟାରତ ହୋଇଥିବା କଥା ପୁରାଣଶାସ୍ତ୍ରରୁ ଜଣାପଡ଼େ । ଆମେ ଆକାଶରେ ଯେଉଁ ଧ୍ରୁବତାରା ବର୍ତ୍ତମାନ ଦେଖୁଛେଁ, ସେ ପ୍ରକୃତରେ ଥରେ ରାଜା ଉତ୍ତାନପାଦଙ୍କ ପୁତ୍ର ଥିଲେ । ମାତ୍ର ପାଞ୍ଚ ବର୍ଷ ବୟସରେ ସେ କଠୋର ଧ୍ୟାନମଗ୍ନ ହୋଇ ବିଷ୍ଣୁଙ୍କର ସାକ୍ଷାତ ଦର୍ଶନ ଲାଭ କଲେ । ତାଙ୍କୁ ବରପ୍ରଦାନ ପୂର୍ବକ ବିଷ୍ଣୁ ପୃଥିବୀର ଉତ୍ତରମେରୁର ଠିକ୍ ମୁଣ୍ଡ ଉପରେ ନକ୍ଷତ୍ର ରୂପେ ଅବସ୍ଥାପିତ କଲେ । ପ୍ରାୟତଃ ଜଳେ ଏଇ ଧ୍ରୁବତାରାକୁ ଲକ୍ଷ୍ୟକରି ଦିଗହରା ନାବିକମାନେ ଉତ୍ତରଦିଗ ନିର୍ଣ୍ଣୟ କରିଥାନ୍ତି । ସୃଷ୍ଟି ଥିବା ଯାଏଁ ଧ୍ରୁବତାରା ବଞ୍ଚି ରହିବେ ଏବଂ ଅମରତ୍ୱ ପାଇବେ ବୋଲି ଭଗବାନ ବିଷ୍ଣୁ ବର ଦେଇ ଯାଇଛନ୍ତି ।

କିନ୍ତୁ ଏହି ଅମର ବର ପାଇବାକୁ ଧ୍ରୁବଙ୍କୁ ବହୁ ଜନ୍ମ ଧରି କଠୋର ତପସ୍ୟା କରିବାକୁ ପଡ଼ିଥିଲା । ଧ୍ରୁବ ଯେତେବେଳେ ଭଗବାନଙ୍କ ଦ୍ୱାରା ବରପ୍ରାପ୍ତ ହୋଇ ଚଉପଟକୁ ଚାହିଁଲେ, ସେ ଦେଖିପାରିଲେ ଯେ, ଘଞ୍ଚ ଦୂବ ଗଛର ଆସ୍ତରଣ ତଳେ ଗୋଟିଏ ଢିପ ସୃଷ୍ଟି ହୋଇଛି । ସେତେବେଳେ ତାଙ୍କ ଗୁରୁ ତାଙ୍କୁ ଏହାର ରହସ୍ୟ ବୁଝାଇବାକୁ ଯାଇ କହିଥିଲେ, "ଧ୍ରୁବ ! ବହୁ ଜନ୍ମ ଧରି ତମେ ଏଇ ଏକ ସ୍ଥାନରେ ତପସ୍ୟା କରି ଦେହ ଛାଡ଼ିଛ । ତମର ପୂର୍ବଜନ୍ମ ସବୁର କଙ୍କାଳ ସମଷ୍ଟିରେ ଏ ଢିପର ସୃଜନ ।" ତେଣୁ ଅମରବର ପ୍ରାପ୍ତି ପାଇଁ ସେ ଯୁଗଯୁଗର ତପସ୍ୟା, ସାଧନା ଓ ଭକ୍ତି ଆବଶ୍ୟକ, ଏଥିରେ କୌଣସି ସନ୍ଦେହ ନାହିଁ ।

ଧ୍ରୁବଙ୍କ ଜୀବନରୁ ଜଣାଯାଏ ଯେ, ମଣିଷ ଅମର ହେବା ପାଇଁ ସେଇ ବଳିଷ୍ଠ ଉପାୟ ଅବଲମ୍ବନ କରୁଛି, କାଳାନ୍ତରରେ ତାରକା ଭାବେ ରୂପାନ୍ତରିତ ହୋଇ ଶୋଭା ପାଇବା ଅନ୍ୟତମ । କିନ୍ତୁ ଆଜିକାଲିର ଲୋକମାନେ ଏହାକୁ ସୁବିଧା ଉପାୟରେ ହାସଲ କରିବାରେ ଲାଗି ପଡ଼ିଲେଣି । ଯାମ ଆକାଶରେ ଦେଖାଯାଉଥିବା ଅଗଣିତ ତାରକା ମଧ୍ୟରୁ କୌଣସି ଗୋଟିକୁ ନିଜ ନାମରେ ନାମିତ କରିବାକୁ ସେମାନେ ତତ୍ପର ହୋଇପଡ଼ିଲେଣି । ବର୍ତ୍ତମାନ ସତର ହଜାରସାଏଁ ବ୍ୟକ୍ତି ପ୍ରତ୍ୟେକେ ତିରିଶ ଡଲାର ଲେଖାଏଁ, ଆମେରିକାସ୍ଥିତ ଜଣେ ଜ୍ୟୋତିର୍ବିଦ୍‌ଙ୍କ ନିକଟକୁ ପଠାଇ ତାଙ୍କୁ ଅନୁରୋଧ କରୁଛନ୍ତି ଯେ, ସେମାନଙ୍କ ନାମରେ ସେମିତି ଆକାଶର ଗୋଟିଏ ଗୋଟିଏ ନକ୍ଷତ୍ର ନାମିତ କରାଯାଏ ଏବଂ ତାହା ଜ୍ୟୋତିର୍ବିଜ୍ଞାନ ଶାସ୍ତ୍ରରେ ଚିରଦିନ ଲିପିବଦ୍ଧ ହୋଇ ରହେ । ଧ୍ରୁବଙ୍କ ପରି ଅମର ହୋଇ ବଞ୍ଚି ରହିବାକୁ ଅବଶ୍ୟ ଏହା ଏକ ସହଜ ପନ୍ଥା । କିନ୍ତୁ ବର୍ତ୍ତମାନ ଜ୍ୟୋତି ବିକିରଣ କରୁଥିବା ନକ୍ଷତ୍ରମାନେ ଯେ ଦିନେ ଜଳି ଜଳି ପୋଡ଼ି ଅଙ୍ଗାରରେ ପରିଣତ ହେବେ—ଏହି ବୈଜ୍ଞାନିକ ତଥ୍ୟଟି ଏହି ସବୁ ହଜାର ଦରଖାସ୍ତକାରୀ ଭୁଲି ଯାଉଛନ୍ତି । ଅମର ଭାବେ ବଞ୍ଚି ରହିବାକୁ ଆମ ମନ ମଧ୍ୟରେ ଯେଉଁ ପ୍ରବଳ ବାସନା ରହିଛି, ତାହା ପରିଶେଷରେ ଏମିତି ପାଗଳାମିରେ ପର୍ଯ୍ୟବସିତ ହୋଇପାରେ ! ଅବଶ୍ୟ ବର୍ତ୍ତମାନ ବୈଜ୍ଞାନିକ ଉପାୟରେ ଅମର ହେବା ପାଇଁ ଏକ ସୁଚିନ୍ତିତ ପ୍ରଚେଷ୍ଟା ଆରମ୍ଭ ହୋଇଛି ଭିନ୍ନ ପ୍ରକାରେ ।

ଜଣାଯାଏ ଯେ, ଆମର ମୃତ୍ୟୁ ଦୁଇଟି ପର୍ଯ୍ୟାୟରେ ସମ୍ପୂର୍ଣ୍ଣ ହୋଇଥାଏ । ପ୍ରଥମ ଅବସ୍ଥା ହେଉଛି ଲାକ୍ଷଣିକ ମୃତ୍ୟୁ, ଯାହା ଫଳରେ ଆମ ଶରୀରର ତାପମାତ୍ରା କମିଯାଏ; ହୃତ୍‌ପିଣ୍ଡ ଓ ରକ୍ତସଞ୍ଚାଳନ ବନ୍ଦ ହୋଇଯାଏ । କିନ୍ତୁ ଏହା ଦ୍ୱାରା ଆମ ଜୀବନର ପରିସମାପ୍ତି ଘଟେ ନାହିଁ । ଲାକ୍ଷଣିକ ମୃତ୍ୟୁର ପ୍ରାୟ ଦଶ ମିନିଟ୍ ପରେ ଅନ୍ତିମ ପର୍ଯ୍ୟାୟ ଆରମ୍ଭ ହୁଏ, ଯାହାକୁ କୁହାଯାଏ ଜୈବିକ ମୃତ୍ୟୁ । ଏହା ଘଟିବା ପରେ ଆମର ମସ୍ତିଷ୍କ ଓ ଶରୀର କ୍ଷୟ ହୁଏ ଏବଂ ଆମେ ଆଉ ଜୀବନ ଫେରି ପାଇବା କୌଣସି ଉପାୟରେ ସମ୍ଭବ ନୁହେଁ ।

ଜୀବନ-ବିଜ୍ଞାନୀମାନେ ବିଶ୍ୱାସ କରନ୍ତି ଯେ, ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ହେଉଛି ଲାକ୍ଷଣିକ ଓ ଜୈବିକ ମୃତ୍ୟୁ ମଧ୍ୟରେ ଥିବା ଦଶ ମିନିଟ୍ ବ୍ୟବଧାନ । ଉପଯୁକ୍ତ ବାତାବରଣ ଦ୍ୱାରା ଏହି ସମୟ ଅବଧି ଦୀର୍ଘ କରିହେବ । ଫଳରେ ଜୈବିକ ମୃତ୍ୟୁକୁ ବହୁଦିନ ଯାଏଁ ଏଡ଼ାଇ ଦିଆଯାଇ ପାରିବ ; ଭବିଷ୍ୟତରେ ନୂତନ ଭାବେ ଉଦ୍‌ଭାବିତ ଔଷଧ ବ୍ୟବହାର କରି ଲାକ୍ଷଣିକ ମୃତ୍ୟୁ ଲଭିଥିବା ବ୍ୟକ୍ତିକୁ ସମ୍ପୂର୍ଣ୍ଣ ସୁସ୍ଥ ଭାବେ ବଞ୍ଚାଇ ହେବ ।

ଡକ୍ଟର ଏଟିଙ୍ଗର୍ ନାମକ ଏକ ମାର୍କିନ ବୈଜ୍ଞାନିକ ୧୯୬୪ ସାଲରେ "ଅମର ହୋଇ ବଞ୍ଚିବାର ସମ୍ଭାବନା" (ଦି ପ୍ରସ୍‌ପେକ୍ଟ ଅଫ୍ ଇମୋର୍ଟାଲିଟି) ବହିରେ ପ୍ରଥମେ ଉଲ୍ଲେଖ କରିଥିଲେ ଯେ, ଯେଉଁମାନେ ମରିଯାଉଛନ୍ତି, ସେମାନଙ୍କୁ ପୋଡ଼ିବା କିମ୍ବା ପୋତିବା ଉଚିତ ନୁହେଁ ! ସେମାନଙ୍କ କ୍ଲିନିକାଲ ମୃତ୍ୟୁ ହେଲେ ହେଲେ ଶୀତଳ-ଭଣ୍ଡାରରେ ସାଇତି ରଖିବା ଉଚିତ । ନାମରେ ସେମାନଙ୍କୁ ଆବଶ୍ୟକୀୟ ଔଷଧ ପତ୍ର ଦେଇ ବଞ୍ଚାଇବା ପାଇଁ ଚେଷ୍ଟା କରାଯାଇପାରେ ।

ଏଟିଙ୍ଗରଙ୍କ ପ୍ରକଳ୍ପକୁ କାର୍ଯ୍ୟକାରୀ କରିବା ପାଇଁ ବହୁ ବ୍ୟକ୍ତି ଓ ଅନୁଷ୍ଠାନ ଆଗେଇ ଆସିଛନ୍ତି । ଏକ ହଜାରରୁ ଅଧିକ ସଭ୍ୟ ବିଶିଷ୍ଟ ବର୍ତ୍ତମାନ ଯେଉଁ "ଆୟୁ ବୃଦ୍ଧି ସମିତି" ଗଠିତ ହୋଇଛି, ତାର ମୂଳ ଉଦ୍ଦେଶ୍ୟ ହେଲା, "ବ୍ୟକ୍ତିର ମୃତ୍ୟୁ ପରେ ଶରୀରର ଶୀତଳୀକରଣ, ମୃତଶରୀରକୁ ଶୀତଳ ଭଣ୍ଡାରରେ ସଂରକ୍ଷଣ ଓ ପରିଶେଷରେ ସୁବିଧା ଦେଖି ପୁନର୍ଜୀବନ ଦାନ ।"

କାଲିଫର୍ଣ୍ଣିଆ ରାଜ୍ୟ ଅନ୍ତର୍ଗତ ଗ୍ଲେନଡେଲ ସହରରେ ଏକଦା ରହୁଥିବା ମନସ୍ତତ୍ତ୍ୱ ଅଧ୍ୟାପକ ଜେମସ୍ ବେଡ଼ଫୋର୍ଡ଼ ବିଶ୍ୱାସ କରୁଥିଲେ ଯେ, ଏଟିଙ୍ଗରଙ୍କ ପରିକଳ୍ପନା ଅବାସ୍ତବ ନୁହେଁ । ବେଡ଼ଫୋର୍ଡ଼ଙ୍କ ଉଇଲ୍‌ନାମା ଅନୁସାରେ ସେ ଯେତେବେଳେ ୧୯୬୭ ମସିହା ଜାନୁଆରି ୧୨ ତାରିଖ ଦିନ ଫୁସ୍‌ଫୁସ୍-କର୍କଟ ରୋଗରେ ମୃତ୍ୟୁ ବରଣ କଲେ, ତାଙ୍କୁ ସଙ୍ଗେ ସଙ୍ଗେ ବରଫ ଭିତରେ ରଖାଗଲା । ତାପରେ ଶୁଖିଲା ବରଫ ମଧ୍ୟରେ ରଖି ଆରିଜୋନା ରାଜ୍ୟର ଫୋନିକ୍ସ ସହରକୁ ନିଆଗଲା । ସେଠାରେ ତରଳ ଯବକ୍ଷାରଜାନ ଦ୍ୱାରା ଅତି କମ୍ ତାପମାତ୍ରାରେ ତାଙ୍କର ଶବକୁ ସଂରକ୍ଷିତ କରି ରଖାଯାଇଛି । ସେ ଯେଉଁ ମାରାତ୍ମକ ଫୁସ୍‌ଫୁସ୍-କର୍କଟ ରୋଗରେ ମରିଛନ୍ତି, ବର୍ତ୍ତମାନ ଯାଏଁ ତାର ଅବ୍ୟର୍ଥ ଔଷଧ ଉଦ୍‌ଭାବିତ ହୋଇନାହିଁ । ଭବିଷ୍ୟତରେ ଯେତେବେଳେ ଗବେଷକମାନେ ଏଇ ଔଷଧ ଉଦ୍‌ଭାବନ କରିବେ, ସେମାନେ ଜେମସ୍ ବେଡ଼ଫୋର୍ଡ଼ଙ୍କ ସଂରକ୍ଷିତ ଶବରେ ତାହା ପ୍ରୟୋଗ କରି ତାଙ୍କୁ ବଞ୍ଚାଇ ପାରିବେ । ଏହି ବିଶ୍ୱାସ ଦିନେ ହୁଏତ ବାସ୍ତବରେ ରୂପାୟିତ ହୋଇପାରେ ।

ଆମେ ବହୁ ସମୟରେ ଶୁଣିବାକୁ ପାଉ ଯେ, ମଡ଼ା ନେଇ ବହି ଯାଉଛୁ । ହେଲେ ହଠାତ୍ ଶବ କୋକେଇ ମଧ୍ୟରୁ ଉଠି ଆସି ଆମ ସମ୍ମୁଖରେ ଆଶ୍ଚର୍ଯ୍ୟଜନକ ଭାବେ ଠିଆ ହୋଇଯାଉଛି ! ଏହାର କାରଣ ହୋଇପାରେ ଯେ, ଆମେ ତାର ଜୈବିକ ମୃତ୍ୟୁ ହେବା ଯାଏଁ ଅପେକ୍ଷା ନ କରି, ତାର କ୍ଲିନିକାଲ ମୃତ୍ୟୁ ହେଉହେଉ ତାକୁ କୋକେଇ ଭିତରେ ଜବରଦସ୍ତି ପୂରାଇ ଦେଉଛୁ । ଏମିତି ବହୁବାର ବିଚିତ୍ର ଘଟଣାମାନ ଘଟିଥିବା ଜଣାଯାଏ । ଥରେ ପଚାଶବର୍ଷ ବୟସ୍କ ଫ୍ରାଙ୍କୋଆ ଦା ପିଭଲ୍ ନାମକ ଜଣେ

ବ୍ୟକ୍ତିଙ୍କୁ ଏଇ ପ୍ରକାରେ କବର ଦିଆଗଲା । ଏମିତି ସମୟରେ ତାଙ୍କ ସ୍ତ୍ରୀଙ୍କୁ କଣ ଲାଗିଲା କେଜାଣି, ସେ କବର ନିକଟରେ ପତ୍ନୀ ମୃତ ସ୍ୱାମୀକୁ ଦେଖିବା ପାଇଁ ଜିଦ୍ ଧରିଲେ । କବର ଧୀରେ ଧୀରେ ଖୋଲିବା ପରେ ଦେଖାଗଲା ଯେ, ଶବାଧାର ମଧ୍ୟରେ ଫ୍ରାଙ୍କୋଆ ପ୍ରକୃତରେ ମରି ନାହାନ୍ତି; ତାଙ୍କର ନିଶ୍ୱାସ ପ୍ରଶ୍ୱାସ ବନ୍ଦ ହୋଇ ନାହିଁ । ଶରୀରରେ ରକ୍ତ ସଞ୍ଚାଳନ ସ୍ୱାଭାବିକ ଥିଲା ।

ଫ୍ରାଙ୍କୋଆଙ୍କର ପୁନର୍ଜନ୍ମ ହେଲା ସତ ଯେବେ ତାଙ୍କୁ ଶ୍ମଶାନରୁ ଘରକୁ ଫେରାଇ ଆଣିଲେ । ଦେଖାଗଲା ଯେ, ଏହି ଘଟଣାର ଯାତ୍ତୁର ସତୁରି ବର୍ଷ ପରେ ବି ସେ ସୁସ୍ଥଭାବେ ବଞ୍ଚି ରହିଲେ । ଏପରିକି ଏକଶହ ପାଞ୍ଚ ବର୍ଷ ହୋଇଥିବା ବେଳେ ଯେ ଯେତେବେଳେ ମଲେ, ସେତେବେଳେ ମଧ୍ୟ ତାଙ୍କ କୌଣସି ରୋଗ ଧରି ନଥିଲା; ସାରା ରାତି ଉଜାଗର ରହି ପ୍ରେମିକାକୁ ଗୀତ ଶୁଣାଇବା ବେଳେ ଥଣ୍ଡା ଧରିବାରୁ ସେ ବ୍ରୁଅଡ୍ରେ ମରିଥିଲେ !

ଫ୍ରାଙ୍କୋଙ୍କୁ ଯଦି ଠିକ୍ ସମୟରେ କବର ମଧ୍ୟରୁ ଉଦ୍ଧାର କରାଯାଇ ନଥାନ୍ତା, ତାହାହେଲେ ତାଙ୍କର ଅକାଳ ମୃତ୍ୟୁ ପାଇଁ ଦାୟୀ ହୋଇଥାନ୍ତୁ ଆମେ ଏବଂ ଆମର ଅଜ୍ଞତା । ତେଣୁ କ୍ଲିନିକାଲ ମୃତ୍ୟୁ (ହୃତ୍‌ପିଣ୍ଡ ନିଷ୍କ୍ରିୟତା) ଓ ଜୈବିକ ମୃତ୍ୟୁ (ମସ୍ତିଷ୍କ ନିଷ୍କ୍ରିୟତା) ମଧ୍ୟରେ ଯେଉଁ ପାର୍ଥକ୍ୟ ରହିଛି, ସେ ସମ୍ପର୍କରେ ସମସ୍ତ ବିଷୟ ଆମେ ବୁଝିବାକୁ ପଡ଼ିବ । "ଡସ୍—ରାଇଟ୍ ଟୁ ଡାଇ" ଫେଡ଼େରେସନ୍‌ର ସମ୍ପାଦକ ଶ୍ରୀ ମିନୁ ମାସାନି ଏହି ସମ୍ପର୍କରେ ନିଜର ମତ ଦେବାକୁ ଯାଇ କହନ୍ତି ଯେ, ଯିଏ ଅମେରିକାରେ ଜୀବିତ, ତାକୁ ଭାରତରେ ମୃତ ବୋଲି ବୁଝାଯାଉଛି ! ଅମେରିକା ଓ ବ୍ରିଟେନରେ ମସ୍ତିଷ୍କ ମୃତ୍ୟୁକୁ ମଣିଷର ପ୍ରକୃତ ମୃତ୍ୟୁ ବୁଝାଯାଉଥିବା ବେଳେ, ଭାରତରେ ହୃତ୍‌ପିଣ୍ଡ-ମୃତ୍ୟୁକୁ ପ୍ରକୃତ ମୃତ୍ୟୁ ବୋଲି ଧରାଯାଉଛି । ଏଇ ଦୁଇ ପ୍ରକାର ମୃତ୍ୟୁ ମଧ୍ୟରେ ଦଶ ମିନିଟ୍ ସମୟ ବ୍ୟବଧାନ ରହି ଯାଉଥିବା ଯୋଗୁଁ, ଭାରତରେ ଯିଏ ମୃତ, ତାକୁ ଅମେରିକାରେ ଜୀବିତ ବୋଲି ଗ୍ରହଣ କରାଯାଉଛି । ଏହାଦ୍ୱାରା ମୃତ୍ୟୁର ସଂଜ୍ଞା ସାର୍ବଜନୀନତା ହରାଇ ଥିବାରୁ ସମସ୍ତଙ୍କ ଚିନ୍ତାର ବିଷୟ ହୋଇ ରହିଛି । କିନ୍ତୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି ଯେ, ଏହା ଉପରେ ଭବିଷ୍ୟତର ମଣିଷକୁ ଅମର କରାଯାଇ ପାରିବ । ସେ ଯାହାହେଉ, ଗୋଟିଏ ଅମେରିକୀୟ କମ୍ପାନୀ ଶୀତଳ ଭଣ୍ଡାରରେ ଶବ ରଖିବା ପାଇଁ ଯେଉଁ ସ୍ୱତନ୍ତ୍ର କେବିନ ନିର୍ମାଣ କରିଛନ୍ତି, ତାର ମୂଲ୍ୟ ରଖିଛନ୍ତି ପାଞ୍ଚ ହଜାର ଡଲାର । ପୁଣି ଶୀତଳ ଭଣ୍ଡାରରେ ସଂରକ୍ଷିତ ଶବ ବାବଦକୁ ପ୍ରତି ବର୍ଷ ପାଞ୍ଚ ହଜାର ଡଲାର ଦେବାକୁ ପଡ଼ିବ ।

ଏହା ଶୁଣି ବହୁ ଲୋକ ଏଟିନଜରଙ୍କ ପ୍ରକଳ୍ପ ଏକ ବ୍ୟୟବହୁଳ ଯୋଜନା ବୋଲି ମନ୍ତବ୍ୟ ଦେବେ । ଏହାର କାର୍ଯ୍ୟକାରିତା ନେଇ ସନ୍ଦେହ ଜାତ ହୋଇଥିବା ବେଳେ,

ଲୋକେ ଏମିତ ଦୀର୍ଘବତ୍ସର ଯୋଜନାରେ ଧ୍ୟାନ ଦେବା ପାଇଁ ଇଚ୍ଛା କରିବେ । କିନ୍ତୁ ଏହା ଯଦି ଧାର୍ମିକାସ୍ତ୍ର ହୋଇଯାଏ, ତେବେ ତାକୁ ଶଯ୍ୟା ଓ ଧ୍ୱଂସ କରିବା ପାଇଁ ବୈଜ୍ଞାନିକମାନେ ଆବଶ୍ୟକୀୟ ପଦକ୍ଷେପ ଅବଶ୍ୟ ନେଇପାରିବେ । କାରଣ ଦୁର୍ମୂଲ୍ୟ ପଦାର୍ଥମାନଙ୍କ ଗବେଷଣା ମାଧ୍ୟମରେ ଶଯ୍ୟା କରିପାରିବାର କ୍ଷମତା ବୈଜ୍ଞାନିକ-ମାନଙ୍କ ପାଖରେ ରହିଛି । ତେଣୁ ତଥ କଥିତ ଅମର-ବର ଯେ ଦିନେ ସୁଲଭ ହୋଇ-ପାରିବେ ଏବଂ ଏହା ସର୍ବସାଧାରଣଙ୍କ ପାଇଁ ଉନ୍ମୁକ୍ତ ହେବ, ଏହା ଆମେ ଆଶା କରିପାରିବା ।

ତଥାପି ମେଦ୍‌ଓଏଷ୍ଟଙ୍କ ମତ ଉଦ୍ଧାର ଦେଇ ଦେତେକ ଲୋକ ଏଭ ସମ୍ବାଦରେ ଉତ୍ସାହିତ ହେଉ ନାହିଁ । ସେମାନେ ପ୍ରଶ୍ନ କରନ୍ତି ଯେ, ଯିଏ ସ୍ୱସ୍ଥ, ଯିଏ ଦୀର୍ଘଜୀବନ ବଞ୍ଚି ରହିଲେ ମଧ୍ୟ ଦୈନିକ ଶତ ସହସ୍ର ଲୋକ ମରେ । କିନ୍ତୁ ଯିଏ ବୀର, ଯିଏ ସ୍ୱଳ୍ପାୟୁ ହୋଇ ରଣକ୍ଷେତ୍ରରେ ପ୍ରାଣ ହରାଇଲେ ମଧ୍ୟ ଅମର ହୋଇ ରହେ । ତେଣୁ ଅମର-ବର ସୁଲଭ ହେଲେ ମଧ୍ୟ, ତାହା ଆଶାନୁରୂପ ଭାବେ ଉପାଦେୟ ହୋଇ ନ ପାରେ ।

--*—

ବୈଜ୍ଞାନିକ ଦୃଷ୍ଟିରେ ଖାଦ୍ୟ ସମସ୍ୟା—



ସ୍ଥୂଳକାୟ (ଇଂଲଣ୍ଡର ରଜା ଅଷ୍ଟମ ହେନରୀ (୧୫୦୯—୧୫୪୭)
ଗୁରୁ ଭୋଜନର ଶିକାର ?

# ବୈଜ୍ଞାନିକ ବିଚାରରେ ଖାଦ୍ୟ-ସମସ୍ୟା

୧୯୭୭ ମସିହାରେ କ୍ଷୁଧା ବିରୁଦ୍ଧରେ 'ହଙ୍ଗର ପ୍ରୋଜେକ୍ଟ' ନାମକ ଯେଉଁ ଅଭିଯାନ ଆରମ୍ଭ କରାଯାଇଥିଲା ବର୍ତ୍ତମାନ ତାହା ୧୫୦ଟି ଦେଶରେ ପାଞ୍ଚ ନିୟୁତ ସ୍ୱେଚ୍ଛାସେବୀଙ୍କୁ ନେଇ କାର୍ଯ୍ୟ କରୁଛି । ବିଂଶ ଶତାବ୍ଦୀ ଶେଷ ପୂର୍ବରୁ ପୃଥିବୀରୁ ସମ୍ପୂର୍ଣ୍ଣ ଭାବେ କ୍ଷୁଧା ଦୂରୀକରଣ କରି ଏହି ଉତ୍କଟ ସମସ୍ୟାର ସମାଧାନ ହୋଇଛି ଏହି ମହତ୍ ଯୋଜନାର ଲକ୍ଷ୍ୟ । ତାର ମୁଖ୍ୟ କାର୍ଯ୍ୟାଳୟ ନ୍ୟୁୟର୍କରେ ଅବସ୍ଥିତ । ଏହି ପ୍ରୋଜେକ୍ଟର କାର୍ଯ୍ୟନିର୍ବାହୀ ନିର୍ଦ୍ଦେଶିକା ମିସ ଜେନ ହୋମ୍‌ସ ଅତି ଉଦ୍‌ବେଗର ସହିତ ପ୍ରକାଶ କରିଛନ୍ତି, "ବିଗତ ୧୫୦ ବର୍ଷ ମଧ୍ୟରେ ଯୁଦ୍ଧ, ବିପ୍ଳବ ଓ ହତ୍ୟା ଫଳରେ ଯେତେ ବ୍ୟକ୍ତି ପ୍ରାଣ ହରାଇଛନ୍ତି, ତାହାଠାରୁ ଯଥେଷ୍ଟ ଅଧିକ ସଂଖ୍ୟକ ଲୋକ ଗତ ଛଅ ବର୍ଷ ମଧ୍ୟରେ ଅନାହାର ଯୋଗୁଁ ମୃତ୍ୟୁ ବରଣ କରିଛନ୍ତି···କେବଳ ପେଟରେ ପ୍ରତିଦିନ ୬୫୦ ନିୟୁତ ଲୋକ ଶଯ୍ୟାଶାୟୀ ହୋଇ ଛଟପଟ ହେଉଥାନ୍ତି ।"

ପ୍ରକୃତରେ କ୍ଷୁଧାର ବାସ୍ତବ ଚରିତ୍ର ସଠିକ ଭାବେ ବର୍ଣ୍ଣନା କରିବାକୁ ଯାଇ ମହାତ୍ମା-ଗାନ୍ଧି ଲେଖିଛନ୍ତି, "ଜଣେ କ୍ଷୁଧିତ ବ୍ୟକ୍ତିକୁ ଭଗବାନ ନିଜ ରୂପରେ ଦେଖା ନ ଦେଇ ଖାଦ୍ୟ ଆକାରରେ ଦେଖା ଦେଇଥାନ୍ତି ।" ସତ୍ରାଂ ଖାଦ୍ୟ-ସମସ୍ୟା ଅତି ଉତ୍କଟ ରୂପ ନେଇଛି । ଏଥିରୁ ରକ୍ଷା ପାଇବା ପାଇଁ ତାର ବିଭିନ୍ନ ଦିଗ ପ୍ରତି ଦୃଷ୍ଟି ଦିଆଯାଇପାରେ । ଉଦାହରଣ ସ୍ୱରୂପ, ଜଣେ ବ୍ୟକ୍ତିର ଖାଦ୍ୟସାମଗ୍ରୀ କ୍ରୟ କରିବା କ୍ଷମତା ତାର ଆୟ ଉପରେ ନିର୍ଭରଶୀଳ । ଯଥା :

| ଦେଶର ନାମ | ମୁଣ୍ଡ ପିଛା ଆୟ (ଆମେରିକୀୟ ଡଲାରରେ) | ମୁଣ୍ଡ ପିଛା ଗ୍ରହଣ କରୁଥିବା ଖାଦ୍ୟର ପରିମାଣ (କେଲୋରିରେ) |
|---|---|---|
| ଯୁକ୍ତରାଷ୍ଟ୍ର | ୭, ୮୯୭ | ୩, ୧୫୦ |
| କାନାଡ଼ା | ୭, ୧୨୩ | ୩, ୧୪୦ |
| ବ୍ରିଟେନ | ୫, ୬୮୪ | ୩, ୨୭୦ |
| ଜାପାନ | ୩, ୫୪୭ | ୨, ୧୧୦ |
| ଭାରତ | ୧୩୯ | ୧, ୮୮୦ |

(ମିଳିତ ଜାତିସଂଘର ୧୯୭୭ ସାଲର ତଥ୍ୟ ଉପରେ ପର୍ଯ୍ୟବସିତ)

ଏଥିରୁ ଜଣାଯାଏ ଯେ, ଜଣେ ବ୍ୟକ୍ତିର ଆୟ ବୃଦ୍ଧି ପାଇଲେ, ସେ ଖାଦ୍ୟ ବାବଦରେ ଅଧିକ ଖର୍ଚ୍ଚ ବହନ କରିବା ପାଇଁ ପ୍ରସ୍ତୁତ ହୁଏ । ଏହି ଲକ୍ଷ୍ୟ ହାସଲ କରିବାକୁ ବିଭିନ୍ନ ଉପାୟ ଅଛି । ତେବେ ପରିବାରର ସଦସ୍ୟ ସଂଖ୍ୟା ହ୍ରାସ କରି ହାରାହାରି ମୁଣ୍ଡପିଛା ଆୟର ପରିମାଣକୁ ବଢ଼ାଇବା ତନ୍ମଧ୍ୟରେ ଅନ୍ତର୍ଭୁକ୍ତ ।

ପ୍ରଖ୍ୟାତ ଅର୍ଥନୀତିଜ୍ଞ ରବର୍ଟ ମାଲ୍‌ଥସ୍ (୧୭୬୬—୧୮୩୪) ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଗୋଟିଏ ସୁଚିନ୍ତିତ ମୌଳିକ ପ୍ରବନ୍ଧରେ ଉଲ୍ଲେଖ କରିଥିଲେ ଯେ, ଖାଦ୍ୟ ସାମଗ୍ରୀର ଉତ୍ପାଦନ ତୁଳନାରେ ଜନସଂଖ୍ୟା ବୃଦ୍ଧି ଅତ୍ୟଧିକ ହୋଇଥାଏ । ତେଣୁ ସମାଜରେ ଖାଦ୍ୟାଭାବ ଘଟିବା ସ୍ୱାଭାବିକ । ଏହାଦ୍ୱାରା ଯେକୌଣସି ସମାଜରେ ଅସ୍ଥିରତା ଏବଂ ବିଶୃଙ୍ଖଳା ଦୃଷ୍ଟିଗୋଚର ହୁଏ ।

ବରିଷ୍ଠ ଜୀବବିଜ୍ଞାନବିତ୍ ଡାରୱିନ୍ ମାଲ୍‌ଥୁସଙ୍କ ଏହି ଚିନ୍ତାଧାରାରେ ପ୍ରଭାବିତ ହୋଇ 'ନାଚୁରାଲ ସିଲେକ୍‌ସନ' ବା ପ୍ରାକୃତିକ ଉଦ୍‌ବରଣ—ତତ୍ତ୍ୱ ଉପସ୍ଥାପନ କଲେ । ପ୍ରକୃତି-ଜଗତ ସମ୍ପର୍କରେ ସେ କହିଲେ ଯେ, ମଣିଷ ସମେତ ଯେକୌଣସି ଜୀବ ଅତ୍ୟଧିକ ପ୍ରଜନନ କ୍ଷମ । ତେଣୁ ପ୍ରତି ମୁହୂର୍ତ୍ତରେ ଜୀବସଂଖ୍ୟା ଅନବରତ ଭାବେ ବୃଦ୍ଧି ପାଉଥାଏ । ଫଳରେ ଜୀବ ବଞ୍ଚି ରହିବା ପାଇଁ ଅତ୍ୟଧିକ ଚାପର ସମ୍ମୁଖୀନ ହୁଏ । ନିଜ ଜୀବନ ରକ୍ଷା ପାଇଁ ତାକୁ ଅହରହ ଏବଂ ବେଳେବେଳେ ମାରାତ୍ମକ ସଂଗ୍ରାମ କରିବାକୁ ପଡ଼େ । ଫଳରେ ଯେଉଁମାନେ ଯୋଗ୍ୟତମ, ସେମାନେ ବଞ୍ଚି ରହନ୍ତି ଏବଂ ଅନ୍ୟମାନେ ଲୋପ ପାଇଯାଆନ୍ତି ।

ଅପ୍ରତିହତ ଜନସଂଖ୍ୟା ବୃଦ୍ଧି ଫଳରେ ବିଭିନ୍ନ ଯୁଦ୍ଧ, ବିପ୍ଳବ ଓ ସଂଘର୍ଷର ସୂତ୍ରପାତ ହୋଇ ବହୁ ଲୋକ ହତାହତ ହୁଅନ୍ତି । ଏହାକୁ ହୁଏତ ମଣିଷର ନିଜଦୋଷ ବୋଲି କହି ହେବ । କିନ୍ତୁ ଏହି ମନୁଷ୍ୟକୃତ ଦୁଷ୍କର୍ମ ବ୍ୟତୀତ ପ୍ରକୃତି ନିଜେ ଜନସଂଖ୍ୟା ହ୍ରାସ କରିବା ପାଇଁ ନିଷ୍ଠୁର ଓ ମାରାତ୍ମକ ପଦକ୍ଷେପ ନେବା ପାଇଁ ପଶ୍ଚାତ୍‌ପଦ ହୁଏ ନାହିଁ । ଯଥା : ମନ୍ୱନ୍ତର, କ୍ଷୁଧାଜନିତ ବିଭିନ୍ନ ଦୁରାରୋଗ୍ୟ, ଅନାହାର ମୃତ୍ୟୁ ।

ବର୍ତ୍ତମାନ ଯୁଗରେ ଏହି ପ୍ରକାର ଦୈବୀ-ଦୁର୍ବିପାକ ତଥା ଧ୍ୱଂସକାରୀ ପରିସ୍ଥିତିରୁ ରକ୍ଷା ପାଇବା ପାଇଁ ବୈଜ୍ଞାନିକ ପଦ୍ଧତିରେ ଜନ୍ମନିୟନ୍ତ୍ରଣକୁ ଏକ ସୁପରିକଳ୍ପିତ ବିକଳ୍ପ ପନ୍ଥା ଭାବେ ଗ୍ରହଣ କରାଯାଇଛି । କିନ୍ତୁ ମହାତ୍ମାଗାନ୍ଧୀଙ୍କ ପରି ଜନନାୟକମାନେ ନୈତିକତାର ଦୋହାଇ ଦେଇ ଏହି ପ୍ରକାର ଭ୍ରୂଣହତ୍ୟାର ଘୋର ବିରୋଧ କରୁଛନ୍ତି । ନିକଟ ଅତୀତରେ ଗାନ୍ଧୀଜୀଙ୍କ ମତକୁ ପ୍ରେମର ବାର୍ତ୍ତାବହ ମଦର ଟେରେସା ସମର୍ଥନ କରି

୨୧।୩।୮୭ ତାରିଖରେ ଗୋଟିଏ ସାମ୍ବାଦିକ ସମ୍ମିଳନୀରେ ପ୍ରକାଶ କରିଥିଲେ, "ଆଣବିକ ଯୁଦ୍ଧର ବିପଦ ସମ୍ପର୍କରେ ଆଜି ଜନସାଧାରଣ ସ୍ୱର ଉତ୍ତୋଳନ କରୁଛନ୍ତି; କାରଣ ସେମାନଙ୍କର କଥା କହିବାର ଶକ୍ତି ରହିଛି । କିନ୍ତୁ ଜନ୍ମନେଇ କରି ନ ଥିବା ଶିଶୁକୁ ଗର୍ଭପାତ କରାଇ ଯେତେ ତାର ମାଆ ହତ୍ୟା କରିବ, ତାହାହେଲେ ବିଶ୍ୱରେ ପରସ୍ପରକୁ ହତ୍ୟା କରିବା ଲାଗି ସଂଯମ ରକ୍ଷା ହେବନି ମାନବିକ ଦୟାବୋଧର ଲୋପ ପାଇଯିବ ।" ତେଣୁ ଆଣବିକ ନିରସ୍ତ୍ରୀକରଣ ସହ ଗର୍ଭପାତ ମଧ୍ୟ ପ୍ରକୃତରେ ଭୟଙ୍କର ବୋଲି ମତ ଦେଇ ସେ ଭ୍ରୂଣ ହତ୍ୟା ନ କରିବାକୁ ଉପଦେଶ ଦେଇଥିଲେ । ଏହି ପ୍ରସଙ୍ଗରେ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନର ୧୯୮୭ ସାଲର ସେହି ଅନୁଧ୍ୟାନ ସମ୍ପର୍କରେ ଉଲ୍ଲେଖ କରାଯାଇପାରେ, ଯେଉଁଥିରେ ବେଆଇନ ଗର୍ଭପାତରୁ ବାର୍ଷିକ ଦୁଇଲକ୍ଷ ମହିଳା ମୃତ୍ୟୁବରଣ କରୁଥିବା ଯୋଗୁଁ ଉଦ୍‌ବେଗ ପ୍ରକାଶ କରାଯାଇଛି ।

ଜନ୍ମନିୟନ୍ତ୍ରଣର କୁପ୍ରଭାବ ବୈଜ୍ଞାନିକ ସ୍ତରରେ ପ୍ରମାଣିତ ହେଉଥିବା ଯୋଗୁଁ ଆମେ ଖାଦ୍ୟ ସମସ୍ୟାର ସମାଧାନ ପାଇଁ ଅନ୍ୟ ପନ୍ଥା ପ୍ରତି ଅଧିକ ଗୁରୁତ୍ୱ ଦେବାକୁ ବା ପଡ଼ିବ । ଯଥା : ବୈଜ୍ଞାନିକ ପ୍ରଣାଳୀରେ ଖାଦ୍ୟ ସାମଗ୍ରୀର ଉତ୍ପାଦନ ବୃଦ୍ଧି । କିନ୍ତୁ ଏହା ଆମର ପରିବେଶ ଓ ସ୍ୱାସ୍ଥ୍ୟ ପ୍ରତି କେତେ ଦୂର ନିରାପଦ ?

ରାଜସ୍ଥାନର ଥର ମରୁଭୂମିକୁ ଶସ୍ୟଶ୍ୟାମଳା କରିବାକୁ ଯେତେ କୋଟି କୋଟି ଟଙ୍କା ବ୍ୟୟ କରି ସୁଦୂର ହିମାଳୟରୁ କେନାଲ ଦ୍ୱାରା ପାଣି ଯୋଗାଇଲେ । ଏହାଦ୍ୱାରା ଥର ମରୁଭୂମିରେ ଅବଶ୍ୟ ଖାଦ୍ୟଶସ୍ୟ ଉତ୍ପାଦିତ ହେଲା । କିନ୍ତୁ ନିକଟବର୍ତ୍ତୀ ମଧ୍ୟପ୍ରଦେଶରେ ବର୍ଷାପାତ କମି ସେଠାରେ ଜଙ୍ଗଲ ହ୍ରାସ ପାଇବାରେ ଲାଗିଲା । ଫଳରେ କିଛି ବର୍ଷ ପରେ ମଧ୍ୟପ୍ରଦେଶରେ ମରୁଭୂମି ସୃଷ୍ଟି ହେବା ବିଚିତ୍ର ନୁହେଁ । ଏଥିପ୍ରତି ଲକ୍ଷ୍ୟରଖି ଆବହାୱାଜ୍ଞମାନେ ସତର୍କ ବାଣୀ ଶୁଣେଇଲେଣି ଯେ, ଆମ ଅପରିଣାମ-ଦର୍ଶିତା ଯୋଗୁଁ ବର୍ତ୍ତମାନର ପାଣିପାଗ ଅବସ୍ଥା ପରିବର୍ତ୍ତିତ ହୋଇ ନୂତନ ମରୁଭୂମି ବ୍ୟାପିଯିବ । ଆବହାୱାଜ୍ଞ ଶ୍ରୀ ଡି. ଏନ୍. ଭରଦ୍ୱାଜ ମତ ଦେଇଛନ୍ତି ଯେ, ସୂର୍ଯ୍ୟକିରଣ ଦ୍ୱାରା ମରୁଭୂମିର ବାଲି ଅତ୍ୟଧିକ ଉତ୍ତପ୍ତ ହୋଇ ନିମ୍ନଚାପ ସୃଷ୍ଟି କରେ । ତେଣୁ ନିକଟବର୍ତ୍ତୀ ଅଞ୍ଚଳରୁ ବାୟୁ ଏହି ନିମ୍ନଚାପ ସ୍ଥାନକୁ ମାଡ଼ି ଆସେ ଏବଂ ରାସ୍ତାରେ ବୃଷ୍ଟିପାତ କରାଏ । ଫଳରେ ଆଜିକାଲି ଯେଉଁ ଥର ମରୁଭୂମି ଦେଶର ଅନ୍ୟାନ୍ୟ ଅଞ୍ଚଳରେ ବୃଷ୍ଟିପାତର କାରଣ ହୋଇଥିଲା, ଶସ୍ୟଶ୍ୟାମଳା ହୋଇଯିବା ଯୋଗୁଁ ତାହା ବର୍ତ୍ତମାନ ଅନ୍ୟ ଅଞ୍ଚଳରେ ମରୁଭୂମିର କାରଣ ହେବ ।

ବର୍ତ୍ତମାନ ଅନ୍ୟ ଏକ ବୈଜ୍ଞାନିକ ପ୍ରସଙ୍ଗ ଆଲୋଚନା କରାଯାଉ । କେନ୍ଦ୍ର କୃଷି ମନ୍ତ୍ରଣାଳୟ ଅଧୀନସ୍ଥ କୃଷି ଓ ସମବାୟ ବିଭାଗ ୧୯୮୬-୮୭ ସାଲର ବାର୍ଷିକ

ବିବରଣୀରେ ଉଲ୍ଲେଖ କରିଛନ୍ତି ଯେ, କୋଡ଼ିଏ ବର୍ଷ ପୂର୍ବେ ମାତ୍ର ଏକ ଦଶମିକ ଏକ ନିୟୁତ ଟନ୍ ସାର ବ୍ୟବହୃତ ହେଉଥିବା ସ୍ଥଳେ, ତାହା ବର୍ତ୍ତମାନ ନଅ ଗୁଣରୁ ବୃଦ୍ଧି ପାଇଛି । ପୁଣି ଖାଦ୍ୟ ଶସ୍ୟରେ କୀଟନାଶକ ଔଷଧ ପ୍ରୟୋଗ କରି ଆମେ ଉତ୍ପାଦନ ବୃଦ୍ଧି କରୁଛେଁ । କିନ୍ତୁ ଏହାଦ୍ୱାରା ଆମ ଖାଦ୍ୟ କେତେକାଂଶରେ ବିଷାକ୍ତ ହୋଇଯାଇଛି । ଆମ ଦେଶର ଜାତୀୟ ଗବେଷଣା ସଂସ୍ଥା ପକ୍ଷରୁ ଏକ ନମୁନା ସର୍ବେକ୍ଷଣ କରି ଜଣାପଡ଼ିଲା ଯେ, ଗହମ ଫସଲରେ ଆଲଡ୍ରିନ, ମାଲଥିଅନ ଔଷଧର ମାତ୍ରାଧିକ ପ୍ରୟୋଗ ଯୋଗୁଁ ଗହମ ଦାନାଗୁଡ଼ିକ ବିଷାକ୍ତ ହୋଇପଡ଼ୁଛି । ପୁଣି ଜଣାଗଲା ଯେ, ପରୀକ୍ଷା କରାଯାଇଥିବା ଏକଷଠିଟି ଅଣ୍ଡା ମଧ୍ୟରୁ ପଚିଶଟିରେ ବିଷାକ୍ତ ଦ୍ରବ୍ୟ ମିଶିଛି ଏବଂ ୭୮ ପ୍ରକାର ପନିପରିବା ମଧ୍ୟରୁ ୩୬ ପ୍ରକାର ପରିବା ପ୍ରଦୂଷିତ ହୋଇସାରିଛି । ଏହି ପରିପ୍ରେକ୍ଷୀରେ ଉଲ୍ଲେଖ କରାଯାଇପାରେ ଯେ, ଯେଉଁ ଡିଡିଟିର ଉପାଦେୟତା ଉଦ୍ଭାବନ ପାଇଁ ଜଣେ ନୋବେଲ ପୁରସ୍କାର ଦିଆଯାଇଥିଲା, ସେହି ଡିଡିଟିର ବ୍ୟବହାରକୁ ବର୍ତ୍ତମାନ ବହୁ ପର ଧନସମୃଦ୍ଧ ଦେଶରେ ନିଷିଦ୍ଧ କରାଯାଇଛି । ତେଣୁ ପ୍ରତ୍ୟେକ ବୈଜ୍ଞାନିକ ପ୍ରୟୋଗ ନେଇ ଆପାତତଃ ଓ ଦୀର୍ଘ ଉତ୍ତରେ ବିଚାରପଦ, ଏହା ସ୍ୱତନ୍ତ୍ରତା ଉଚିତ ବୁଝେ ।

ଖାଦ୍ୟ ସମସ୍ୟାର ସମାଧାନ ପାଇଁ ଜନ୍ମନିୟନ୍ତ୍ରଣ ହେଉ କିମ୍ବା ରସାୟନିକ ସାର ଓ ବିଷାକ୍ତ କୀଟନାଶକ ଔଷଧର ବ୍ୟବହାର ହେଉ—ଆମେ କୌଣସି ସନ୍ତୋଷଜନକ ଉପାୟ ଆଜିଯାଏଁ ଖୋଜି ପାଇନାହୁଁ । ଏହି କୌଶଳମାନଙ୍କ ପଛରେ କିଛି ନା କିଛି ଦୋଷ ତ୍ରୁଟି ଓ ଅପୂର୍ଣ୍ଣତା ରହୁଛି । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ, ଅଦ୍ୟାବଧି ଅନୁସୃତ ଏହି କୌଶଳମାନ ପରିତ୍ୟାଗ କରିବାକୁ ପଡ଼ିବ । ତେବେ ଏକ ନୂତନ ପନ୍ଥା ଭାବେ ମାନସିକ ସ୍ତରରେ ଖାଦ୍ୟ ସମସ୍ୟାର ସମାଧାନ ପାଇଁ ଚେଷ୍ଟା କରାଯିବା ଉଚିତ ହେବ । ପ୍ରକୃତରେ ଖାଦ୍ୟ ଓ ଅଖାଦ୍ୟ ମଧ୍ୟରେ ପାର୍ଥକ୍ୟ କ'ଣ ? ମଣିଷ ବଞ୍ଚିବା ପାଇଁ କେତେ ଖାଦ୍ୟ ଆବଶ୍ୟକ ? ଏପରି ମୌଳିକ ପ୍ରଶ୍ନମାନଙ୍କର ଉତ୍ତର ଖୋଜିଲେ, ଆମେ କିଛି ନୂତନ ଦୃଷ୍ଟିଭଙ୍ଗୀର ଆଭାସ ପାଇ ।

ପ୍ରଥମେ ମରୁଡ଼ି ପରି ଏକ ଅସ୍ୱାଭାବିକ ପରିସ୍ଥିତିରେ ଖାଦ୍ୟର ସ୍ୱରୂପ ସମ୍ପର୍କରେ ବିଚାର କରାଯାଉ । ଏମିତ ଦୈବୀ-ଦୁର୍ବିପାକ ଘଟିଥିବା ବେଳେ ବିଭିନ୍ନ ଅସ୍ୱାଭାବିକ ଖବରମାନ ଶୁଣିବାକୁ ମିଳେ । ଜଣାପଡ଼ିଛି ଯେ, ଆମ ଦେଶର କେତେକ ଅନୁନ୍ନତ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଲୋକେ ଖାଇବାକୁ ନ ପାଇ ମଇଁଷି ମାଂସକୁ ହଳଦୀରେ ଗୋଳାଇ ଓ ଶୁଖାଇ ସାଇତି ରଖୁଛନ୍ତି । ଆବଶ୍ୟକ ବେଳେ ସେମାନେ ତାହା ସିଝାଇ ଖାଇବେ ଏବଂ କ୍ଷୁଧା ମେଣ୍ଟାଇବେ । ଏହାଦ୍ୱାରା ସେମାନେ

ମେଡ଼ାଇଟିସ୍ ରୋଗ ଦ୍ୱାରା ଆକ୍ରାନ୍ତ ହୋଇ ଅକାଳରେ ମୃତ୍ୟୁବରଣ କରିପାରନ୍ତି ବୋଲି ଚିକିତ୍ସା-ବିଶେଷଜ୍ଞମାନେ ଚିନ୍ତିତ । ଉପାଗି ମନସ୍ଥିତି ଅନୁଯାୟୀ ଖାଦ୍ୟ ଓ ଅଖାଦ୍ୟ ମଧ୍ୟରେ ତଫାତ୍ କିପରି ବଦଳିଯାଇପାରେ—ଏହା ତାର ଏକ ନମୂନା ।

ଅନ୍ୟ ଏକ ଦୃଷ୍ଟାନ୍ତର ସମ୍ବାଦ ଗୁଜରାଟର ସୌରାଷ୍ଟ୍ର ଅଞ୍ଚଳରୁ ମିଳିଥିଲା । ସେତେବେଳେ ସେଠାରେ ଖାଦ୍ୟାଭାବ ଏତେ ଉତ୍କଟ ହୋଇଥିଲା ଯେ, ଘାସ ଓ ଗହମର ମୂଲ୍ୟ ପ୍ରାୟ ସମାନ ହୋଇଯାଇଥିଲା । ଘାସ ଭଳି ଏକ ଅଖାଦ୍ୟର ଦାମ୍, ଗହମ ଭଳି ଏକ ଖାଦ୍ୟସାମଗ୍ରୀ ସହିତ ସମାନ ହୋଇଗଲା ଯୋଗୁଁ ଅନେକ କୌତୂହଳଜନକ ଜଣାପଡ଼େ । କିନ୍ତୁ ଏକ ଅସ୍ୱାଭାବିକ ପରିସ୍ଥିତିରେ ଏହି ଅବିଶ୍ୱାସ୍ୟ ବିପତ୍ତି ସଙ୍କଟ ଅଜାଣତରେ ଘଟିଥିଲା । କାରଣ ହେଉଛି ଯେ, ମଣିଷ ବଞ୍ଚିବା ପାଇଁ ଗହମ ଯେମିତି ଆବଶ୍ୟକ, ଗାଈଗୋରୁ ଓ ଅନ୍ୟାନ୍ୟ ଗୃହପାଳିତ ପଶୁ ପାଇଁ ଘାସ ମଧ୍ୟ ସେମିତି ଆବଶ୍ୟକ । ତେଣୁ ଅନାବୃଷ୍ଟି ହେଲେ ଖାଦ୍ୟ ଓ ଅଖାଦ୍ୟ—ଉଭୟେ ଏକାକାର ହୋଇଯାନ୍ତି ।

ଅବଶ୍ୟ ପୂର୍ବ କାଳିକ, ପ୍ରାଚୀନରେ ମଧ୍ୟ ମଣିଷ ବହୁ ଅଜବ ଖାଦ୍ୟ ଗ୍ରହଣ କରିଥାଏ । ଅଷ୍ଟମ ହେନେରୀ ୧୫୦୯ରୁ ୧୫୪୭ ଯାଏଁ ଇଂଲଣ୍ଡରେ ରାଜା ଥିଲେ । ସେ ଅସମ୍ଭବ ଭାବେ ସ୍ଥୂଳକାୟ ଥିଲେ । ଅତ୍ୟନ୍ତ ବଳଶାଳୀ ମଧ୍ୟ । ଏପରିକି ଘୋଡ଼ାମାନେ ପୁଣି ତାଙ୍କ ସହିତ ଦୌଡ଼ିବା ବେଳେ କ୍ଲାନ୍ତ ହୋଇପଡ଼ୁଥିଲେ । କେବଳ କ୍ରୀଡ଼ାଙ୍ଗନରେ ନୁହେଁ; ନୃତ୍ୟଶାଳାରେ ମଧ୍ୟ ପାରିଷଦବର୍ଗ ତାଙ୍କ ସହିତ ନାଚ କରୁଥିବା ବେଳେ ଅଳ୍ପ ବେହୋସ ହୋଇଯାଉଥିଲେ । ତାଙ୍କର ଏହି ପ୍ରବଳ ପରାକ୍ରମ ଓ ଅତ୍ୟଧିକ ଶାରୀରିକ କ୍ଷମତାର କାରଣ ଭାବେ ସେ ଦୈନନ୍ଦିନ ଖାଉଥିବା ଖାଦ୍ୟ-ତାଲିକା ପ୍ରତି ଦୃଷ୍ଟି ଦିଆଯାଇପାରେ ।

ରାଜା ଅଷ୍ଟମ ହେନେରୀ ସକାଳ ଭୋଜନରେ ବହୁ ପ୍ରକାର ସାଲାଡ଼ ଖାଇବା ପରେ ଶୁକର, ପାତିହଂସ, ଘରଚଟିଆର ଶାବକ, ଲେମ୍ବୁରସଦିଆ କୁକୁଡ଼ା ଛୁଆ, ଘୃତ ଭର୍ଜିମିଶ୍ରିତ ପକ୍ଷୀ ମାଂସ, ଲମ୍ବା ପକ୍ଷ ଥିବା ସାମୁଦ୍ରିକ ଗଲ୍ ପକ୍ଷୀ, ଠେକୁଆ ଓ ହରିଣର ମାଂସ ଅଣ୍ଡା ସହଯୋଗରେ ଖାଉଥିଲେ । ତାପରେ ନାସ୍ପାତି ଖାଇ ମଦ ପିଉଥିଲେ ।

ଦ୍ୱିତୀୟ ଅଧିବେଶନରେ ସେ ଯେଉଁ ଗରମ ଖାଦ୍ୟ ଗ୍ରହଣ କରୁଥିଲେ, ସେଥିରେ ଅନ୍ତର୍ଭୁକ୍ତ ଥିଲା ସାଧାରଣ ବଗ ଏବଂ ବଡ଼ ନଳକାନ୍ତିଆ ପକ୍ଷୀ, ଚେଲ୍‌କାଟ୍ ଶ୍ରେଣୀୟ ରାଜହଂସ, ଗୁଣ୍ଡୁରି, ଓ ସଜ ଉଡର ପକ୍ଷୀ, ନାଲିଆ ହରିଣର ମାଂସ ଓ

ଭଜା ହୋଇଥିବା କୁକୁଡ଼ା ମାଂସ ଖଣ୍ଡ । ଏହି ଭୋଜନ ଶେଷ ହେବା ପରେ କିଛି ମିଠେଇ ଓ ସୁବାସିତ ମଦ ମଧ୍ୟ ସେ ଉଦରସ୍ଥ କରୁଥିଲେ । ଏହି ଖାଦ୍ୟ ଖାଇବା ଫଳରେ ସେ ରାକ୍ଷସ ପରି ବୃହତ୍‌କାୟା ଧାରଣ କରିବା ଉଚିତ ନୁହେଁ । କିନ୍ତୁ ତାଙ୍କ ସ୍ୱାସ୍ଥ୍ୟ ଅନ୍ତିମାବସ୍ଥାରେ ଅତି ଶୋଚନୀୟ ଓ ଦୟନୀୟ ହୋଇପଡ଼ିଥିଲା । ସେ ଅକାଳରେ ଗଣ୍ଠିବାତ ଓ ବୃକ୍କ ରୋଗରେ ପୀଡ଼ିତ ହେଲେ । ତାଙ୍କ ରକ୍ତ ସଞ୍ଚାଳନରେ ଗୁରୁତର ବିଭ୍ରାଟ ଦେଖାଦେଲା । ତାଙ୍କ ପାଦରେ ଏମିତି ଅସହ୍ୟ ଯନ୍ତ୍ରଣାଦାୟକ ଘା' ସୃଷ୍ଟି ହେଲା ଯେ, ସେ ସାଧାରଣ ଭାବେ ଚଳପ୍ରଚଳ କରିବା ପାଇଁ ମଧ୍ୟ ଅସମର୍ଥ ହେଲେ । କେବଳ ଦୈହିକ ସ୍ତରରେ ନୁହେଁ; ମାନସିକ ସ୍ତରରେ ମଧ୍ୟ ସେ ଅତି ସାଙ୍ଘାତିକ ପରିସ୍ଥିତିର ସମ୍ମୁଖୀନ ହେଲେ । ସେ ଯେଉଁ ଛଅଟି ସ୍ତ୍ରୀଙ୍କୁ ବିବାହ କରିଥିଲେ, ସେମାନଙ୍କ ସହିତ ସୁସ୍ଥ ସମ୍ପର୍କ ରଖିପାରି ନଥିଲେ । ଏପରିକି ସେ ସ୍ତ୍ରୀମାନଙ୍କ ମଧ୍ୟରୁ ଦୁଇଜଣଙ୍କର ଶିରଚ୍ଛେଦ କରିଥିଲେ ।

ଏହି ବିଶାଳକାୟ ବ୍ୟକ୍ତିଙ୍କ ଦୁର୍ଦ୍ଦଶା ସମ୍ରାଟଙ୍କର ଜୀବନ ଏମିତି ଦୟନୀୟ ଅବସ୍ଥାରେ ପର୍ଯ୍ୟବସିତ ହୋଇଥିଲା । କେତେକ ବିଜ୍ଞ ବ୍ୟକ୍ତିଙ୍କର ମତ ହେଉଛି ଯେ, ତାଙ୍କର ଏହି ଅନ୍ତିମ ଦୁରବସ୍ଥାର ମୂଳ କାରଣ ହେଉଛି ଅତ୍ୟଧିକ ରାଜସିକ ଭୋଜନ-ଖାଦ୍ୟ ।

ରାଜାମାନଙ୍କ ଖଜା ଅପୂର୍ବ ଲାଗିବ ବୋଲି ଭାବି ଆମ ମଧ୍ୟରୁ ଅନେକ ରାଜା ହେବାକୁ ଇଚ୍ଛା କରୁଥିବେ । କିନ୍ତୁ ଆମ ଅନ୍ତିମ ପରିଣତି ଅଷ୍ଟମ ହେନେରୀଙ୍କ ପରି ଦୁର୍ବିସହ ନ ହେବ ବୋଲି କିଏ କହିବ ! ବାସ୍ତବିକ ଅଷ୍ଟମ ହେନେରୀ ଖାଦ୍ୟ ନାମରେ ଅଖାଦ୍ୟ ଖାଉଥିଲେ ବୋଲି ଆମ ମନରେ ଧାରଣା ସୃଷ୍ଟି ହୁଏ । ଏହି ଘଟଣାର ବହୁ ବର୍ଷ ବିତିଗଲାଣି ଏବଂ ବର୍ତ୍ତମାନ ଆମେ ଅଧିକ ସଭ୍ୟ ଓ ଶିକ୍ଷିତ ବୋଲି ନିଜକୁ ମନେ କରୁଛୁ । ତଥାପି ଆମେ ଏହି ପ୍ରକାର ଅଖାଦ୍ୟ କିମ୍ବା ବିଷ ଆଦରର ସହିତ ଖାଇ ମୃତ୍ୟୁକୁ ନିମନ୍ତ୍ରଣ କରୁଥିବା ଯୋଗୁଁ ଉଦ୍‌ବେଗଜନକ ପରିସ୍ଥିତି ସୃଷ୍ଟି ହେଉଛି । ତାର ଉଦାହରଣ ହେଉଛି ଫୋଗିସ୍ ନାମକ ଗୋଟିଏ ମାଛ ପ୍ରତି ଆମର ଆଗ୍ରହ ।

ଜାପାନରେ ଫୋଗିସ୍ ମିଳେ, ଯାହା ଦେଖିବାକୁ ଅତି ଅସୁନ୍ଦର । କିନ୍ତୁ ତାର ଗାଲିସି ଓ କଳିଜରେ ପ୍ରସ୍ତୁତ ତରକାରୀ ଖୁବ୍ ସୁସ୍ୱାଦୁ । ଜାପାନ ରେଷ୍ଟୁରାଣ୍ଟରେ ତାହା ଅତି ଦୁର୍ମୂଲ୍ୟ । ପ୍ଲେଟ ପିଛା ପ୍ରାୟ ଦୁଇହଜାର ଟଙ୍କା । ଏହି ମାଂସର ମୁଖ୍ୟ ଆକର୍ଷଣ ହେଲା ଯେ, ଏହା ଯିଏ ଖାଏ, ତାକୁ ଏକ ପ୍ରକାର ନିଶା ଧରେ ଏବଂ ସେ ଏକ ଅଲଗା ଆନନ୍ଦରେ ଉଲ୍ଲସିତ ହୁଏ । ଏହି ମାଛଟି ଜାପାନ ସମେତ ବିଶ୍ୱର ବହୁ

ସ୍ତରରେ ଏତେ ଲୋକପ୍ରିୟ ହୋଇପାରିଛି ଯେ, ଏହାର ବଂଶ ଲୋପ ପାଇଯିବା ସମ୍ଭାବନା ଦେଖାଦେଲାଣି । ବର୍ତ୍ତମାନ ଜାପାନରେ ୨୦ ହଜାର ଟନ୍ ପରିମାଣର ହ୍ୱେଲିମ ମଜୁଦ ଥାଇ ଗତ ନଭେମ୍ବର ମାସରୁ ୫୦ ହଜାର ଡଲାରରେ ବିକ୍ରୀ କରାଯାଏ । କିନ୍ତୁ ଏହି ତଥାକଥିତ ସୁସ୍ୱାଦୁ ଖାଦ୍ୟ ଯେ ବିପଦର ଭଣ୍ଡାର, ଏହା ଲୋକେ ଜାଣିପାରୁ ନାହାନ୍ତି । ମାଛର କେତେକ ମାଂସଳ ଅଂଶକୁ ବାଦ୍ ଦେଲେ ଅବଶିଷ୍ଟ ଅଂଶରେ ସାଧାରଣତଃ ଠାରୁ ମଧ୍ୟ ଅଧିକ ମାତ୍ରାରେ ବିଷ ଭରି ରହିଛି । ତଥାପି ଜିହ୍ୱା-ଲାଳସାକୁ ଦମନ କରି ନ ପାରି କେତେକ ଜାପାନୀ ମୃତ୍ୟୁମୁଖରେ ପଡ଼ିଥିବା ସମ୍ବାଦ ପ୍ରକାଶିତ ହୋଇଛି । ଯୁକ୍ତରାଷ୍ଟ୍ର ଆମେରିକାରେ ବର୍ତ୍ତମାନ ହ୍ୱେଲିମର ଆମଦାନି ଉପରେ କଡ଼ା କଟକଣା ଜାରି କରାଯାଇଛି ।

ହ୍ୱେଲିମ ପରି ଏତ ଯୌଗିକ ଖାଦ୍ୟରେ ବିଷ ରହିଲେ ହୁଏତ ସାଧାରଣ ଲୋକେ ଚିନ୍ତିତ ହେବେ ନାହିଁ । କିନ୍ତୁ ଭେଣ୍ଡି, କୋବି ଇତ୍ୟାଦି ସର୍ବସାଧାରଣଙ୍କ ଖାଦ୍ୟରେ ଯଦି ସ୍ୱାସ୍ଥ୍ୟ ହାନିକାରକ ଉପାଦାନ ଥାଏ, ତାହାହେଲେ ପରିସ୍ଥିତି ଗୁରୁତର ହେବ ନିଶ୍ଚୟ । ଆମ ଦେଶର ପ୍ରତିରକ୍ଷା ଗବେଷଣା ଓ ଉନ୍ନୟନ ସଂସ୍ଥା ଅନ୍ତର୍ଗତ ଆଣବିକ ଔଷଧ ଓ ତତ୍ସମ୍ପୃକ୍ତ ବୈଜ୍ଞାନିକ ଅନୁଷ୍ଠାନ (ଇନ୍‌ମାସ୍, ଦିଲ୍ଲୀ) ତରଫରୁ ପ୍ରକାଶିତ ଏକ ରିପୋର୍ଟ ସମ୍ପର୍କରେ ଏଠାରେ ଉଲ୍ଲେଖ କରାଯାଇପାରେ । ଏହି ରିପୋର୍ଟ ସୂଚାଏ ଯେ, ଭେଣ୍ଡି, ଫୁଲକୋବି, ବନ୍ଧାକୋବି, ମୂଳା ଓ ଶାଳଗମ୍ ଖାଇବା ଦ୍ୱାରା ଆମ ଶରୀରରେ ଆୟୋଡ଼ିନ୍‌ର ଅଭାବ ଘଟେ ଏବଂ ଆମେ ଗଳଗଣ୍ଡ ରୋଗରେ ଆକ୍ରାନ୍ତ ହେଉ । ଏହି ସଂସ୍ଥା ଦିଲ୍ଲୀର ଛଅଶି ହଜାର ସ୍କୁଲ ଛାତ୍ର ଛାତ୍ରୀଙ୍କ ଉପରେ ଗବେଷଣା ଚଳାଇ ଜାଣି ପାରିଛନ୍ତି ଯେ, ଉକ୍ତ ପରିବାମାନ ଖାଇ ସେମାନେ ଆୟୋଡ଼ିନ ଅଭାବର ଶିକାର ହୋଇଛନ୍ତି, ଯାହାଦ୍ୱାରା ସେମାନଙ୍କ ତଣ୍ଟି ଫୁଲି ଯାଉଛି । ସେମାନଙ୍କ ମଧ୍ୟରୁ ଦୁଇ ଶତାଂଶ ପିଲାଙ୍କର ମାନସିକ ଅଧୋଗତି ଘଟିଛି । ସାଧାରଣତଃ ଦୂରଦୂରାନ୍ତ ପାର୍ବତ୍ୟ ଅଞ୍ଚଳମାନଙ୍କର ମାଟି ଓ ପାଣିରେ ଆୟୋଡିନ୍‌ର ଅଭାବ ଥିବା ଯୋଗୁଁ ଏହି ରୋଗ ସେଠାରେ ପାରମ୍ପରିକ ଭାବେ ପରିଦୃଷ୍ଟ ହେଉଥିଲା । ମାତ୍ର ବର୍ତ୍ତମାନ ଖୋଦ ଦିଲ୍ଲୀ ନଗରୀରେ ତାର ପ୍ରାଦୁର୍ଭାବ ହେବା ନିଶ୍ଚିତ ଭାବେ ଉଦ୍‌ବେଗର କାରଣ । ବିଶେଷତଃ ଭେଣ୍ଡି, କୋବି, ମୂଳା ପରି ଆମର ପ୍ରିୟ, ନିରୀହ ଓ ବହୁଳ ବ୍ୟବହୃତ ରୋଗ ପାଇଁ ଦାୟୀ—ଏହା ଆହୁରି ଅଧିକ ଅଶାନ୍ତିର କାରଣ ।

ଏହି ପରିପ୍ରେକ୍ଷୀରେ ଆମେ ଖାଦ୍ୟ ଓ ଅଖାଦ୍ୟ ମଧ୍ୟରେ କୌଣସି ନିର୍ଦ୍ଦିଷ୍ଟ ସୀମାରେଖା ଟାଣି ପାରିବା କି ? ଆମେ ଯାହାକୁ ଆଜି ଖାଦ୍ୟ ବୋଲି ଅତି ଶ୍ରଦ୍ଧା ଓ ଆଦର କରୁଛୁଁ, ଆସନ୍ତା କାଲି ତାହା ଅଖାଦ୍ୟ ନ ହେବ ବୋଲି କିଏ କହିବ ? ଠିକ୍ ସେମିତି ଅଖାଦ୍ୟ ମଧ୍ୟ ଖାଦ୍ୟର ଭୂମିକା ଗ୍ରହଣ କରିପାରେ ।

ଖାଦ୍ୟ ଓ ଅଖାଦ୍ୟ ସମ୍ପର୍କରେ ଆମ ମନରେ ରହିଥିବା ଭ୍ରମମୂଳ ଧାରଣା ପରିତ୍ୟାଗ କରିବା ବେଳ ବର୍ତ୍ତମାନ ବୋଧହୁଏ ଆସିଗଲାଣି । ଗତ ଅପ୍ରେଲରେ ଦିଲ୍ଲୀଠାରେ କେନ୍ଦ୍ର ଖାଦ୍ୟ ମନ୍ତ୍ରଣାଳୟ ତଥା ଅନ୍ୟ କେତେକ ସଂସ୍ଥାର ସହଯୋଗରେ ଜାତୀୟ ଉତ୍ପାଦନ ପରିଷଦ ତରଫରୁ ଏକ ସେମିନାର ତତ୍କାଳୀନ ସଂସଦୀୟ ମନ୍ତ୍ରୀ ଶ୍ରୀ ଗୁଲାମ ନବୀ ଆଜାଦ ଉଦ୍‌ଘାଟନ କରିଥିଲେ । ବୁଣ୍ଡି ତେଲ ଯଦି ପରିଶୋଧିତ ହୋଇ ଆମର ଖାଦ୍ୟୋପଯୋଗୀ ହୋଇପାରିବ, ତାହା ଉପରେ ସେ ଜୋର୍ ଦେଇଥିଲେ ଏବଂ ଏଥିପ୍ରକାରେ ବିଦେଶରୁ ଆବଶ୍ୟକୀୟ ତୈଳପାଠ ଯୋଗାଇ ଦେବା ପାଇଁ ସରକାରଙ୍କ ସ୍ୱୀକୃତ ଥିବା ବିଷୟ ମଧ୍ୟ ସୂଚାଇଥିଲେ । ତେଣୁ ବୁଣ୍ଡା ସେ କେବଳ ଗାଈଗୋରୁ ପାଇଁ ନୁହେଁ, ମଣିଷ ପାଇଁ ମଧ୍ୟ ଖାଦ୍ୟ ହୋଇପାରେ—ଏହି କଳ୍ପନା ବର୍ତ୍ତମାନ ବାସ୍ତବ ରୂପ ନେଲାଣି ।

ଯଦି ଆମେ ଦ୍ୱିତୀୟ ପ୍ରସ୍ତରଯୁଗ ପ୍ରତି ଦୃଷ୍ଟି ଦେବା, ତାହାହେଲେ ଜାଣି ପାରିବା ଯେ, ସେତେବେଳେ ମାମଥ୍ ବା ଅତିକାୟ ଜୀବଜନ୍ତୁ ଓ ହାତୀମାନେ ପଥର ଖାଉଥିଲେ । ଏହାଦ୍ୱାରା ସେମାନଙ୍କ ଶରୀରରେ ଧାତୁର ଭାରସାମ୍ୟ ରହୁଥିଲା । ସେତେବେଳେ ହଠାତ୍ ପ୍ରାକୃତିକ ପରିବର୍ତ୍ତନ ଘଟି ଉତ୍ତରାଞ୍ଚଳରେ ବହୁତ ବରଫ ଜମାଟ ବାନ୍ଧିବା ଯୋଗୁଁ ମାମଥ୍‌ର ଆହାରଯୋଗ୍ୟ ପଥରମାନ ବରଫରେ ପୋତି ହୋଇଗଲା । ତେଣୁ ମାମଥ୍‌ମାନେ ଖାଦ୍ୟାଭାବରୁ ପ୍ରାଣ ହରାଇଲେ ।

କେବଳ ମାମଥ୍ କାହିଁକି, ବର୍ତ୍ତମାନ ଯୁଗରେ ମଧ୍ୟ ଏମିତି ଜଣେ ଜଣେ ମଣିଷ ଦେଖାଯାନ୍ତି, ଯେଉଁମାନେ ଏପରି ଅଖାଦ୍ୟ ଖାଇବାରେ ଅଭ୍ୟସ୍ତ । ଫ୍ରାନ୍ସର ଗ୍ରେନୋବଲ୍‌ଠାରେ ୧୯୫୦ରେ ଜନ୍ମଗ୍ରହଣ କରିଥିବା ମନ୍‌ସିର ମଲୋଟ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ । ଚକିତ ବୈଜ୍ଞାନିକମାନେ ତାଙ୍କର ଉଦରର ଏକ୍ସ-ରେ ଫଟୋରୁ ଜାଣିପାରିଛନ୍ତି ଯେ, ସେ ଦଶଟି ବାଇସାଇକେଲ, ୭ଟି ଟିଭି ସେଟ, ୭ଟି ଧୂପଦାନ, ଗୋଟିଏ ସୁପର ମାର୍କେଟ ଶଗଡ଼ (ସାଢ଼େ ଚାରିଦିନରେ) ଖାଇଛନ୍ତି । ଏତଦ୍‌ବ୍ୟତୀତ ଗୋଟିଏ ସେସ୍‌ନା ହାଲୁକା ବ୍ୟୋମଯାନ ମଧ୍ୟ ସେ ଭେନେଜୁଏଲାର କାରକାସଠାରେ ଭକ୍ଷଣ କରିଥିଲେ । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ହେଉଛି ଯେ, ମଣିଷକୁ ଶବାଧାର ଭିତରେ ମରିବା ପରେ ରଖାଯାଏ । କିନ୍ତୁ ମନ୍‌ସିର ମଲୋଟଙ୍କ ପେଟରେ ଶବାଧାର ମଧ୍ୟ ଖାଦ୍ୟ ଭାବେ ରହିଥିଲା—ସେ ଶବାଧାରର ସମସ୍ତ ଅଂଶ ଉଦରସ୍ଥ କରି ପାରିଥିଲେ । ଏହି ତଥ୍ୟାବଳୀର ସତ୍ୟତା ସମ୍ପର୍କରେ "ଗିନିସ ବୁକ୍ ଅଫ୍ ୱାର୍ଲଡ ରେକର୍ଡସ"ରେ ଲିପିବଦ୍ଧ କରାଯାଇଛି । ଠିକ୍ ସେମିତି ୧୯୮୨

ମସିହାରେ ବୟାଳିଶ ବର୍ଷ ବୟସ୍କା କାନାଡ଼ାର ଜଣେ ମହିଳାଙ୍କ ପେଟରେ ଅସ୍ତ୍ରୋପଚାର କରି ୧୪୬ଟି ଅଲପିନ୍, କେତେକ କାଚଖଣ୍ଡ ସମେତ ୨୫୦ଟି ଜିନିଷ ବାହାର କରାଯାଇଥିଲା । ଜଣାଯାଏ ଯେ, ଏହି ମହିଳା ଜଣକ ଏତେଦୂର ଭୋଜନ-ପ୍ରିୟ ଥିଲେ ଯେ, ସେ ହାତପାହାନ୍ତରେ ଯାହା ପାଉଥିଲେ, ତାହା ଗିଳି ଦେଉଥିଲେ ।

ବେଳେବେଳେ କୁଣ୍ଡା, ପଥର, ଟି. ଭି., କାଚ ଇତ୍ୟାଦି ନିର୍ଜୀବ ପଦାର୍ଥ ବ୍ୟତୀତ, କୌଣସି କୌଣସି ଜୀବଜନ୍ତୁ ମଧ୍ୟ ମଣିଷର ସୁଖାଦ୍ୟ ହୋଇଥାନ୍ତି । ଅବଶ୍ୟ ଏହା ଦେଶ-କାଳ-ପାତ୍ର ଅନୁସାରେ ଭିନ୍ନ ଭିନ୍ନ ହୋଇଥାଏ । ଏହାର ଗୋଟିଏ ସୁଫଳ ହେଉଛି ଯେ, ଆନ୍ତର୍ଜାତିକ ସ୍ତରରେ ଖାଦ୍ୟସାମଗ୍ରୀର ସୁଷମ ବଣ୍ଟନ ଦିଗରେ ଏହା ସହାୟକ ହୋଇପାରିବ । ଆମ ଦେଶରେ ଯାହା ଖାଦ୍ୟ ଭାବେ ଗୃହୀତ ନୁହେଁ, ଅନ୍ୟ ଦେଶର ଭୋଜନାଳୟରେ ତାର ଚାହିଦା ଯଥେଷ୍ଟ ଅଛି ବୋଲି କେତେକ ସମ୍ବାଦରୁ ଜଣାଯାଏ । ହଂକଂର ପ୍ରତ୍ୟେକ ହୋଟେଲ ଗୋଟିଏ ଗୋଟିଏ ଚିଡ଼ିଆଖାନା ପରି ଦେଖାଯାନ୍ତି; କାରଣ ସେଠାରେ ପ୍ରତ୍ୟେକ ହୋଟେଲର କେତୋଟି କୋଠରିରେ ବହୁ ପ୍ରକାର ସାପ, ପେଚା, ନେଉଳ, ହରିଣ, ବିରାଡ଼ି, ଓଟ, ହାତୀପରି ଜନ୍ତୁମାନ ରଖାଯାଇଥାଏ । ଜୀବଜନ୍ତୁ ସଂରକ୍ଷଣ ଏହି ଯୋଜନାର ଲକ୍ଷ୍ୟ ନୁହେଁ, ବରଂ ଠିକ୍ ତାର ଓଲଟା ! ଏଇ ଜୀବଜନ୍ତୁମାନଙ୍କୁ ଆବଶ୍ୟକତା ଅନୁସାରେ ମାରି ସେଠାକାର ଲୋକମାନେ ଆଗ୍ରହର ସହିତ ଖାଉଥାନ୍ତି—ପୁଣି, ବୁଝନ୍ତି ସୁଖାଦ୍ୟ ଭାବେ । ହଂକଂର ଭୋଜନାଳୟମାନଙ୍କରେ ସାପଝୋଳ, ଭାଲୁପାଦ ସହିତ ଓଟ କୁହ୍ନା ଓ ହାତୀଶୁଣ୍ଢର ତରକାରି, ବିରାଡ଼ି ମାଂସ ଓ ରଙ୍ଗବେରଙ୍ଗ ପୋକ-ଭଜା ଏବଂ ପେଚା ତଥା ହରିଣ ମାଂସର ତରକାରି ଖୁବ୍ ଲୋକପ୍ରିୟ । ଜଣାଯାଏ ଯେ, ଚୀନ, ବାଂଲାଦେଶ, ଥାଇଲାଣ୍ଡ, ଭିଏତନାମ ପ୍ରଭୃତି ଅଞ୍ଚଳମାନଙ୍କରୁ ପ୍ରାୟ ପାଞ୍ଚଲକ୍ଷରୁ ଅଧିକ ସାପ ପ୍ରତିବର୍ଷ ଭୋଜନ ଉଦ୍ଦେଶ୍ୟରେ ହଂକଂକୁ ରପ୍ତାନି କରାଯାଏ ।

ପୁରାଣକାରମାନେ ଦେବ, ମାନବ ଓ ଦାନବ ନାମକ ଯେଉଁ ତିନିପ୍ରକାର ଜାତି ବର୍ଣ୍ଣନା କରିଛନ୍ତି, ବୋଧହୁଏ ସେମାନେ ପରସ୍ପରଠାରୁ ମୌଳିକ ଭାବେ ଭିନ୍ନ ନୁହନ୍ତି । ପ୍ରକୃତରେ ମନୁଷ୍ୟମାନଙ୍କ ମଧ୍ୟରେ ହିଁ ଦେବ ଅଛନ୍ତି; ଦାନବ ମଧ୍ୟ । ଯେଉଁ ମନୁଷ୍ୟ ଅବସରରେ କାଠ, ପଥର, ଜୀବଜନ୍ତୁମାନ ଭକ୍ଷଣ କରୁଥାନ୍ତି ସେମାନେ ରାକ୍ଷସଶ୍ରେଣୀୟ ନର ପଦବାଚ୍ୟ । ଏହି ପ୍ରସଙ୍ଗରେ ମନ୍ତବ୍ୟ ଦିଆଯାଇପାରେ ଯେ, ମଣିଷ ମଧ୍ୟ ତଥାକଥିତ ଅଖାଦ୍ୟ ଭକ୍ଷଣ କରିପାରିବ; ଏହାଦ୍ୱାରା ତାର ମୃତ୍ୟୁ ହେବ ବୋଲି ନିଶ୍ଚିତ ଭାବେ କୁହାଯାଇ ପାରିବ ନାହିଁ । ପ୍ରକାରାନ୍ତରେ, ମଣିଷର ଖାଦ୍ୟ

ଗ୍ରହଣ ପ୍ରଣାଳୀ ସହିତ ସଂପୃକ୍ତ ଅଙ୍ଗମାନ ବିଭିନ୍ନ ପ୍ରକାର ସାମଗ୍ରୀ ଗ୍ରହଣ କରିବାରେ ସକ୍ଷମ । ଏହି ପରିପ୍ରେକ୍ଷୀରେ ଆମେ ଉଲ୍ଲେଖ କରିପାରୁଁ ଯେ, ଖାଦ୍ୟ ଓ ଅଖାଦ୍ୟ ମଧ୍ୟରେ ସେମିତି କିଛି ଗୁରୁତର ମୌଳିକ ପାର୍ଥକ୍ୟ ଦୃଷ୍ଟ ନାହିଁ । ଯଦି ମଣିଷ ଅଖାଦ୍ୟ ଖାଇ ଯାଦୁବିଦ୍ୟା ଦେଖାଇବାକୁ ସମର୍ଥ, ତାହାହେଲେ ସେ ଖାଦ୍ୟାଭ୍ୟାସ ବେଳେ ତାହା ଗ୍ରହଣ କରିବା ଅସମୀଚୀନ ନ ହୋଇପାରେ । ତେଣୁ ପ୍ରଥମ ଖାଦ୍ୟ ତାଲିକାକୁ ସାମାନ୍ୟ ଏପଟ ସେପଟ ହେବା ପାଇଁ ଯେଉଁମାନେ ପ୍ରଶ୍ରୟ ଦେଉ ନାହାନ୍ତି, ସେମାନେ ନିଜର କଠୋର ବଦ୍ଧମୂଳ ଧାରଣା ବଦଳାଇବା ଆବଶ୍ୟକ । ବିଶେଷତଃ ଖାଦ୍ୟାଭ୍ୟାସଜନିତ ଉତ୍କଟ ପରିସ୍ଥିତି ବେଳେ ବୈଜ୍ଞାନିକମାନଙ୍କ ମତ ନେଇ ଆମେ ତଥାକଥିତ ଅଖାଦ୍ୟ ଖାଇବାକୁ ମାନସିକ ସ୍ତରରେ ପ୍ରସ୍ତୁତ ହେବା ଉଚିତ । ଚିରାଚରିତ ତଥା ପାରମ୍ପରିକ ଖାଦ୍ୟ-ତାଲିକା ମଧ୍ୟରେ ଆମର ରୁଚି ସୀମିତ ନ ରଖି, ଅନ୍ୟାନ୍ୟ ଅଣପାରମ୍ପରିକ ଖାଦ୍ୟ ପ୍ରତି ଆମର ରୁଚି ବିସ୍ତୃତ ଏବଂ ପରିବର୍ତ୍ତିତ କରିବା ବାଞ୍ଛନୀୟ ।

ଖାଦ୍ୟର ପ୍ରକାର ସମ୍ପର୍କରେ ଆଲୋଚନା କରିବା ପରେ ଖାଦ୍ୟର ପରିମାଣ ପ୍ରତି ଦୃଷ୍ଟି ଦିଆଯାଉ । ପ୍ରାଚୁର୍ଯ୍ୟ ବେଳେ ଏହି ବିଷୟଟି ଗୁରୁତ୍ୱପୂର୍ଣ୍ଣ ହୋଇନପାରେ; କିନ୍ତୁ ଅନ୍ୟାନ୍ୟ ସମୟରେ ଆମେ କେତେ କମ୍ ଖାଇ ଚଳିପାରିବା—ତାହା ହେଉଛି ମହତ୍ତ୍ୱପୂର୍ଣ୍ଣ । ବିଶେଷଜ୍ଞମାନେ ମତ ଦିଅନ୍ତି ଯେ, ଅନାହାର ଯୋଗୁଁ ଆମ ଶରୀରର ଓଜନରୁ ଯଦି ଶତକଡ଼ା ୨୫ ଭାଗ କମିଯାଏ, ତାହାହେଲେ ଜୀବନରକ୍ଷା ଅସମ୍ଭବ ହୋଇପଡ଼େ । ଏହି କ୍ଷେତ୍ରରେ ଆମ ଶରୀରରେ ଚର୍ବିକ୍ଷରଣ ହୁଏ ଓ ଆମ ଗ୍ରନ୍ଥି ତଥା ପେଶୀମାନ କ୍ରମଶଃ ଦୁର୍ବଳ ହୋଇଯାନ୍ତି । ଆମେ ଚଳପ୍ରଚଳ ହେବାପାଇଁ ଅସମର୍ଥ ହୋଇ ଶେଯରେ ପଡ଼ିରହୁ ଏବଂ ଶେଷରେ ଶୁଖି ଶୁଖି ଜୀବନ ତ୍ୟାଗ ଦେଉ ।

ଏଥିରୁ ଅନୁମିତ ହୁଏ ଯେ, ଅନାହାର ଯୋଗୁଁ ମୃତ୍ୟୁ ତତ୍‌କ୍ଷଣାତ୍ ହୋଇ-ନଥାଏ । ଏଥିପାଇଁ ସମୟ ଆବଶ୍ୟକ, ଯାହାକି ବେଳେ ବେଳେ ଦୀର୍ଘ ହୋଇଥାଏ । ରାମାୟଣ ଗ୍ରନ୍ଥରେ ଏହାର କିଛି ସୂଚନା ମିଳେ । ଲକ୍ଷ୍ମଣ ଯେତେବେଳେ ରାମ ଓ ସୀତାଙ୍କ ସହିତ ଚଉଦ ବର୍ଷ ବନବାସ କଲେ, ସେ କ୍ଷଣକ ପାଇଁ ମଧ୍ୟ ଶୋଇ ନଥିଲେ; ଅବା କୌଣସି ଖାଇ ନଥିଲେ । ଏହି କାରଣ ଯୋଗୁଁ ସେ ଇନ୍ଦ୍ରଜିତକୁ ବଧ କରିପାରିଥିଲେ; କାରଣ ଆହାର, ନିଦ୍ରା, ମୈଥୁନ ବର୍ଜନ କରିଥିବା ବ୍ୟକ୍ତି ଦ୍ୱାରା ହିଁ ସେ ନିହତ ହେବ ବୋଲି ବର ପାଇଥିଲା ।

ରାମାୟଣରେ ବର୍ଣ୍ଣିତ ଏହି ଘଟଣା କେବଳ ଦେବତାମାନଙ୍କ କ୍ଷେତ୍ରରେ ପ୍ରଯୁଜ୍ୟ ଓ ମଣିଷ ପାଇଁ ଅସମ୍ଭବ ବୋଲି ଜଣା ପଡ଼ିଥିଲେ ସୁଦ୍ଧା, ମଣିଷ ଯେ

ଅନାହାରରେ ରହିଲେ ହଠାତ୍ ମରିଯିବ—ଏପରି ଭାବିବା ଅମୂଳକ । ପ୍ରକୃତରେ ମାନବ ଦେହର ଏକ ରୂପାନ୍ତର ବୋଲି ବିଶ୍ୱାସ କରିବା ପାଇଁ ଯଥେଷ୍ଟ ପ୍ରେରଣା ଜନ୍ମ ଜାତକରୁ ମିଳିଥାଏ ।

"ସ୍ୱାସ୍ଥ୍ୟର ଅନ୍ୱେଷଣ" ଶୀର୍ଷକ ଏହି କାହାଣୀଟି ଲେଖିଛନ୍ତି ଲବ୍ଧପ୍ରତିଷ୍ଠିତ ବୈଜ୍ଞାନିକ ଜୁଲିଅନ୍ ହକ୍ସଲେ । କାହାଣୀଟିରେ ବୈଜ୍ଞାନିକ ଦୃଷ୍ଟିକୋଣ ଅତି ସୁସ୍ପଷ୍ଟ । ଏଥିର ମୁଖ୍ୟ ଚରିତ୍ର ହେଉଛନ୍ତି ଜଣେ ଆତ୍ମବିଶ୍ୱାସୀ ବୈଜ୍ଞାନିକ, ଯିଏ କି ଆମ ପାଇଁ ଆଦର୍ଶ ସୁଷମ ଖାଦ୍ୟ ତାଲିକା ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ଗବେଷଣାରତ । ତାଙ୍କର ଉଦ୍ଦେଶ୍ୟ ଥିଲା ଯେ, ଏହି ତାଲିକା ଅନୁସାରେ ଯିଏ ଖାଦ୍ୟ ଖାଇବ, ସେ ଆଉ କୌଣସି ରୋଗର ଶିକାର ହେବ ନାହିଁ । ବୈଜ୍ଞାନିକ ଜଣକ ଶତଚେଷ୍ଟା ସତ୍ତ୍ୱେ ସଫଳ ହୋଇପାରୁ ନଥାନ୍ତି । ମନକ୍ଷୋଭରେ ସେ ବିରକ୍ତ ହୋଇ ବିଶ୍ୱଭ୍ରମଣରେ ବାହାରିଲେ ଓ ଭାରତରେ ପହଞ୍ଚିଲେ । ସେ ଦେଖିଲେ ଯେ, ଜଣେ ତେଜୋଦୀପ୍ତ ଋଷି ଧ୍ୟାନମଗ୍ନ ହୋଇ ଗୋଟିଏ ବରଗଛ ତଳେ ବସିଛନ୍ତି । ଗବେଷକ ତତ୍‌କ୍ଷଣାତ୍ ତାଙ୍କର ରକ୍ତଚାପ, ହୃତକମ୍ପ ଇତ୍ୟାଦି ମାପି ଜାଣିଲେ ଯେ, ସେ ଖୁବ୍ ସୁସ୍ଥ ସବଳ । ତେଣୁ ସେ ଭାବିନେଲେ ଯେ, ଏହି ଋଷି ଜଣକ ଯେଉଁ ଖାଦ୍ୟପେୟ ଗ୍ରହଣ କରୁଛନ୍ତି ତାହା ଅବଶ୍ୟ ଆଦର୍ଶ ସୁଷମ ଖାଦ୍ୟ, ଯାହା ପାଇଁ ସେ ଦୀର୍ଘଦିନ ଧରି ଗବେଷଣା ଚଳାଇ ବ୍ୟର୍ଥ ହୋଇଥିଲେ ।

ଋଷିଙ୍କର ଧ୍ୟାନଭଙ୍ଗ ହେବା ପରେ ସେ ତାଙ୍କୁ ଆଗ୍ରହତାର ସହିତ ତାଙ୍କ ଖାଦ୍ୟତାଲିକା ସମ୍ପର୍କରେ ପଚାରିଲେ । ଋଷି ଉତ୍ତର ଦେଲେ ଯେ, ସେ ଜଣେ ନିରାହାରୀ ବାବା—ମୁକ୍ତ ପବନ ବ୍ୟତୀତ ସେ ଅନ୍ୟ କିଛି ଗ୍ରହଣ କରନ୍ତି ନାହିଁ ! ଏହା ଶୁଣି ବୈଜ୍ଞାନିକ ଜଣକ ଅବାକ୍ ହୋଇଗଲେ ଓ ସୁଷମ ଖାଦ୍ୟ ତାଲିକା ସମ୍ପର୍କରେ ଗବେଷଣା ବନ୍ଦ କରିଦେଲେ ।

ହକ୍ସଲେଙ୍କ ଏପରି ସାରମର୍ମ ହେଉଛି ଯେ ବଞ୍ଚିବା ପାଇଁ ଭୋଜନ ଯେପରି ଅପରିହାର୍ଯ୍ୟ, ଉପବାସ ସେପରି ମହତ୍ତ୍ୱପୂର୍ଣ୍ଣ । ତେଣୁ ଆମେ ଉଦର ପୂର୍ତ୍ତି କରିବାକୁ ଯେତେ ବ୍ୟସ୍ତ ହୋଇ ପଡ଼ୁଛେ, ସୁସ୍ଥରେ ରହିବା ପାଇଁ ମଧ୍ୟ ସେତେ ଚିନ୍ତା କରିବା ଆବଶ୍ୟକ । ସ୍ୱଳ୍ପ ଭୋଜନ ଯେ ଆମକୁ ଦୀର୍ଘାୟୁ କରିବ ଓ ଆମ ବାର୍ଦ୍ଧକ୍ୟକୁ ବହୁଦିନ ପାଇଁ ଦୂରେଇ ଦେବ—ଏଥିରେ କୌଣସି ସନ୍ଦେହ ନାହିଁ ।

ଟେକ୍ସାସ ବିଶ୍ୱବିଦ୍ୟାଳୟର ସ୍ୱାସ୍ଥ୍ୟ ବିଜ୍ଞାନ କେନ୍ଦ୍ରର ବୈଜ୍ଞାନିକ ଡଃ ମାସୋରୋ ଓ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଡା ୱାଲଫୋର୍ଡ଼ ମୂଷାମାନଙ୍କ ଉପରେ ଗବେଷଣା

କରି ଜାଣିପାରିଲେ ଯେ, ଯେଉଁ ମୂଷାମାନଙ୍କୁ ସ୍ୱଳ୍ପ ଶତାଂଶ କମ୍ ଖାଦ୍ୟ ଦିଆଯାଏ, ସେମାନେ ପୂର୍ଣ୍ଣ ଭୋଜନ କରୁଥିବା ମୂଷାମାନଙ୍କଠାରୁ ଅଧିକ ସୁସ୍ଥ, ସବଳ ଓ ସତେଜ । ଏମାନଙ୍କ ହାରାହାରି ଆୟୁଷ ମଧ୍ୟ ଶତକଡ଼ା ଦଶରୁ କୋଡ଼ିଏ ଭାଗ ବୃଦ୍ଧି ପାଏ । ଏହି ବୈଜ୍ଞାନିକ ପରୀକ୍ଷା କେବଳ ମୂଷାମାନଙ୍କ ପାଇଁ ନୁହେଁ, ମଣିଷମାନଙ୍କ ପାଇଁ ମଧ୍ୟ ପ୍ରଯୁଜ୍ୟ ।

ପୁଣି ଗବେଷଣାରୁ ଜଣାଯାଏ ଯେ, ଆମେ ଖାଉଥିବା ଖାଦ୍ୟ ଶରୀରରେ ବ୍ୟବହୃତ ହେବା ପରେ, ଯାହା ବଳକା ହୁଏ, ତାହା ଆମ ଜୀବକୋଷରେ ମଇଳା ଭାବେ ଜମା ହୁଏ । ତେଣୁ ଆମେ ଯେତେ ଅଧିକ ଖାଦ୍ୟ ଖାଉ, ତାହା ସେତେ ଅଧିକ ମଇଳା ବୃଦ୍ଧି କରେ । ଏହା ଫଳରେ ଆମର ସ୍ନାୟୁଶକ୍ତି, ରକ୍ତ ସଞ୍ଚାଳନ ପରି ଗୁରୁତ୍ୱପୂର୍ଣ୍ଣ ପ୍ରକ୍ରିୟାମାନ ମନ୍ଥର ହୋଇଯାଏ । ଆମର ପ୍ରତିରୋଧ ଶକ୍ତି ମଧ୍ୟ ହ୍ରାସ ପାଏ । ଫଳରେ ଆମର ବାର୍ଦ୍ଧକ୍ୟ ତ୍ୱରାନ୍ୱିତ ହୁଏ ଏବଂ ମୃତ୍ୟୁ ନିକଟତର ହୁଏ । ତେଣୁ ମାତ୍ରାଧିକ ଖାଦ୍ୟ ଯେ ବିଷର ରୂପ ନେଇପାରେ, ତାହା ଆମେ ମାନିବାକୁ ବାଧ୍ୟ ।



# "ଶବ"ର ମାନବୃଦ୍ଧି ପ୍ରସଙ୍ଗ

ମୁଣ୍ଡ ତଳେ ଖପୁରି ରଖି ଆମେ କ'ଣ ଶୋଇ ପାରିବା ? ଏହି ଖପୁରିଟି ଯଦି କୌଣସି ମୃତ ଆତ୍ମୀୟସ୍ୱଜନର ହୋଇଥିବ, ତାହାହେଲେ ନିଦମାଡ଼ିବା ତ ଦୂରର କଥା; ବିଭିନ୍ନ ପ୍ରକାର ଭୟ ଓ ଆଶଙ୍କାରେ ସାରା ରାତି ଆମ ମନ ଛଟପଟ ହେବନାହିଁ କି ? ତେବେ ନ୍ୟୁଗିନି ରାଜ୍ୟର ଦକ୍ଷିଣାଞ୍ଚଳରେ ରହୁଥିବା କେତେକ ବାସିନ୍ଦାଙ୍କଠାରେ ଖପୁରି ପ୍ରତି ଏହି ପ୍ରକାରର ଥିବା ଆସକ୍ତି ଦେଖିଲେ ଆମକୁ ଆଶ୍ଚର୍ଯ୍ୟ ଲାଗେ । ସେମାନେ ବିଶ୍ୱାସ କରନ୍ତି ଯେ, ଖପୁରି ଉପରେ ଶୋଇଲେ ଏକ ଅଦ୍ଭୁତ ଧରଣର ଶକ୍ତି ସେମାନଙ୍କୁ ମିଳିଥାଏ ।

ପଶ୍ଚିମ ଜର୍ମାନୀର ଫ୍ରିଂବର୍ଗ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ଗୋଟିଏ ନ୍ୟୁରୋକେମିକାଲ୍ କ୍ଲିନିକ୍‌ରେ ଓ୍ୱିନ୍‌ଫ୍ରେଡ୍ ଏଙ୍ଗେଲହର୍ଡ ନାମକ ଜଣେ ଭେଷଜ ନୃତତ୍ତ୍ୱବିତ୍ କାର୍ଯ୍ୟ-ରତ ଅଛନ୍ତି । ସେ ପୃଥିବୀର ବିଭିନ୍ନ ଅଞ୍ଚଳରେ ପ୍ରଚଳିତ ଥିବା ନିଦ୍ରାସମ୍ପର୍କିତ ଅଭ୍ୟାସ ମାନଙ୍କ ଉପରେ ଗବେଷଣା ଚଳାଇ ନ୍ୟୁଗିନି ବିଷୟରେ ଏହି କୌତୂହଳଜନକ ତଥ୍ୟ ପ୍ରକାଶ କରିଛନ୍ତି ।

ହୁଏତ ନ୍ୟୁଗିନିର କୌଣସି ଅନୁନ୍ନତ କୁସଂସ୍କାରାଚ୍ଛନ୍ନ ଅଞ୍ଚଳରେ ଏହି ପରମ୍ପରା ପ୍ରଚଳିତ ହେଉଛି ବୋଲି କହି ଆମେ ବିଷୟଟିକୁ ଗୁରୁତ୍ୱ ଦେଇ ନପାରୁ । ତଥାପି ମନରେ ସନ୍ଦେହ ଜାତହୁଏ; ବୋଧହୁଏ ମୃତ ବ୍ୟକ୍ତିର ଶବ ବା କଙ୍କାଳର କିଛି ରହସ୍ୟାବୃତ ଶକ୍ତିଶାଳୀ ପ୍ରଭାବ ଆମ ଉପରେ ରହିଛି ଏବଂ ଏହା ଆମେ ସୁସ୍ପଷ୍ଟଭାବେ ବୁଝି ନପାରିଲେ ସୂକ୍ଷ୍ମ ଅଙ୍ଗେ ଅଙ୍ଗେ ଉପଲବ୍ଧି କରୁଛେଁ । ଏମିତି ଭାବିବା ପଛରେ ମୂଳ କାରଣ ହେଉଛି ଯେ, ନ୍ୟୁଗିନିଠାରୁ ବହୁଗୁଣରେ ବୈଜ୍ଞାନିକ ଚିନ୍ତାଧାରାରେ ପରିପୁଷ୍ଟ ଓ ଉନ୍ନତ ବୋଲି ମନେକରାଯାଉଥିବା ଇଂଲଣ୍ଡରେ ମଧ୍ୟ ଏହି ଧରଣର ଅନ୍ୟ ଏକ ବିଚିତ୍ର ସମ୍ବାଦ ଶୁଣିବାକୁ ମିଳେ ।

"ଏନ୍ ଭନ୍ ସୁନଥୋରପ" ନାମକ ଏକ ଶ୍ମଶାନ ଇଂଲଣ୍ଡରେ ଅଛି । ଲକ୍ଷ୍ୟ କରାଯାଇଛି ଯେ, ପ୍ରତିବର୍ଷ ପ୍ରାୟ ଏକ ଲକ୍ଷ ଜନସମାବେଶ ଏହା ପରିଦର୍ଶନ କରନ୍ତି । ପର୍ଯ୍ୟଟକମାନେ ଏହି ଅଜବ ଧରଣର ପର୍ଯ୍ୟଟନ କେନ୍ଦ୍ରରେ ଉପସ୍ଥିତ ହେବା ବେଳେ ଆକର୍ଷଣୀୟ ମଧୁର ସଙ୍ଗୀତ ବଜାଯାଏ । ସ୍ଥାନୀୟ କମିଟିର ଚେୟାରମ୍ୟାନ୍ କେଟି ମାର୍ଟିନ୍‌ଙ୍କ ମତ ହେଉଛି ଯେ ଶ୍ମଶାନଟିକୁ ବାରମ୍ବାର ବୁଲିଯିବା ଆମ ସମସ୍ତଙ୍କ ପକ୍ଷେ ଆବଶ୍ୟକ । ବୋଧହୁଏ ଶ୍ମଶାନର ଏହି ପ୍ରକାର ଉପାଦେୟତା ସମ୍ପର୍କରେ ସିଏ ବହୁ ପୂର୍ବରୁ ଜାଣି ଶ୍ମଶାନବାସୀ ହେବାକୁ ପସନ୍ଦ କରିଛନ୍ତି ! ଏହି ଉପାୟରେ ଶ୍ମଶାନକୁ ସମ୍ମାନାର୍ହ ତଥା ଆକର୍ଷଣୀୟ କରିବା ପଛରେ କଉଣ ଉଦ୍ଦେଶ୍ୟ ଥାଇପାରେ । ଆମେ ଜାଣୁଁ ଯେ ମୃତମାନଙ୍କ ପ୍ରତି ଆମ ମନରେ ସ୍ୱାଭାବିକତଃ ଅଜଣା ଆଶଙ୍କା ଓ ଭୟ ରହିଛି । ଜୀବିତ ଓ ମୃତମାନଙ୍କ ମଧ୍ୟରେ ବିଚ୍ଛିନ୍ନ ଭାବରୁ ବିରକ୍ତି ଓ ଅନତିକ୍ରମ୍ୟ ଫାଙ୍କ ସୃଷ୍ଟି ହୋଇଛି । ତଥାପି କେଜାଣି କାହିଁକି, ବୋଧହୁଏ ଦୁର୍ବଳ ମୁହୂର୍ତ୍ତରେ, ଆମେ ମୃତମାନଙ୍କୁ ଜୀବନ୍ତ ଧରିବାକୁ ଚାହୁଁ । ସେମାନଙ୍କ ଶବକୁ ଏମିତି ମନପ୍ରାଣ ଦେଇ ଭଲପାଉଁ ଯେ, ଆମେ ସମସ୍ତ ସ୍ୱାଭାବିକ ସାଧାରଣ ବୁଦ୍ଧିବୃତ୍ତି ଜ୍ଞାନକୁ ଭୁଲିଯାଇ ପାଗଳଙ୍କପରି ଉନ୍ମାଦ ଆଚରଣ ପ୍ରଦର୍ଶନ କରୁଁ ।

ନିକଟ ଅତୀତରେ ମହାରାଷ୍ଟ୍ରରେ ଘଟିଯାଇଥିବା ଗୋଟିଏ ଆଶ୍ଚର୍ଯ୍ୟଜନକ ଘଟଣା ଏଠାରେ ଅବତାରଣା କରାଯାଇପାରେ । ସେଇ ରାଜ୍ୟର କୌଣସି ଏକ ଗ୍ରାମରେ ଜଣେ କୃଷକର ତେରବର୍ଷ ବୟସ୍କ ନାତିଟି ପୋଖରୀରେ ବୁଡ଼ି ପ୍ରାଣ ହରାଇଲା । କୃଷକ ଜଣକ ତା ନାତିକୁ ଅତ୍ୟନ୍ତ ସ୍ନେହ କରୁଥାଏ । ସେ ତାର ମର୍ମନ୍ତୁଦ ମୃତ୍ୟୁ ସହି ନପାରି ପୋଖରୀ ସାରା ତା'ର ଶବ ଖୋଜିଲା; କିନ୍ତୁ ପାଇଲା ନାହିଁ । ତଥାପି କର୍ମରୁ ଅବସର ଏହା ସହିବାକୁ ସେ ପ୍ରସ୍ତୁତ ନୁହେଁ । ନାତିଟିର ମୃତ ଶରୀର ପାଇବା ସେତେବେଳେ ତା ପାଇଁ ଏକମାତ୍ର ଲକ୍ଷ୍ୟ ଥିଲା । କେଣ୍ଡୁ କୋଡ଼ି,ଶାବଳ ଦ୍ୱାରା ପୋଖରୀର ତୁଣ୍ଡା ହାଣି ପକାଇଲା । ଉଦ୍ଦେଶ୍ୟ ହେଉଛି ଯେ, ପାଣି ବାହାରିଯାଇ ପୋଖରୀଟି ଶୁଖିଗଲେ ସେ ତା'ର ନାତିର ଶବଟି ପାଇବ । କିନ୍ତୁ ଏହି ଅପରିଣାମଦର୍ଶୀ କାର୍ଯ୍ୟଦ୍ୱାରା ସେ ଯେଉଁ ଗୁରୁତର ପରିସ୍ଥିତି ସୃଷ୍ଟି କରିବାକୁ ଯାଉଥିଲା, ସେଇ ବିଷୟ ତାକୁ ଜଣା ନଥିଲା । ପୋଖରୀରୁ କ୍ଷିପ୍ରବେଗରେ ଆସୁଥିବା ପାଣି ଏକ କୃତ୍ରିମ ବନ୍ୟା ସୃଷ୍ଟି କରି ୨୦ ମିନିଟ୍ ମଧ୍ୟରେ ନିକଟସ୍ଥ ଗ୍ରାମର ପ୍ରାୟ ୨୨ ହଜାର ଟଙ୍କାର ମୂଲ୍ୟର ସଂପତ୍ତି ନଷ୍ଟ କରିଦେଲା । କେବଳ ସେତିକି ନୁହେଁ; ଜଣେ ଗ୍ରାମବାସୀ ମଧ୍ୟ ଏହି ଅପ୍ରତ୍ୟାଶିତ ବନ୍ୟାରେ ବୁଡ଼ି ପ୍ରାଣ ହରାଇଲା ।

କେହି କେହି ସମାଲୋଚକ ଏହି ପ୍ରସଙ୍ଗରେ ମନ୍ତବ୍ୟ ଦେଇପାରନ୍ତି ଯେ, ନାତି ପ୍ରତି କୃଷକ ଜଣକ ପ୍ରେମ-ପାଗଳ ହୋଇ ଏପରି ଅସଂଗତ କାର୍ଯ୍ୟ କରି

ପଡ଼ାଇବ । ଏହି ଘଟଣା ଏକ ବ୍ୟତିକ୍ରମ ଏବଂ ଏହା ଉପରେ ଭିତ୍ତିକରି କୌଣସି ଯଥାର୍ଥ ଉପସଂହାରରେ ପହଞ୍ଚିବା ଅବାସ୍ତବ ଓ ଅନୁଚିତ । ଏହି ସୂତ୍ର ପଛରେ କିଛି କାରଣ ରହିଥିଲେ ମଧ୍ୟ ଆମକୁ ମାନିବାକୁ ପଡ଼ିବ ଯେ, ପ୍ରକୃତସ୍ଥ ଓ ସଂଯତ ଅବସ୍ଥାରେ ଥିଲେ ମଧ୍ୟ ମୃତ ଶରୀରକୁ ଆବିଷ୍କାର କରିବାପାଇଁ କେତେକ କ୍ଷେତ୍ରରେ ସଂଘଟିତ ଭାବେ ବହୁଳ ଅର୍ଥବହୁଳ ଯୋଜନାମାନ ପ୍ରଣୟନ କରୁଛନ୍ତି । କେବଳ ସେତିକି ନୁହେଁ; ମୃତ ଶରୀରକୁ ମଧ୍ୟ ଅକ୍ଷତ ଅବସ୍ଥାରେ ରଖି ଭବିଷ୍ୟତରେ ପୁନର୍ଜୀବିତ କରିବା ପାଇଁ ବୈଜ୍ଞାନିକମାନେ ଚେଷ୍ଟା ଚଳାଇଛନ୍ତି ।

ପ୍ରକୃତରେ ଆଗାମୀ ଶତାବ୍ଦୀରେ ମାନବଜାତିର ସଭ୍ୟତା ବର୍ତ୍ତମାନ ପରି ଜୀବିତମାନଙ୍କ ଉପରେ ପର୍ଯ୍ୟବସିତ ନହୋଇ ମୁଖ୍ୟତଃ ମୃତମାନଙ୍କର ପୁନ-ର୍ଜୀବନ ଉପରେ ଭିତ୍ତିକରି ପ୍ରତିଷ୍ଠିତ ହୋଇପାରେ । ଏହି ପ୍ରକାର ବିରଳ ମତ ପୋଷଣ କରିବା ପାଇଁ ଆମର ସାଂପ୍ରତିକ ଚିନ୍ତାଧାରା, ବୈଜ୍ଞାନିକ ଗବେଷଣା ଓ ଉଚିତ ଯୋଜନାର ରୂପରେଖା ଯଥେଷ୍ଟ ଖୋରାକ ଯୋଗାଉଛି । ଏହି ସଂପର୍କରେ କେତୋଟି ଦୃଷ୍ଟାନ୍ତ ଉଲ୍ଲେଖ କରାଯାଇ ପାରେ ।

୧୯୫୩ ସାଲରେ ଏଡ଼ମଣ୍ଡ ହିଲାରି ଓ ଶେର୍ପା ତେନଜିଂ ନର୍ଗେ ଏଭେରେଷ୍ଟ ଶୃଙ୍ଗର ଶିଖରରେ ପହଞ୍ଚିଥିଲେ । ସେମାନେ ଆରୋହଣ କରୁଥିବାବେଳେ ରାସ୍ତାରେ ଛିନ୍ନଛିନ୍ନ ଅବସ୍ଥାରେ ପଡ଼ି ରହିଥିବା କେତେକ ଆସବାବପତ୍ର, କୁରାଢ଼ି, କିଛି ଖାଦ୍ୟ-ସାମଗ୍ରୀ ଓ ଗୋଟିଏ ଟର୍ଚ୍ଚ ପଡ଼ିଥିବାର ଦେଖିଲେ । କୌତୂହଳବଶତଃ ସେମାନେ ଟର୍ଚ୍ଚଟି ଟିପିବା ପରେ ଦେଖି ପାରିଲେ ଯେ, ତାହା ଜଳୁଛି । ଏହି ଟର୍ଚ୍ଚଟି ବହୁବର୍ଷ ପୂର୍ବେ ନିଖୋଜ ହୋଇଯାଇଥିବା ହିମାଳୟ-ଆରୋହଣକାରୀ ମ୍ୟାଲରି ଓ ଆରଭିନ୍‌ଙ୍କର ହୋଇଥିବ ବୋଲି ସେମାନେ ଅନୁମାନ କଲେ । ପ୍ରାୟ ତେତିଶ ବର୍ଷ ପୂର୍ବେ ୧୯୨୪ ମସିହାରେ ମ୍ୟାଲରି ଓ ତାଙ୍କ ସହଯୋଗୀମାନେ ଏଭେରେଷ୍ଟ ଶୃଙ୍ଗର ଶିଖରରେ ପହଞ୍ଚିବା ପୂର୍ବରୁ ନିଖୋଜ ହୋଇଯାଇଥିଲେ । ଦୀର୍ଘକାଳ ପରେ ମଧ୍ୟ ସେମାନଙ୍କ ଟର୍ଚ୍ଚଟି ଅକାମୀ ନହୋଇ ଜଳୁଥିବା ଯୋଗୁଁ ହିଲାରି ଓ ତେନଜିଂ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ପ୍ରକାଶ ଥାଉକି, ପ୍ରଥମେ ପ୍ରଥମେ ସେମାନେ ନିଖୋଜ ହୋଇଯାଇଥିବେ ବୋଲି ଯାହା ଅନୁମାନ କରାଯାଉଥିଲା, ତାହା ପରବର୍ତ୍ତୀ କାଳରେ ପରିବର୍ତ୍ତିତ ହୋଇ ସେମାନେ ମୃତ ବୋଲି ବିଶ୍ୱାସ କରାଗଲା । ସେ ଯାହାହେଉ ସେମାନଙ୍କ ଶବ ବର୍ତ୍ତମାନ ଯାଏଁ ଅକ୍ଷତ ଅବସ୍ଥାରେ ବରଫାଚ୍ଛାଦିତ ହିମାଳୟର ଶୀତଳ ଜଳବାୟୁରେ ପଡ଼ି ରହିଥିବ ବୋଲି ହିଲାରି ଓ ତେନଜିଂ ଭାବୁଥିଲେ ଏବଂ ଏହି ମୃତ ଶରୀରକୁ ଠାବ କରିପାରି ନଥିବା ଯୋଗୁଁ ସେମାନେ ଦୁଃଖ ପ୍ରକାଶ କରିଥିଲେ ।

ହିଲାରି ଓ ଟେନ୍‌ଜିଂ ମୃତ ମ୍ୟାଲର୍‌-ଦଳର ଶବ ଅବସ୍ଥାର ସମ୍ପର୍କରେ ଏଇ ଯେଉଁ ଆଶାପୋଷଣ କରିଥିଲେ, ତାହା ଅବାସ୍ତବ ନୁହେଁ । ଏକଃ ଅଞ୍ଚଳରେ ଯୁକ୍ତରାଷ୍ଟ୍ର ଅନ୍ତର୍ଗତ ଜାଁଲଟନ୍ଷ୍ଟିଅ ବିଶ୍ୱବିଦ୍ୟାଳୟର ଦଳେ ଗବେଷକ ବିଭିନ୍ନ ବିଷୟରେ ଅନୁସନ୍ଧାନ କରିବା ପାଇଁ ନାନାଭାବର ହିମସ୍ଥଳରୁ ଉତ୍ତରମେରୁକୁ ଯାଇଥିଲେ । ଆଶ୍ଚର୍ଯ୍ୟର ବିଷୟ ହେଉଛି ଯେ, ସେଠାରେ ସେମାନେ ଜନ୍ ଟାରିଂଟନ୍ ନାମକ ଜଣେ ଉତ୍ତରମେରୁ ଅଭିଯାତ୍ରୀଙ୍କ ଅକ୍ଷତ ଶବକୁ ଦେଖିବାକୁ ପାଇଲେ । ପ୍ରକାଶଥାଉକି, ଆଜକୁ ପ୍ରାୟ ୧୮୮ ବର୍ଷ ପୂର୍ବେ ଜନ ଟାରିଂଟନ୍‌ଙ୍କ ଅଧିନାୟକତ୍ୱରେ ଗୋଟିଏ ଇଂରେଜ ଅଭିଯାତ୍ରୀଦଳ ଉତ୍ତର-ମେରୁ ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲେ । ସେମାନଙ୍କୁ ନେଇଯାଉଥିବା ଜାହାଜ ଦୁଇଟି ସମ୍ଭବେ ଭୟଙ୍କର ଦୁର୍ଘଟଣାର ସମ୍ମୁଖୀନ ହେଲା, ଯାହା ଫଳରେ ସମସ୍ତ ଯାତ୍ରୀ ପ୍ରାଣ ହରାଇଲେ । ସେଇ-ଦିନଠାରୁ ଦୀର୍ଘଦିନ ବିତିଯାଇଥିଲେ ମଧ୍ୟ ଜନ ଟାରିଂଟନ୍‌ଙ୍କ ମୃତ ଦେହ ସେଠାରେ କେମିତି ଅକ୍ଷତ ଅବସ୍ଥାରେ ପଡ଼ିରହିଥିଲା, ତାହା ବିଶ୍ୱାସ କରି ହେଉନାହିଁ । ପ୍ରତ୍ୟକ୍ଷ-ଦର୍ଶୀଙ୍କ ବିବରଣୀ ଅନୁଯାୟୀ ତାଙ୍କ ଶରୀର ଅଦ୍ୟାବଧି ଏମିତି ଜୀବନ୍ତ ଦେଖାଯାଉଛି ଯେ, ତାଙ୍କୁ ମୃତ ବୋଲି କହି ହେଉନାହିଁ—ଯେମିତି ସେ ଗଭୀର ନିଦ୍ରାରେ ଅଚେତନ ଅବସ୍ଥାରେ ପଡ଼ି ରହିଛନ୍ତି !

କେବଳ ଜନ ଟାରିଂଟନ୍ ନୁହନ୍ତି; ସାର୍ ଜନ ଫ୍ରାଙ୍କଲିନ୍ ନାମକ ଅନ୍ୟ ଜଣେ ଉତ୍ତରମେରୁ ଅଭିଯାତ୍ରୀଙ୍କ ଶବ ମଧ୍ୟ ଆବିଷ୍କୃତ ହୋଇଛି । ସେ ୧୮୪୫ ମସିହାରେ ମେରୁ-ଯାତ୍ରା ଆରମ୍ଭ କରିଥିଲେ । କିନ୍ତୁ ୧୮୪୭ ମସିହା ଜୁନ୍ ମାସ ୧୧ ତାରିଖରେ ପ୍ରାଣ ହରାଇଥିବା ଯୋଗୁଁ ତାଙ୍କ ଅଭିଯାନର ଅକାଳ ପରିସମାପ୍ତି ଘଟିଥିଲା । ଅବଶ୍ୟ ସେ ସେତେବେଳେ ନିଖୋଜ ହୋଇ ଯାଇଥିବା ସମ୍ବାଦ ପ୍ରସାରିତ ହୋଇଯାଇଥିଲା । ବର୍ତ୍ତମାନ କୋଟି କୋଟି ପାଉଣ୍ଡ ଖର୍ଚ୍ଚ କରି ଏସ୍କିମୋମାନଙ୍କ ସହାୟତାରେ ତାଙ୍କର ମୃତ ଶରୀର ଠାବ କରିବା ଏକ ବିସ୍ମୟକର ଘଟଣା ।

ପ୍ରକୃତରେ ଏହିସବୁ ଘଟଣାରୁ ପ୍ରମାଣିତ ହୁଏ ଯେ, ଆମେ ଜୀବନ୍ତ ବ୍ୟକ୍ତିଙ୍କୁ ଯେତେ ଭଲ ପାଉଥିଲେ ସୁଦ୍ଧା, ମଲାଲୋକଙ୍କୁ କମ୍ ଭଲ ପାଉନାହୁଁ । ଆମେ ଚାହୁଁ ଯେ, ଆମର ପ୍ରିୟ ଆତ୍ମୀୟସ୍ୱଜନ କେହି ନ ମରନ୍ତୁ; ଯଦି ମରିବା ପାଇଁ ସେମାନେ ବାଧ୍ୟ, ତାହାହେଲେ ସେମାନଙ୍କ ଶବ ଅନ୍ତତଃ ଏମିତି ଅବସ୍ଥାରେ ରହୁ ଯେ,ସେମାନଙ୍କୁ ବୁଝିଦେବା ମାତ୍ରେ ଆମେ ଭାବିବୁ—ସେମାନେ ଜୀବନ୍ତ । ମୃତ୍ୟୁ ଦ୍ୱାରା ଯେପରି ମଣିଷର ଉଭୟ ଜୀବନ ଓ ଶରୀର ଅପହୃତ ହୋଇଯାଉଛି, ଅନ୍ତତଃ ସେପରି ନ ହୋଇ, ଜୀବନ ଯାକଟି ଯମ ନେଇଗଲେ ସୁଦ୍ଧା, ଶରୀର ଯାକଟି ଆମ ନିକଟରେ ତଥ ସୁରକ୍ଷିତ ରହୁ ।

ଶରୀର ପାଇଁ ଆମର ଯେଉଁ ଦୟନୀୟ ଆକର୍ଷଣ ରହିଛି, ତାହା କେବଳ ଏହି ବିଂଶ ଶତାବ୍ଦୀର ଲକ୍ଷଣ ନୁହେଁ । ଗତ ଶତାବ୍ଦୀର ବିଭିନ୍ନ ଘଟଣା ମଧ୍ୟ ଆମର ଏଇ ପ୍ରବୃତ୍ତିର ସୂଚନା ପ୍ରକାଶ କରିଥାଏ । ଉଦାହରଣ ସ୍ୱରୂପ, ଆଫ୍ରିକା ଅନ୍ଧକାରରେ ବୁଲୁଥିବା ଡେଭିଡ୍ ଲିଭିଙ୍ଗ୍‌ଷ୍ଟୋନ୍‌ଙ୍କ ବିଷୟକୁ ବିଚାର କରାଯାଉ । ସେଠାକାର ଦୁର୍ଗମ ଅଞ୍ଚଳରେ ଅସୁସ୍ଥ ହୋଇଥିବା ବେଳେ ୧୮୭୩ ମସିହାରେ ଜାମ୍ବିଆର ଚିଟାମ୍ବୋ ଗ୍ରାମରେ ସେ ପ୍ରାଣ ହରାଇଥିଲେ । ସେତେବେଳେ ୬୦ ଜଣ ଆଫ୍ରିକୀୟ ବାସିନ୍ଦା ତାଙ୍କର ଅନୁଚରଭାବେ ଉପସ୍ଥିତ ଥିଲେ । ସେମାନେ ସ୍ଥିର କଲେ ଯେ, ଲିଭିଙ୍ଗଷ୍ଟୋନ୍‌ଙ୍କ ମରଣଶରୀରକୁ ଜାହାଜରେ ତାଙ୍କର ବାସସ୍ଥାନ ଇଂଲଣ୍ଡକୁ ପଠାଇବେ । ତେଣୁ ବହୁଦୂରରେ ଥିବା ଜାଞ୍ଜିବାରର ସମୁଦ୍ର କୂଳକୁ ଯେକୌଣସି ଉପାୟରେ ଶବଟିକୁ ନେବାକୁ ପଡ଼ିବ । ଶବଟି ଅକ୍ଷତ ଅବସ୍ଥାରେ ରଖିବା ପାଇଁ ତା' ଦେହରୁ ହୃତ୍‌ପିଣ୍ଡ, ଅନ୍ତ୍ରନାଳୀ ଇତ୍ୟାଦି ଆଭ୍ୟନ୍ତରୀଣ ଅଙ୍ଗପ୍ରତ୍ୟଙ୍ଗ ବାହାର କରିଦେଲେ ଏବଂ ସେଥିରେ ଲୁଣ ଦେଇ ସୂର୍ଯ୍ୟକିରଣରେ ଶୁଖାଇଲେ । ତାପରେ ସେମାନେ ଏଇ ଶବଟିକୁ ଧରି ଏକହଜାର ମାଇଲ୍ ବ୍ୟାପୀ ଦୁର୍ଗମପଥ ଅତିକ୍ରମ କରି ପ୍ରାୟ ଏକବର୍ଷ ପରେ ଫେବୃଆରି ୧୮୭୪ରେ ଜାଞ୍ଜିବାର ସମୁଦ୍ର କୂଳରେ ପହଞ୍ଚିଲେ । ଏହି ଦୀର୍ଘ ଯାତ୍ରା ଶେଷ ହେବା ପୂର୍ବରୁ ଦଶ ଜଣ ଆଫ୍ରିକୀୟ ରାସ୍ତାରେ ପ୍ରାଣ ହରାଇଥିଲେ । ବାକି ଯେଉଁ ପଚାଶ ଜଣ ସୌଭାଗ୍ୟବଶତଃ ବଞ୍ଚି ଜାଞ୍ଜିବାରରେ ପହଞ୍ଚିଲେ, ସେମାନଙ୍କୁ ବ୍ରିଟିଶ କନ୍‌ସଲର୍ କର୍ତ୍ତୃପକ୍ଷ ଦୈନିକ ହାରରେ କେବଳ ସାଧାରଣ ମଜୁରି ଦେଇଥିଲେ । ଅବଶ୍ୟ ରୟାଲ୍ ଜିଓଗ୍ରାଫିକାଲ୍ ସୋସାଇଟି ଗୋଟିଏ ପଦକ ଦେଇଥିଲା । ସେ ଯାହାହେଉ, ଗୋଟିଏ ମୃତ ଶରୀର ପାଇଁ ଅନ୍ୟ ସୁସ୍ଥ ସବଳ ଦଶ ଜଣ ବ୍ୟକ୍ତି ଯେ ମରି ପାରନ୍ତି—ତାହା ବଡ଼ ବିସ୍ମୟକର । ବେଳେବେଳେ ଶବ ଯେ ଜୀବଠାରୁ ବଳିଯାଏ । ତାର ସୂଚନା ଏହି ଘଟଣା ଦେଇଥାଏ ।

ବାସ୍ତବିକ ଯୁଗଯୁଗ ଧରି ମଣିଷ ମୃତ ଶରୀର ପାଇଁ ଚିନ୍ତିତ ହୋଇଛି—କେତେବେଳେ ଏହା ଅନ୍ୟର ଶରୀର ପାଇଁ ତ, କେତେବେଳେ ନିଜ ଶରୀର ପାଇଁ । ହିନ୍ଦୁଧର୍ମାବଲମ୍ବୀମାନେ ବିଶ୍ୱାସ କରନ୍ତି—ଯେମିତି ସେମାନଙ୍କ ପୁତ୍ରମାନେ ଶ୍ମଶାନକୁ ଶବ ନେଇ ସେଠାରେ ବୈଦିକ ଘାଟରେ ଶବଦାହ କରନ୍ତୁ । ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦନ କରିବାକୁ ମୁଖ୍ୟତଃ ପୁତ୍ରସନ୍ତାନର ଆବଶ୍ୟକତା ରହିଛି ବୋଲି କେତେକ ଧର୍ମଗ୍ରନ୍ଥରେ ଉଲ୍ଲେଖ କରାଯାଇଛି । ଯଦି କୌଣସି ଶବକୁ ଅବହେଳିତ ଅବସ୍ଥାରେ ଯତ୍ର ତତ୍ର ଫୋପାଡ଼ି ଦିଆଯାଏ, ଯାହା ଫଳରେ ବିଲୁଆ, ଚିଲ, ଶାଗୁଣା-ମାନେ ଶବକୁ ଖଣ୍ଡ ଖଣ୍ଡ କରି ଖାଆନ୍ତି କିମ୍ବା ଶବଟି ପଚିସଢ଼ି ପୋକଯୋକରେ

ସାଲ୍‌ବାଲ୍ ହୁଏ, ତାହାହେଲେ ସେହି ଲୋକର ସାଗ୍ରଜୀବନର ଅର୍ଜିତ ଧର୍ମ ଓ କୃତ ହିତକାର୍ଯ୍ୟ ପାଣିରେ ପଡ଼ିଗଲା—ସେ ପରଲୋକର ଅନନ୍ତ ନର୍କର ପାତ୍ର ହୁଏ ।

ଏହି ଧାର୍ମିକ ବିଶ୍ୱାସର ବାସ୍ତବତାକୁ ହୁଏତ ଆମେ ପ୍ରତ୍ୟାଖ୍ୟାନ କରିପାରୁ; କିନ୍ତୁ ଆମକୁ ସ୍ୱୀକାର କରିବାକୁ ପଡ଼ିବ ଯେ, ଜୀବିତାବସ୍ଥାରେ ଆମେ ଯେମିତି ଶରୀରର ଯତ୍ନ ନେଉଥାଉଁ, ମରିବା ପରେ ଆମ ଶରୀର କେମିତି ଭଲ ରକ୍ଷି ରହିପାରିବ—ସେହି ସମ୍ପର୍କରେ ମଧ୍ୟ ଚିନ୍ତିତ ହେବାକୁ ପଡ଼େ । ମଣିଷର ଜୀବନ୍ତ ଶରୀରର ଯେମିତି ଆଦରଣୀୟ, ତା'ର ଶବ ତଦପେକ୍ଷା କିଛି କମ୍ ମହତ୍ତ୍ୱପୂର୍ଣ୍ଣ ନୁହେଁ । ଏହା ଏକ ନଗଣ୍ୟ ବିଷୟ ନ ହୋଇପାରେ ।

ଜେରେମି ବେନ୍ଥାମ (୧୭୪୮—୧୮୩୨) ଇଂଲଣ୍ଡର ଜଣେ ବରିଷ୍ଠ ରାଜନୈତିକ ଚିନ୍ତାନାୟକ । ତାଙ୍କ ବିଚାରର ମୂଳମନ୍ତ୍ର ହେଉଛି—ସର୍ବାଧିକ ପ୍ରଜାଙ୍କ ଉପର ସର୍ବାଧିକ ସୁଖ ଦେଇ ହେବ । ସମସ୍ତଙ୍କୁ ସୁଖ ଦେବା ପାଇଁ ଚିନ୍ତା କରୁକରୁ ସେ ଗୋଟିଏ ପୁସ୍ତକ ରଚନା କରିଛନ୍ତି । ଯାହାର ଶୀର୍ଷକ ହେଉଛି, ''ଜୀବିତମାନଙ୍କ ପାଇଁ ମୃତ ଶରୀର ଆବଶ୍ୟକତା'' ଏହି ପୁସ୍ତକର ମୂଳବିଷୟ ହେଉଛି ଯେ, ଶବମାନଙ୍କୁ ପୋଡ଼ି କିମ୍ବା ପୋତି ନଷ୍ଟ କରିଦେବା ଅନୁଚିତ । ଏଗୁଡ଼ିକ ଏମିତି ସୁରକ୍ଷିତ ଅବସ୍ଥାରେ ରଖିବାକୁ ହେବ ଯେ, ମଲାଲୋକଟି ନିଜେ ନିଜର ଅବିକଳ ପ୍ରତିମୂର୍ତ୍ତି ହୋଇ ରହିବ ।

ବୋଧହୁଏ ଏଯାବତ୍ ଶବମାନ ଏମିତି ସୁରକ୍ଷିତଭାବେ ରଖାଯାଇଥିଲେ, ଶ୍ମଶାନଭୂମିକୁ ପୃଥିବୀପୃଷ୍ଠରୁ ବିଲୋପ କରିଯାଇ ପାରିଥାନ୍ତା । ଲୋକମାନେ ଆଜି ଶବ ପୋଡ଼ିବା କିମ୍ବା ପୋତିବା ଅଥବା ଗଙ୍ଗା ନଦୀରେ ଭସାଇ ଜଳ ଦୂଷିତ କରିବା ଦୁଷ୍କର୍ମରୁ କ୍ଷାନ୍ତ ହୋଇଥାନ୍ତେ । ପୁଣି ଶ୍ମଶାନ—ଉଚ୍ଛେଦ ହୋଇଯିବା ଯୋଗୁଁ ଭୂତ ପ୍ରେତ ସବୁ କେଉଁଆଡ଼େ ଅଦୃଶ୍ୟ ହୋଇ ଆତ୍ମଗୋପନ କରିଥାନ୍ତେ ଏବଂ ସେଠାରେ ଡାହାଣୀ, ଡାକିଣୀ, ଯୋଗିନୀମାନଙ୍କର ଭୟଙ୍କର ଖଲଖଲା ନାଦ ତଥା ପେଚା, ଭଇରବର ଅଶୁଭ ବିପଦସଙ୍କେତ ହ୍ରାସ ପାଇଥାନ୍ତା ।

ଏହାଦ୍ୱାରା ଶ୍ମଶାନର ସତ୍ତା ଯାହାହେଉନା କାହିଁକି, ମଣିଷର ଚାଲିଚଳନ ଓ ଦୃଷ୍ଟିଭଙ୍ଗୀରେ କେଉଁ ସୁଦୂରପ୍ରସାରୀ ବୈପ୍ଳବିକ ପରିବର୍ତ୍ତନ ସଂଘଟିତ ହୋଇପାରିବ, ତାହା ଆଲୋଚନା କରାଯାଉ । ଏହି ପରିପ୍ରେକ୍ଷୀରେ ଆମେ ପୁଣି ଥରେ ବେନ୍ଥାମଙ୍କ ବିଷୟ ଉତ୍ଥାପନ କରିବା । ସେ ଲଣ୍ଡନସ୍ଥିତ ୟୁନିଭରସିଟି କଲେଜର ପ୍ରତିଷ୍ଠାତାଙ୍କ ମଧ୍ୟରୁ ଜଣେ । ଏହି କଲେଜ ପ୍ରତି ତାଙ୍କର ଗଭୀର ମମତା ଓ ବିଶ୍ୱାସ ମୃତ୍ୟୁଯାଏଁ ରହି ଆସିଥିଲା । ସେ ଘୋଷଣା କରିଥିଲେ ଯେ, ମୃତ୍ୟୁ ପରେ ତାଙ୍କ ମରଶରୀରକୁ ଉକ୍ତ କଲେଜ ନିଜ ଇଚ୍ଛାମୁତାବକ ବ୍ୟବହାର କରିପାରିବ ।

କଲେଜ କର୍ତ୍ତୃପକ୍ଷ ବେନ୍ଥାମଙ୍କ ଏହି ଘୋଷଣାନାମାର ଅର୍ଥ ବୁଝିଥିବା ଦୃଷ୍ଟି-କୋଣରୁ ବିଚାରକରି, ସେ ମରିବା ପରେ ତାଙ୍କ କଙ୍କାଳକୁ ସଂରକ୍ଷିତ କଲେ । କଙ୍କାଳ ଉପରେ ଏମିତ ଚର୍ମ ମହମ ଲେପିଲେ ଯେ, ତାହା ଜୀବନ୍ତ ବେନ୍ଥାମଙ୍କପରି ଦେଖାଗଲା । ତା' ଦେହରେ ତାଙ୍କର ସର୍ବୋତ୍କୃଷ୍ଟ ପୋଷାକ ପିନ୍ଧାଇ ଗୋଟିଏ ସ୍ୱଚ୍ଛ କାଚ ଆଲମାରି ଭିତରେ ବସାଇଦେଲେ ଓ ତାହା କଲେଜର କମିଟି ଗୃହରେ ରଖିଦେଲେ । ପ୍ରତିବର୍ଷ ନିୟମିତ ଭାବେ ଏହି ପ୍ରକୋଷ୍ଠରେ ଯେତେବେଳେ କଲେଜ ପରିଚାଳନା କମିଟିର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୁଏ, ସେତେବେଳେ ବେନ୍ଥାମଙ୍କ ଏହି ତଥାକଥିତ ଜୀବନ୍ତ ଶରୀରକୁ ସଭାପତି ବୋଲି ଆଖ୍ୟା ଦିଆଯାଏ ଏବଂ ବକ୍ତାମାନେ ତାଙ୍କୁ ଲକ୍ଷ୍ୟକରି କହିଥାନ୍ତି, 'ଉପସ୍ଥିତ; କିନ୍ତୁ ଭୋଟ ଦାନରୁ ବିରତ । ଏହି ପ୍ରକାରେ ବେନ୍ଥାମ ଶହେ ବର୍ଷରୁ ଉପରେ ପରିଚାଳନା-କମିଟିର ଅନ୍ୟାନ୍ୟ ସଦସ୍ୟମାନଙ୍କ ପରି 'ଭୋଟ ଦେଇ ନପାରିଲେ ମଧ୍ୟ ଉପସ୍ଥିତ ଥିଲେ'' ବୋଲି ଅଧିବେଶନର ବିବରଣୀରେ ବର୍ଷବର୍ଷ ଧରି ଲିଖିତ ହୋଇ ଆସୁଛି । ୧୯୭୮ ସାଲରେ ଉକ୍ତ କଲେଜର ୧୫୦ତମ ବାର୍ଷିକ ଉତ୍ସବରେ ଏହି ଅମର ମର-ଶରୀରକୁ ଯେମିତ ସ୍ୱତନ୍ତ୍ର ମର୍ଯ୍ୟାଦାର ସହିତ ପ୍ରଦର୍ଶନ କରାଯାଇଥିଲା, ତାହା ବିଶେଷ ଉଲ୍ଲେଖନୀୟ । ବାସ୍ତବିକ ମୃତାବସ୍ଥାରେ ଜଣେ ଯେମିତ ଉପସ୍ଥିତ ହୋଇପାରେ— ବେନ୍ଥାମଙ୍କ ଅମର ମରଶରୀର ଏହାର ଏକ ପ୍ରକୃଷ୍ଟ ଉଦାହରଣ ।

ବର୍ତ୍ତମାନ ଆମେ ଆମ ନିଜ କଥା କହିବା । ଜନ ଟାଇଂଟନ କିମ୍ବା ସାର୍ ଜନ୍ ଫ୍ରାଙ୍କଲିନ୍‌ଙ୍କ ପରି ଆମେ ଏମିତ କିଛି ଦୁଃସାହସିକ ମେରୁ-ଅଭିଯାନ କରିନାହୁଁ ଯେ, ଆମର ଶବ ନିଖୋଜ ହୋଇଗଲେ ମଧ୍ୟ ଗବେଷକମାନେ ଲକ୍ଷଲକ୍ଷ ଟଙ୍କା ବ୍ୟୟକରି ଆମକୁ ଠାବ କରିବେ । ଅଥବା ଜେରେମି ବେନ୍ଥାମ୍‌ଙ୍କ ପରି ଆମେ ଏମିତ କୌଣସି ୟୁନିଭର୍ସିଟି କଲେଜର ପ୍ରତିଷ୍ଠାତା ନୋହୁଁ ଯେ ଆମର ମରଶରୀର ଯୁଗଯୁଗ ଧରି ସୁରକ୍ଷିତ କାଚ ଆଲମାରି ମଧ୍ୟରେ ଶୋଭା ପାଉଥିବ । ସତ କଥା ହେଉଛି ଯେ ଆମେମାନେ ଅତି ସାଧାରଣ ଓ ମାମୁଲି ଲୋକ । ଆମେ ମଲେ ଆମ ନାଁ ମଧ୍ୟ କେହି ଧରିବେ ନାହିଁ; ଆଉ ଆମ ଶବ ସୁରକ୍ଷିତ କଥା ଉଠୁଛି କେଉଁଠି ? ଏହି ଦୃଷ୍ଟିରୁ ଅନ୍ୟ କାହାରି ଉପରେ ନିର୍ଭର ନ କରି ଆମେ ନିଜକଥା ନିଜେ ବୁଝିବା ଉଚିତ । ମରିବା ପରେ ଆମ ଶରୀର କ'ଣ ଅବସ୍ଥାନ ହେବ, ସେଇ ବନ୍ଦୋବସ୍ତ ଆମକୁ ଜୀବିତାବସ୍ଥାରେ ହିଁ କରାଇ ନେବାକୁ ପଡ଼ିବ ।

ମଣିଷ-ଜୀବନ କ୍ଷଣ ଭଙ୍ଗୁର ଏବଂ ନିତାନ୍ତ ଅନିଶ୍ଚିତ । କେଉଁ ମୁହୂର୍ତ୍ତରେ ଆମ ଜୀବନଦୀପ ନିର୍ବାପିତ ହେବ —ତାହା କିଏ କହିବ ? ଏହି ଦୃଷ୍ଟିରୁ ଆମେ ଆଜି କାଳକ୍ଷେପଣ ନୀତି ଅନୁସରଣ ନ କରି ତୁରନ୍ତ ଉପରୋକ୍ତ ଭବିଷ୍ୟତ ଯୋଜନାକୁ ଚୂଡ଼ାନ୍ତ କରିବାକୁ ପଡ଼ିବ । ଏଥିପାଇଁ ଆମକୁ ସାହାଯ୍ୟ କରିବାକୁ ଯୁକ୍ତରାଷ୍ଟ୍ରରେ

ଅଭିବେନ୍ ଆବ୍ରାହମ୍‌ଙ୍କ ଦ୍ୱାରା ପରିଚାଳିତ ଅମେରିକାନ୍ କ୍ରାଇଓଜେନିକ୍‌ସ ସୋସାଇଟି ଓ କେତେକ ଇନ୍‌ସ୍ୟୁରାନ୍‌ସ କମ୍ପାନୀ ପ୍ରତିଷ୍ଠିତ ହୋଇଛି । ଏହି ସଂସ୍ଥାର କାର୍ଯ୍ୟସୂଚୀ ଅନୁସାରେ ଆମେ ମୃତ୍ୟୁ ହେଲେ ହିଁ ଆମକୁ ତରଳ ଯବକ୍ଷାରଜାନରେ ଗାଧୋଇ ଅତି ନିମ୍ନ ଉତ୍ତାପର-ବେଷ୍ଟନୀ ମଧ୍ୟରେ ଅବଶ ଭାବ ରଖାହେବ । ଫଳରେ ଆମର ମୃତ ଶରୀର ପଚିସଢ଼ି ନଯାଇ ସତେଜ ହୋଇ ରହିଥିବା ଜେରେମି ବେନ୍ଥାମଙ୍କ ତଥାକଥିତ ଜୀବନ୍ତ ଶବଠାରୁ ଏହା ଯେ ଗୁଣାତ୍ମକ ଦୃଷ୍ଟିରୁ ଯଥେଷ୍ଟ ଉନ୍ନତ, ଏଥିରେ ଦ୍ୱିମତ ନାହିଁ । କାରଣ ବେନ୍ଥାମଙ୍କ ଶରୀର ଭିତରୁ ବିଭିନ୍ନ ମୁଖ୍ୟ ଅଙ୍ଗ ପ୍ରତ୍ୟଙ୍ଗ ବାହାର କରିଦେଇ ତା' ସ୍ଥାନରେ ମସଲା ଭର୍ତ୍ତି ରଖାଯାଇଥିବା ସ୍ଥଳେ, ଆମ ମୃତ ଶରୀର ଭିତରେ ଥିବା ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଯେମିତି ସେମିତି ରହିଥିବ । କେବଳ ସେତିକି ନୁହେଁ; ଜେରେମି ବେନ୍ଥାମଙ୍କୁ ଆମେ ଯେତେ ଚେଷ୍ଟାକଲେ ମୁଦ୍ଧା ଅଉ ବଞ୍ଚାଇ ପାରିବା ନାହିଁ; କିନ୍ତୁ ଅଭିବେନ ଅବ୍ରାହମଙ୍କ ଶୀତଳ ଭଣ୍ଡାରରେ ଥିବା ଆମ ମୃତ ଶରୀରକୁ ଜୀବନ୍ୟାସ ଦେଇ ତାକୁ ପୁନର୍ଜୀବିତ କରିପାରିବ—ଅବଶ୍ୟ ଯାନ୍ତ୍ରିକ ଭେଷଜ ବିଜ୍ଞାନରେ ଲାଗିଥିବା ଗବେଷଣା ସଫଳ ହୋଇପାରିଲେ । ବୋଧହୁଏ ଏମିତି ଗୋଟିଏ ଦିନ ଆସିବ ଯେ, ପରଲୋକ ବୋଲି ଆଉ କିଛି ରହିବ ନାହିଁ ଏବଂ ଯମରାଜାଙ୍କ ସାମ୍ରାଜ୍ୟ ବିଲୁପ୍ତ ହୋଇଯିବ ।

ଆମ ମୃତ ଶରୀରକୁ ଏପରି ଅମର କରିବା ପାଇଁ ବର୍ତ୍ତମାନ ଦରଦାମ୍ ପରିସ୍ଥିତିରେ ପ୍ରାୟ ୧୨୫,୦୦୦ ଡଲାର ଆବଶ୍ୟକ ବୋଲି ଉକ୍ତ କ୍ରାଇଓଜେନିକ୍ ସୋସାଇଟିର ବିବରଣୀରୁ ଜଣାପଡ଼େ । ତେବେ ପ୍ରଶ୍ନ ଉଠୁଛି, ଆମେ ଏତେ ପରିମାଣରେ ଅର୍ଥ ବ୍ୟୟ କରିବାକୁ କ'ଣ ପ୍ରସ୍ତୁତ ? ବୋଧହୁଏ ସାରା ଜୀବନରେ ସ୍ୱାସ୍ଥ୍ୟରକ୍ଷା ପାଇଁ ଡାକ୍ତରୀ ଔଷଧପତ୍ର ବାବଦରେ ଆମକୁ ଯେତେ ଅର୍ଥ ଖର୍ଚ୍ଚ କରିବାକୁ ପଡ଼ୁଛି, ତାଠାରୁ ସାମାନ୍ୟ ଅଧିକ ଅର୍ଥ ଏଇ ସୋସାଇଟିକୁ ଦେଲେ, ସେ ଆମ ଶବ ସଂରକ୍ଷଣ ଦାୟିତ୍ୱ ନେବ ।

ଏହା ସତ୍ତ୍ୱେ ଆମମାନଙ୍କ ମଧ୍ୟରେ ଏମିତି କେତେକ ଲୋକ ଅଛନ୍ତି, ଯେଉଁମାନେ ଇହଜୀବନରେ ସୁଖ ସମ୍ଭୋଗ ପାଇଁ ଅର୍ଥବ୍ୟୟ ନ କରି ଧନ ସଞ୍ଚୟ କରୁଛନ୍ତି । ସେମାନଙ୍କ ଏତାଦୃଶ କୃପଣ ପଣରେ ମୂଳ କାରଣ ହେଉଛି ଯେ, ଏହି ସଞ୍ଚିତ ଅର୍ଥରେ ସେମାନେ ନିଜ ନିଜ ଶବକୁ ସଜଫୁଲ ପରି ସାଇତି ଚିରଦିନ ପାଇଁ କ୍ରାଇଓଜେନିକ୍ ସୋସାଇଟିର ହେପାଜତ ନାମେ ସଜଫୁଲ ପରି ସାଇତି ରଖିପାରିବେ । କେବଳ ସେତିକି ନୁହେଁ, ଦିନେ ନା ଦିନେ ଯୀଶୁଖ୍ରୀଷ୍ଟଙ୍କପରି ପୁନର୍ଜୀବିତ ହେବାର ସମ୍ଭାବନା ଥିବା ଯୋଗୁଁ ସେମାନେ ମନେ ମନେ ଅତ୍ୟନ୍ତ ଅଧିକ ଉତ୍ଫୁଲ୍ଲିତ ହେଉଛନ୍ତି । ଏହି ପୃଷ୍ଠଭୂମିରେ ମନେହୁଏ ଯେ, କ୍ରମେ କ୍ରମେ ଜୀବଠାରୁ ଶବ ଅଧିକ ମହତ୍ତ୍ୱ-ପୂର୍ଣ୍ଣ ହେବ ।

# ନିକାଳ ଓ ଜନ୍ମ ମୃତ୍ୟୁ ରହସ୍ୟ

କଥିତ ଅଛି ଯେ, ବୁଦ୍ଧଦେବ ଯେତେବେଳେ ଜନ୍ମଗ୍ରହଣ କଲେ, ପୃଥିବୀରେ ବହୁ ଅଲୌକିକ ଘଟଣାମାନ ଘଟିଥିଲା । ରୋଗୀମାନେ ରୋଗମୁକ୍ତ ହେଲେ । ଅନ୍ଧମାନେ ଦୃଷ୍ଟିଶକ୍ତି ଫେରିପାଇଲେ । ଗଛଲତାରେ ଥିବା କଢ଼ମାନେ ଫୁଟି ସୁଗନ୍ଧ ପ୍ରସାରିତ କଲେ । ଏମିତି କେତେ ଜଣ ଆନନ୍ଦମୟ ଶୁଭଙ୍କର ଘଟଣା ଅଧିବାସୀ ଦେଖିବାକୁ ପାଇଲେ ।

ଧରିନିଅ, ଏମିତି ଏକ ଦୁର୍ଲଭ ମୁହୂର୍ତ୍ତ ନିକଟ ଭବିଷ୍ୟତରେ ପୁଣି ଥରେ ଆମେ ଅନୁଭବ କରିବା । ଏହି ଅବସରରେ ଆମେ ଆଶା କରିବା ଯେ, ରୁଷ ଓ ଆମେରିକା ବୈଶ୍ୱ-ମନୋଭାବ ଛାଡ଼ି ପରସ୍ପର ସହିତ କରମର୍ଦ୍ଦନ କରିବେ ଏବଂ ପୃଥିବୀକୁ ଆଣବିକ ଧ୍ୱଂସରୁ ରକ୍ଷାକରିବା ପାଇଁ ଅସ୍ତ୍ରଶସ୍ତ୍ରର ଭଣ୍ଡାର ନଷ୍ଟ କରିଦେବେ । ଏମିତି ଏକ ଅତ୍ୟାଶ୍ଚର୍ଯ୍ୟ ଘଟଣା ଘଟିଲେ ମଧ୍ୟ ଆମେ କଣ କହିପାରିବା ଯେ, ଏହି ସଭ୍ୟତା ଚିରନ୍ତନ ହୋଇ ରହିବ ? ପ୍ରକାରାନ୍ତରେ, ଏହି ମାନବ ସଭ୍ୟତାର ଆୟୁଷ ସୀମିତ କି ନା । ଏହା କାଳଜୟୀ ! ଯଦି ଆଣବିକ କିମ୍ବା ଅନ୍ୟ କୌଣସି ଆତ୍ମଘାତୀ କାର୍ଯ୍ୟରେ ଲିପ୍ତ ନ ହେଲେ ଆମର ସଭ୍ୟତା ଅନନ୍ତ କାଳଯାଏଁ ତିଷ୍ଠି ରହିପାରିବ କି ? ବୈଜ୍ଞାନିକ ଓ ଦାର୍ଶନିକମାନେ ଏହି ପ୍ରଶ୍ନର ଉତ୍ତର ବହୁଦିନ ତଳରୁ ବିଶ୍ଳେଷଣ କରି ଖୁବ୍ ନୈରାଶ୍ୟଜନକ ମତବ୍ୟକ୍ତ କରୁଛନ୍ତି । ସେମାନେ କହନ୍ତି ଯେ, ଆମର ଶତଚେଷ୍ଟା ସତ୍ତ୍ୱେ ଏହି ସଭ୍ୟତା ଦିନେନା ଦିନେ ଧ୍ୱଂସପ୍ରାପ୍ତ ହେବ; କାରଣ ସଭ୍ୟତାର ଧ୍ୱଂସ ପାଇଁ ଆମେ ଯେତେଦୂର ଦାୟୀ ହୋଇଁ, ତା ଠାରୁ ଅଧିକ ଦାୟୀ ପ୍ରକୃତି ବା ପରମେଶ୍ୱର ।

ବର୍ତ୍ତମାନ ଆମର ଯେଉଁ ଯୁଗ ଚାଲିଛି ତାହା ଏଗାର ନିୟୁତ ବର୍ଷ ପୂର୍ବରୁ ହୋଇଛି । ବୈଜ୍ଞାନିକ ଗବେଷଣାରୁ ଜଣାଯାଏ, ଏହା ପନ୍ଦର ନିୟୁତବର୍ଷ ଯାଏଁ

ଶେଷ ହେବ । ତା'ପରେ ସମସ୍ତ ଜୀବଜଗତ ଧରାପୃଷ୍ଠରୁ ସମ୍ପୂର୍ଣ୍ଣ ଭାବେ ଲୋପ ପାଇଯିବ । ହୁଏତ ଏଇ ଜୀବ-ସଂହାର ସମ୍ପର୍କରେ ବହୁ ଲୋକ ଚିନ୍ତିତ ହେବେ ନାହିଁ କାରଣ ବ୍ୟକ୍ତିଗତ ଭାବେ ଆମର ଆୟୁଷ ଯେତେବେଳେ ପ୍ରାୟ ଶହେବର୍ଷ ଠାରୁ ଅଧିକ ନୁହେଁ, ଆମେ କାହିଁକି ଆଗାମୀ ନିୟୁତ-ନିୟୁତ ବର୍ଷ ବିଷୟରେ ଭାବି ଆମର ସମୟ ନଷ୍ଟ କରିବୁ ? ତଥାପି ବିଶାଳ କିମ୍ବା ଅନନ୍ତ ସମୟ-ସ୍ରୋତ ବିଷୟରେ ଭାବିବାବେଳେ ଆମେ ଶହେ ଦେଢ଼ଶହ ବର୍ଷ ମଧ୍ୟରେ ଆମର ଦୃଷ୍ଟି ସୀମିତ ନରଖି ନିୟୁତ-ନିୟୁତ ବର୍ଷ ସମ୍ପର୍କରେ ଅବଶ୍ୟ ଚିନ୍ତା କରିବା ।

ଗତ ଦୁଇଶହ ସ୍ୱଳଣ ନିୟୁତ ବର୍ଷର ସୌରମଣ୍ଡଳୀୟ ଇତିହାସ ପ୍ରତି ଦୃଷ୍ଟି ଦେଲେ ଆମେ ଜାଣିପାରୁଁ ଯେ, ପ୍ରାୟ ପ୍ରତି ଛବିଶ ନିୟୁତବର୍ଷ ବ୍ୟବଧାନରେ ଥରେ ଏହି ପୃଥିବୀବକ୍ଷର ସମସ୍ତ ଜୀବଜଗତ ସମୂଳେ ଧ୍ୱଂସପ୍ରାପ୍ତ ହୋଇଥାନ୍ତି । ତା'ପରେ ପୁଣିଥରେ ନୂତନ ସଞ୍ଚାର ଘଟି ଛବିଶ ନିୟୁତବର୍ଷ ଯାଏଁ ଜଟିଳ ଜୀବମାନଙ୍କର କ୍ରମଶଃ ଉତ୍ପାତ ହୁଏ । ଏମିତ ସୃଷ୍ଟି ଓ ବିନାଶର ବିଚିତ୍ରା ଛବିଶନିୟୁତ ବର୍ଷ ଅବଧିରେ ପୁନଃପୁନ ଧାରା ଚାଲି ଆସିଛି । ଏହାର କାରଣ ଅନୁସନ୍ଧାନ କରିବା ପାଇଁ ବୈଜ୍ଞାନିକମାନେ ଗବେଷଣା କରୁଅଛନ୍ତି ।

୧୯୭୭ ମସିହାରେ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଲୁଇସ୍ ଅଲଭେରଜ୍ ଓ ତାଙ୍କ ସହଯୋଗୀମାନେ ଇଟାଲୀରେ ପୁରାତନ ପ୍ରସ୍ତର ସମ୍ପର୍କରେ ଗବେଷଣା କରୁଥିଲେ । ଯେତେବେଳେ ପଞ୍ଚଷଠି ନିୟୁତବର୍ଷ ପୂର୍ବର ଶିଳା ଅଧ୍ୟୟନ କରିବା ସୁଯୋଗ ସେମାନେ ପାଇଥିଲେ । ଜଣାଯାଏ ଯେ, ଏହି ସମୟରେ ଆମ ପୃଥିବୀ ପୃଷ୍ଠରେ ରହୁଥିବା ବିଶାଳକାୟ ଡାଇନୋସର୍‌ମାନେ ହଠାତ୍ ଗଣ-ସଂହାରର ସମ୍ମୁଖୀନ ହୋଇଥିଲେ । ସେହି ଡାଇନୋସର୍‌ମାନେ ଦୀର୍ଘ ୧୬ କୋଟି ବର୍ଷ ଧରି ନିଜ ବଂଶ ବିସ୍ତାର କରି ଆସୁଥିଲେ ସେମାନେ ପାଞ୍ଚ ଛଅମାସ ମଧ୍ୟରେ କେମିତି ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲେ ? ଅଲଭେରଜ୍ ଏହାର କାରଣ ଜାଣିବା ପାଇଁ ଉକ୍ତ ପୁରାତନ ପ୍ରସ୍ତର ଉପରେ ଗବେଷଣା କରି ଜାଣିପାରିଲେ ଯେ, ସାଧାରଣ-ଶିଳା ଅପେକ୍ଷା ସେଥିରେ ଅଧିକା ତିରିଶିଗୁଣ ଇରିଡ଼ିୟମ୍ ଧାତୁ ରହିଛି । ଇରିଡ଼ିୟମ୍ ଧାତୁ ବିରଳ ମୃତ୍ତିକା-ପରିବାର-ଭୁକ୍ତ, ଯାହାକି ସାଧାରଣତଃ କ୍ଷୁଦ୍ରଗ୍ରହ ଓ ଉଲ୍କାରେ ଦେଖିବାକୁ ମିଳେ । ତେବେ ତାହା ପୃଥିବୀ ଗର୍ଭସ୍ଥ ଶିଳା ମଧ୍ୟରେ ଏତେ ମାତ୍ରାରେ ପ୍ରବେଶ କଲା କିପରି ?

ଯେତେଦୂର ସମ୍ଭବ, ପଞ୍ଚଷଠି ନିୟୁତବର୍ଷ ପୂର୍ବେ ଦଶ କିଲୋମିଟର ବ୍ୟାସ ବିଶିଷ୍ଟ ଗୋଟିଏ କ୍ଷୁଦ୍ରଖଣ୍ଡ ସହିତ ପୃଥିବୀର ମୁହାଁମୁହିଁ ସଂଘର୍ଷ ଘଟିଲା । ଫଳରେ

ଅତ୍ୟଧିକ ଉତ୍ତାପ ସୃଷ୍ଟି ହୋଇ ଗ୍ରହଖଣ୍ଡରେ ଥିବା ଇରିଡ଼ିଅମ୍ ଧାତୁ ପୃଥିବୀର ଭୂଗର୍ଭରେ ପ୍ରବେଶ କଲା । ପୁଣି ଏହି ସଂଘର୍ଷ ଯୋଗୁଁ ଲକ୍ଷ ଲକ୍ଷ ଟନ୍ ଧୂଳିକଣା ଓ ଶିଳାଖଣ୍ଡ ଦ୍ୱାରା ଆକାଶ ଘନ ଅନ୍ଧକାର ଆଚ୍ଛାଦିତ ହୋଇ ରହିଲା । ତେଣୁ ସୂର୍ଯ୍ୟକିରଣ ପୃଥିବୀରେ ପହଞ୍ଚିପାରିଲା ନାହିଁ । ଫଳରେ ବୃକ୍ଷଲତାମାନ ଖାଦ୍ୟ ପ୍ରସ୍ତୁତ କରି ନପାରି ଶୁଖି ମରିଗଲେ । ଡାଇନୋସର୍‌ମାନେ ତୃଣଭୋଜୀ ହୋଇଥିବା ଯୋଗୁଁ କ୍ଷୁଧା ମେଣ୍ଟାଇ ନପାରି ମୃତ୍ୟୁବରଣ କଲେ ।

କିନ୍ତୁ ପ୍ରଶ୍ନ ହେଉଛି ଯେ, ଗ୍ରହଖଣ୍ଡମାନ ପ୍ରତି ଛବିଶି ନିୟୁତ ବର୍ଷ ଅନ୍ତରରେ ନିୟମିତ ଭାବେ କାହିଁକି ପୃଥିବୀ ସହିତ ସଂଘର୍ଷ କରିଆନ୍ତି ? ଏହା ବୁଝାଇବା ପାଇଁ ୧୯୮୪ ସାଲରେ ଆର୍. ଏ. ମୁଲର୍ ନାମକ ଜଣେ ବୈଜ୍ଞାନିକ ନେମେସିସ୍ ନାମକ ଏକ ସର୍ବନାଶୀ (ଷ୍ଟାର୍ ଅଫ୍ ଡୁମ୍) ନକ୍ଷତ୍ର ଧାର୍ଯ୍ୟ କୋଲ ଧାରା କରୁଛନ୍ତି । ଆମେ ଜାଣୁଁ ଯେ, ପୃଥିବୀର ନିକଟବର୍ତ୍ତୀ ତାରକା ହେଉଛି ସୂର୍ଯ୍ୟ । ତାପରେ ପ୍ରୋକ୍ସିମା ସେଣ୍ଟାଉରି (୪.୨ ଆଲୋକବର୍ଷ) ଓ ଆଲ୍ଫା ସେଣ୍ଟାଉରି (୪.୩ ଆଲୋକ ବର୍ଷ) ନାମକ ଦୁଇଟି ନକ୍ଷତ୍ର ଆମର ନିକଟବର୍ତ୍ତୀ ତାରକା । କିନ୍ତୁ ନେମେସିସ୍ ନକ୍ଷତ୍ର ସେଣ୍ଟାଉରି ତାରକା ଦୁଇଟିଠାରୁ ଆମର ଅଧିକ ନିକଟବର୍ତ୍ତୀ । ଏହା ଏକ ଅଣ୍ଡାକୃତ (ଏଲିପ୍ଟିକାଲ୍) କକ୍ଷରେ ଅନବରତ ବୁଲୁଥାଏ ତାକୁ କକ୍ଷ ପଥରେ ଥରେ ବୁଲିବା ପାଇଁ ଛବିଶି ନିୟୁତ ବର୍ଷ ଲାଗିଥାଏ । ଏହାର କକ୍ଷ ବୃତ୍ତାକାର ହୋଇ ନଥିବା ଯୋଗୁଁ ପୃଥିବୀ ଠାରୁ ଏହାର ଦୂରତ୍ୱ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ହୋଇଥାଏ । ଏହାର ସର୍ବାଧିକ ଦୂରତ୍ୱ କୋଡ଼ିଏଶହ ପରାର୍ଦ୍ଧ (ଟ୍ରିଲିଅନ୍) କିଲୋମିଟର ହୋଇଥିବା ବେଳେ ନିକଟତମ ଦୂରତ୍ୱ ପାଞ୍ଚଶହ ପରାର୍ଦ୍ଧ କିଲୋମିଟର ହୋଇଥାଏ ।

୧୯୫୦ ମସିହାରେ ଜ୍ୟୋତିର୍ବିଜ୍ଞାନୀ ଡାନ୍‌ଉର୍ଟ ଲକ୍ଷ୍ୟ କରିଥିଲେ ଯେ ଆମଠାରୁ ପ୍ରାୟ ପାଞ୍ଚଶହ ପରାର୍ଦ୍ଧ କିଲୋମିଟର ଦୂରରେ ମହାକାଶରେ ଏମିତି ଏକ ବିଶାଳ ଅଞ୍ଚଳ ରହିଛି, ଯେଉଁଠାରେ କି ବହୁ ସଂଖ୍ୟାରେ ଧୂମକେତୁ ଓ ଉଲ୍‌କା ପୁଞ୍ଜିଭୂତ ହୋଇ ରହିଛି । ଯେତେବେଳେ ନେମେସିସ୍ ତାରକା ଆମର ନିକଟବର୍ତ୍ତୀ ହୁଏ, ସେ ଏହି ଉର୍ଟ-ଅଞ୍ଚଳ ମଧ୍ୟଦେଇ ଯିବାକୁ ବାଧ୍ୟ ହୁଏ । ତେଣୁ ମାଧ୍ୟାକର୍ଷଣ ଶକ୍ତିଯୋଗୁଁ ଉର୍ଟ ଅଞ୍ଚଳରେ ରହିଥିବା ଧୂମକେତୁ ଓ ଉଲ୍‌କାମାନ ଆଉ ପୂର୍ବପରି ନିଜ ନିଜ ଆସ୍ଥାନରେ ସ୍ଥିର ହୋଇ ରହିପାରନ୍ତି ନାହିଁ । ସେମାନେ ନିଜର ସ୍ଥିତାବସ୍ଥା ଓ ସ୍ୱରସାମ୍ୟ ହରାଇଥାନ୍ତି । ଏମିତି ପରିସ୍ଥିତିରେ ସୂର୍ଯ୍ୟର ମାଧ୍ୟାକର୍ଷଣ ଶକ୍ତି ଏହି ଅସ୍ଥିର ଧୂମକେତୁ ଓ ଉଲ୍‌କାମାନଙ୍କୁ ନିଜ ଆଡ଼କୁ ଟାଣିନିଏ । ଫଳରେ ଅଧାରାସ୍ତାରେ ପୃଥିବୀ ସହିତ ସେମାନଙ୍କର ଧକ୍କା ହେବା ସମ୍ଭାବନା ଦେଖାଦିଏ । ନେମେସିସ୍ ତାରକା ପ୍ରତି ଛବିଶ ନିୟୁତ ବର୍ଷରେ ଥରେ ଏହି ଉର୍ଟ-ଅଞ୍ଚଳ ଅତିକ୍ରମ କରୁଥିବା ଯୋଗୁଁ ପୃଥିବୀରେ ସମ୍ପୂର୍ଣ୍ଣ ଜୀବସଂହାର ପ୍ରତି ଛବିଶ ନିୟୁତ ବର୍ଷରେ ଥରେ ଘଟିଥାଏ ।

ପ୍ରାଚୀନ ଶିଳା-ଅଷ୍ଟସ୍ତରରୁ ଜଣାଯାଏ ଯେ, ଅନନ୍ତ ପ୍ରାୟ ୧୯୩,୧୭୫,୧୪୦, ୧୧୫,୯୦ ଉତ୍ପାଦ ନକ୍ଷତ୍ରଦଳ ପୂର୍ବେ ଥରକୁ ଥର ପ୍ରାୟ ପ୍ରତ ଛବିଶ ନକ୍ଷତ୍ରବର୍ଷ ଅବଧିରେ ଗଣ-ଜୀବ ସଂହାର ପୃଥିବୀ ପୃଷ୍ଠରେ ଦେଖା ଦେଇଛି ।

ଏହି ପରିପ୍ରେକ୍ଷୀରେ ଆମର ଏଠାର ନକ୍ଷତ୍ର ବର୍ଷର ଏକ ପୁରାତନ ମାନବ-ସଭ୍ୟତା ଆଉ ପନର ନକ୍ଷତ୍ର ବର୍ଷ ପରେ ଯେ ଧ୍ୱଂସପ୍ରାପ୍ତ ହେବ—ଏହା ସୁନିଶ୍ଚିତ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଲଣ୍ଡନସ୍ଥିତ ରୟାଲ ଅଷ୍ଟ୍ରୋନମିକାଲ୍ ସୋସାଇଟି ତରଫରୁ ପ୍ରକାଶିତ ଜିଓଫିଜିକାଲ୍ ଜର୍ଣ୍ଣାଲ୍‌ର ଜୁନ୍ ୧୯୮୬ ସଂଖ୍ୟାରେ ଡଃ ଓମ୍‌ପ୍ରକାଶ ପାଣ୍ଡେ ଓ ଡଃ ଜନାର୍ଦ୍ଦନ ନେଗୀ ନାମକ ଜାତୀୟ ଜିଓଫିଜିକାଲ୍ ଗବେଷଣା ପ୍ରତିଷ୍ଠାନର (ହାଇଦ୍ରାବାଦ) ଦୁଇଜଣ ବୈଜ୍ଞାନିକ ନମେସିସ୍ ମତବାଦକୁ ଅସ୍ୱୀକାର କରିଛନ୍ତି । ସେମାନେ ପୁଣି ଦର୍ଶାଇଛନ୍ତି ଯେ, ଲୁଇସ୍ ଅଲ୍‌ଭେରେଜ୍‌ଙ୍କ ଗ୍ରହଖଣ୍ଡ-ତତ୍ତ୍ୱର ମଧ୍ୟ କୌଣସି ସତ୍ୟତା ନାହିଁ । ସେମାନଙ୍କ ମତରେ ପୃଥିବୀରେ ବାରମ୍ବାର ଯେଉଁ ଗଣଜୀବ-ସଂହାର ସଂଘଟିତ ହେଉଛି, ତାହା କୌଣସି ମହାକାଶୀୟ କାରଣରୁ ନୁହେଁ; ଏହାର ପ୍ରକୃତ କାରଣ ହେଉଛି ଯେ, ପୃଥିବୀର ଗର୍ଭ ବର୍ତ୍ତମାନ ଯାଏଁ ଖୁବ୍ ଉତ୍ତପ୍ତ ଓ ଅସ୍ଥିର ଅବସ୍ଥାରେ ରହିଛି । ତେଣୁ ନିର୍ଦ୍ଦିଷ୍ଟ ଅବଧିରେ ପ୍ରଚଣ୍ଡ ଭୂମିକମ୍ପମାନ ପୃଥିବୀରେ ଦେଖାଦିଏ ଓ ସମସ୍ତ ଜୀବସତ୍ତା ଲୋପ ପାଇଯାଏ । ସେମାନଙ୍କ ତଥ୍ୟ ପ୍ରମାଣ କରିବା ପାଇଁ ସେମାନେ ଅତୀତର ଗୋଟି ଉଲ୍ଲେଖନୀୟ ଆଗ୍ନେୟଗିରିର ଦୃଷ୍ଟାନ୍ତ ଦେଇଛନ୍ତି ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଆଲଭେରେଜ୍, ମ୍ୟୁଲର ଓ ନେଗୀ-ପାଣ୍ଡେଙ୍କ ମଧ୍ୟରେ ଜୀବ-ସଂହାରର କାରଣ ସମ୍ପର୍କରେ ମୌଳିକ ମତଭେଦ ରହିଛି । ତଥାପି ସେମାନେ ସମସ୍ତେ ଏକମତ ଯେ, ପ୍ରତ୍ୟେକ ଯୁଗର ଆୟୁଷ ସୀମିତ ଏବଂ ଆମେ ଯେକୌଣସି ଯୁଗ ବିଷୟରେ ବିଚାର କରୁଁ ନା କାହିଁକି, ତାର ନିଶ୍ଚିତ ଭାବେ ଅବସାନ ଘଟିବ ଏବଂ ତା ସ୍ଥାନରେ ଏକ ନୂତନ ଯୁଗର ଅଭ୍ୟୁଦୟ ଘଟିବ ।

ଏହି ସମ୍ପର୍କରେ ଆମେ ମୁନିଋଷିମାନଙ୍କ ମତ ବିଚାର କରିପାରୁଁ । ପୁରାଣକାରମାନେ ଉଦାହରଣ ଭାବେ ସତ୍ୟ,ତ୍ରେତୟା, ଦ୍ୱାପର,କଳିଯୁଗର ଉଲ୍ଲେଖ କରିଛନ୍ତି । ପୁଣି ସେମାନେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ନାମକ ତ୍ରିନାଥର କଳ୍ପନା କରିଛନ୍ତି । ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟି, ବିଷ୍ଣୁଙ୍କ ଦ୍ୱାରା ସ୍ଥିତି ଓ ମହେଶ୍ୱରଙ୍କ ଦ୍ୱାରା ପ୍ରଳୟକାଣ୍ଡ ନିରୂପିତ ଭାବେ ସଂଘଟିତ ହେଉଛି । ସୃଷ୍ଟି, ସ୍ଥିତି ଓ ପ୍ରଳୟ କ୍ରମାନ୍ୱୟରେ ଘଟିବା

ଏଇ ଜଗତର ଏକ ଧର୍ମ । ଏହା ଆଧୁନିକ ବିଜ୍ଞାନ ଦ୍ୱାରା ମୋଟାମୋଟି ଭାବେ ସମର୍ଥିତ ।

ଆମର ବର୍ତ୍ତମାନ ଯୁଗ ଆଉ ପନ୍ଦର ନିୟୁତ ବର୍ଷ ପରେ ଧ୍ୱଂସ ହୋଇଯିବା ପରେ ପୁଣି ସୃଷ୍ଟି ଆରମ୍ଭ ହେବ । ପ୍ରକୃତରେ ଆମର ମୃତ୍ୟୁ ଯେପରି ଅବଶ୍ୟମ୍ଭାବୀ, ପୁନର୍ଜନ୍ମ ତା' ଠାରୁ କିଛି କମ୍ ଅବଶ୍ୟମ୍ଭାବୀ ନୁହେଁ । କିନ୍ତୁ କେଉଁ ଉପାୟରେ ? ଏହାର ପ୍ରମାଣ ଡାର୍‌ୱିନ୍‌ଙ୍କ ପ୍ରତିଷ୍ଠିତ ଜୈବିକ ବିବର୍ତ୍ତନବାଦରେ ମିଳିପାରେ । ସୃଷ୍ଟିର ପ୍ରାଥମିକ ପର୍ଯ୍ୟାୟରେ ପ୍ରଥମେ ଏକ-କୋଷୀ ବିଶିଷ୍ଟ ପରଜୀବୀ ଜନ୍ମ ନେବ ଓ ତାହା କ୍ରମଶଃ ବିଭିନ୍ନ ସୋପାନ ମାଧ୍ୟମରେ ବିକଶିତ ହୋଇ ପରିଶେଷରେ ମାଙ୍କଡ଼ରୁ ମଣିଷରେ ରୂପାନ୍ତରିତ ହେବ । କିନ୍ତୁ ଡାର୍‌ୱିନ୍‌ଙ୍କ ଉକ୍ତ ତଥ୍ୟରେ ମଧ୍ୟ ଅପୂର୍ଣ୍ଣତା ରହିଛି । ବିବର୍ତ୍ତନ ଏକ ଅବିରତ ପ୍ରକ୍ରିୟା ହୋଇଥିବାବେଳେ ମଣିଷର ଶାରୀରିକ ବିବର୍ତ୍ତନ ଘଟି ଅନ୍ୟ ଏକ ପ୍ରକାର ଉନ୍ନତ ଜୀବ କାହିଁକି ବର୍ତ୍ତମାନଯାଏଁ ସୃଷ୍ଟି ହୋଇ ନାହିଁ ? ବିବର୍ତ୍ତନ କ୍ରିୟା ମଣିଷଠାରେ କାହିଁକି ହଠାତ୍ ବନ୍ଦ ହୋଇଗଲା ? ଏହାର ଉତ୍ତର ଦେବା ପାଇଁ ପୋଲିଓ ଟୀକାର ଉଦ୍ଭାବକ ବିଶିଷ୍ଟ ଭେଷଜବିଜ୍ଞାନୀ ଜୋନାସ୍ ଏଡ଼ୱାର୍ଡ଼ ସାଲ୍କ ମତ ଦେଲେ ଯେ, ପୂର୍ବେ ପ୍ରକୃତି ମଣିଷକୁ ନିୟନ୍ତ୍ରଣ କରୁଥିଲା । କିନ୍ତୁ ଆଜିକାଲି ମଣିଷ ଖୁବ୍ ଚତୁର ଓ ବିଜ୍ଞ ହୋଇଯାଇଥିବା ଯୋଗୁଁ ପ୍ରକୃତିକୁ ନିୟନ୍ତ୍ରଣ କରୁଛି । ତେଣୁ ଡାରୱିନ୍‌ଙ୍କ ଯୋଗ୍ୟତମର ଉଦ୍‌ବର୍ତ୍ତନ (ସର୍ଭାଇଭାଲ୍ ଅଫ୍ ଦ ଫିଟେଷ୍ଟ୍) ପରିବର୍ତ୍ତେ ବିଜ୍ଞତମର ଉଦ୍‌ବର୍ତ୍ତନ (ସର୍ଭାଇଭାଲ୍ ଅଫ୍ ଦ ଓ୍ୱାଇଜେଷ୍ଟ) ବର୍ତ୍ତମାନ କାମ କରୁଛି ।

କିନ୍ତୁ ଏଥିରେ ସନ୍ତୁଷ୍ଟ ନ ହୋଇ କେତେକ ବୈଜ୍ଞାନିକ ଡାରୱିନ୍‌ଙ୍କ ତଥ୍ୟକୁ ସମ୍ପୂର୍ଣ୍ଣ ଭାବେ ପ୍ରତ୍ୟାଖ୍ୟାନ କରିଛନ୍ତି । ଭାରତୀୟ ବିଜ୍ଞାନ କଂଗ୍ରେସର ୭୪ତମ ଅଧିବେଶନରେ ଭାରତୀୟ ଆଷ୍ଟ୍ରୋଫିଜିକାଲ୍ ଗବେଷଣା କେନ୍ଦ୍ରର ଡକ୍ଟର ନରେନ କୁମାର ଶାହା କହିଛନ୍ତି ଯେ, ମନୁଷ୍ୟ ଏଇ ପୃଥିବୀରେ ଜାତ ନ ହୋଇ ମହାଶୂନ୍ୟରୁ ଆସିଛି । ବୋଡ଼ି-ଟିଟିସ୍‌ଙ୍କ ନିୟମାନୁସାରେ ମଙ୍ଗଳ ଓ ବୃହସ୍ପତି ମଧ୍ୟରେ ଅନ୍ୟ ଏକ ଗ୍ରହ ରହିବା କଥା । ଏହି ଗ୍ରହଟି ବର୍ତ୍ତମାନ ନାହିଁ । କିନ୍ତୁ ୭୫୦ ଲକ୍ଷ ବର୍ଷ ପୂର୍ବେ ଥିଲା ଏବଂ ତାର ନାମ 'କୁମାର' ବୋଲି ଦିଆଯାଇଛି । ସେଠାରେ ଉନ୍ନତ ମଣିଷମାନେ ବସବାସ କରୁଥିଲେ । ସେମାନେ ବୁଝିବେ ଗ୍ରହଗ୍ରହାନ୍ତର ଯାତ୍ରା ସମେତ ବହୁ ବୈଜ୍ଞାନିକ ଓ କାରିଗରୀ କୌଶଳରେ ଅଭିଜ୍ଞ ଥିଲେ । ହଠାତ୍ ଆଣବିକ ବିସ୍ଫୋରଣ ଘଟି ଉକ୍ତ ଗ୍ରହଟି ଖଣ୍ଡବିଖଣ୍ଡିତ ହୋଇଗଲା । ଏହି ବିସ୍ଫୋରଣରୁ ଯେଉଁମାନେ ବଞ୍ଚିଗଲେ, ସେମାନେ ମହାକାଶ ଯାତ୍ରା ସହିତ ପରିଚିତ ଥିବାରୁ ପୃଥିବୀକୁ ଚାଲି

ଆସିଲେ ଓ ଡାଇନୋସର୍ସ ମାନ ପୃଥିବୀରେ ରହିଲେ । କିନ୍ତୁ ପ୍ରତ୍ନତତ୍ତ୍ୱବିତ୍ ଓ ଐତିହାସିକମାନେ ତତ୍କାଳୀନ ପୃଥିବୀରେ ଏପରି ଉନ୍ନତଧରଣର ମଣିଷ ବସବାସ କରିଥିବା କଥାକୁ ଅସ୍ୱୀକାର କରୁଛନ୍ତି । ତେଣୁ ଡଃ ଶାହାଙ୍କର ତତ୍ତ୍ୱ ଗ୍ରହଣଯୋଗ୍ୟ ହେଉ ନାହିଁ ।

ଡଃ ଶାହାଙ୍କର ତଥ୍ୟରେ ଦୁର୍ବଳତା ଥିଲେ ମଧ୍ୟ ମନୁଷ୍ୟ କିଛି ପରିମାଣରେ ବହିରାଗତ ବୋଲି ଅନ୍ୟ ଏକ ମତବାଦରୁ ସିଦ୍ଧ ହୁଏ । ମହାକାଶରୁ ଆଗତ ଭୂତାଣୁ ଯୋଗୁଁ ପୃଥିବୀରେ ବାରମ୍ବାର ଜୀବମାନଙ୍କର ଶାରୀରିକ ପରିବର୍ତ୍ତନ ଘଟୁଛି ବୋଲି ବିଶିଷ୍ଟ ବ୍ରିଟିଶ ଜ୍ୟୋତିର୍ବିଜ୍ଞାନୀ ପ୍ରଫେସର ଫ୍ରେଡ୍ ହଏଲ୍ ଯେଉଁ ମତ ପ୍ରକାଶ କରିଛନ୍ତି, ତାହା ପ୍ରଣିଧାନଯୋଗ୍ୟ । ନକ୍ଷତ୍ରମାନଙ୍କ ମଧ୍ୟରେ ଥିବା ବୃହଦାକାରଟି ବାଷ୍ପୀୟ ମେଘରେ ଜୈବିକ ଅଣୁ ପରିଲକ୍ଷିତ ହୋଇଛି; ଯାହାକି ପୃଥିବୀରେ ଥିବା ବ୍ୟାକ୍ଟେରିଆର ସମଧର୍ମୀ । ଏହି ମେଘଖଣ୍ଡରୁ କୋଟି କୋଟି ଭୂତାଣୁ ପୃଥିବୀର ବାୟୁମଣ୍ଡଳରେ ପ୍ରତିବର୍ଷ ପ୍ରବେଶ କରୁଛନ୍ତି । ଏମାନେ ପୃଥିବୀର ସଜୀବ ପ୍ରାଣୀ ଦେହରେ ପ୍ରବେଶ କରି ସେମାନଙ୍କ ବଂଶାଣୁରେ ପରିବର୍ତ୍ତନ ଘଟାଇଥାନ୍ତି, ଯାହା-ଦ୍ୱାରା ଉନ୍ନତ ଜୀବମାନଙ୍କର ସୃଷ୍ଟି ସମ୍ଭବପର ହୋଇଥାଏ । ତେଣୁ ଡାରୱିନ୍ ଜୀବ ସୃଷ୍ଟି ଓ ବିକାଶ ପାଇଁ କେବଳ ପୃଥିବୀର ପରିସ୍ଥିତି ଦାୟୀ ବୋଲି ଯାହା କହିଛନ୍ତି, ତାହା ଅସମ୍ପୂର୍ଣ୍ଣ ଜଣାପଡ଼ୁଛି ।

ମହାଶୂନ୍ୟରୁ ମଣିଷ ନ ଆସିଥିଲେ ମଧ୍ୟ ମହାକାଶଠାରୁ ପ୍ରତିକ୍ରିୟା ଯୋଗୁଁ ଭୂପୃଷ୍ଠରେ ବର୍ତ୍ତମାନର ଉନ୍ନତ ମଣିଷର ଯେ ଉଦ୍ଭବ ହୋଇଛି, ଏହା ବୈଜ୍ଞାନିକ-ମାନେ ବିଶ୍ୱାସ କରୁଛନ୍ତି । ଏହି ପ୍ରସଙ୍ଗରେ କୁହାଯାଇପାରେ ଯେ, ମଣିଷର ବିକାଶ ଓ ସୃଷ୍ଟି କେବଳ ପୃଥିବୀ-ସମ୍ବନ୍ଧୀୟ କାରଣରୁ ଘଟେ ନାହିଁ । ଏଥିପାଇଁ ମହାକାଶଠାରୁ କିମ୍ବା ମହାଶୂନ୍ୟର ଭୂମିକା ଅବଶ୍ୟ ରହିଛି । ତେଣୁ ପୁରାଣକାରମାନେ ଜୀବର ସୃଷ୍ଟି ଓ ବିକାଶ ସମ୍ପର୍କରେ ବୁଝାଇବାକୁ ଯାଇ ଯିବାଠ ତଥା ବିଶ୍ୱବ୍ରହ୍ମାଣ୍ଡର ଯେଉଁ ଭୂମିକା ଅବତାରଣା କରିଛନ୍ତି, ତାହା ଯଥାର୍ଥ ମନେହୁଏ ।



# ଉଡ଼ନ୍ତା ବସ୍ତୁ ଉପରେ ଅନୁସନ୍ଧାନ

ବେଳେ ବେଳେ ଅଦ୍ଭୁତ ସମ୍ବାଦମାନ ଶୁଣିବାକୁ ମିଳିଯାଏ । ୧୯୮୮ ସାଲ ଜାନୁଆରୀ ମାସରେ ଏମିତି ଏକ ଅସମ୍ଭବ ଘଟଣା ସମ୍ପର୍କରେ ରଏଟର ସଂସ୍ଥା ତରଫରୁ ବିସ୍ତୃତ ବିବରଣୀ ପ୍ରକାଶିତ ହୋଇଥିଲା । ଅଷ୍ଟ୍ରେଲିଆର ପର୍ଥ ସହରରୁ ମେଲବୋର୍ଣ୍ଣ ଅଭିମୁଖେ ପ୍ୟାଟ୍ରିକ ନୋଲେସ ନାମକ ଜଣେ ଯୁବକ ସପରିବାର କାର୍ ଯୋଗେ ଯାଉଥିଲେ । ରାସ୍ତାରେ ନ୍ୟୁଲରବୋରପ୍ଲେନ ନାମକ ଏକ ନିର୍ଜନ ଅଞ୍ଚଳରେ ଗାଡ଼ି ଯେତେବେଳେ ପହଞ୍ଚିଲା, ସେମାନେ ହଠାତ୍ ଏକ ରହସ୍ୟମୟ ଉଡ଼ନ୍ତା ବସ୍ତୁର ସମ୍ମୁଖୀନ ହେଲେ । ଏହା ସର୍ବସାଧାରଣରେ ଅନ୍ଆଇଡେଣ୍ଟିଫାଇଡ୍ ଫ୍ଲାଇଂ ଅବଜେକ୍ଟ ବା ୟୁଫୋ ନାମରେ ସୁପରିଚିତ । ଏହି ବସ୍ତୁଟି ତାଙ୍କ ଗାଡ଼ିର ଚତୁର୍ଦ୍ଦିଗରେ ଘୂରିବାକୁ ଲାଗିଲା—ସତେ ଯେମିତି ସେ ତାଙ୍କ ବାଟ ଓଗାଳୁଛି । କିଛି ସମୟ ମଧ୍ୟରେ ସେ କାର୍ ଛାଦ ଉପରେ ଖୁବ୍ ଜୋର୍‌ରେ ବାଡ଼େଇ ହେଲା । ଏଥିରେ ନୋଲେସ୍ ଓ ଅନ୍ୟ ଆରୋହୀମାନେ ଖୁବ୍ ବ୍ୟସ୍ତ ଓ ଆତଙ୍କିତ ହୋଇ-ପଡ଼ିଲେ । ଗାଡ଼ିର ଷ୍ଟାର୍ଟ ବନ୍ଦ କରିଦେଇ ସାଙ୍ଗେ ସାଙ୍ଗେ ବାହାରକୁ ଡେଇଁ ପଡ଼ିଲେ ଓ ରାସ୍ତା କଡ଼ରେ ଥିବା ଗୋଟିଏ ବୁଦା ପଛପଟେ ଲୁଚିଗଲେ । ଅଳ୍ପ ସମୟ ପରେ ସେମାନେ ପୁଣି ଯେତେବେଳେ କାର୍ ପାଖକୁ ଆସିଲେ; ଦେଖିଲେ ଯେ, ଉଡ଼ନ୍ତା ବସ୍ତୁଟି ପୂର୍ବପରି ଗାଡ଼ି ଉପରେ ବସି ରହିଛି । ଦେଖିବା ମାତ୍ରେ ସେ ଗାଡ଼ିରୁ ଖସି ଆସି ସେମାନଙ୍କୁ ଗୋଡ଼ାଇଲା । ପ୍ରାୟ ନବେ ମିନିଟ୍ ଯାଏଁ ସେ ସେମାନଙ୍କୁ ଅସ୍ତବ୍ୟସ୍ତ କରି ପକାଇଲା । ପରେ ସେମାନେ ପୁଣି ଥରେ ଯେତେବେଳେ ଗାଡ଼ି ପାଖରେ ପହଞ୍ଚିଲେ, ସେଠାରେ ପୋଡ଼ା ମଣିଷର ଗନ୍ଧ ବାରିଲେ । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ, ଏହି ଘଟଣାର କିଛି ସମୟ ପୂର୍ବରୁ ଗ୍ରେଟ ଅଷ୍ଟ୍ରେଲିଆନ ବାଇଟ୍ ନିକଟରେ ଜଣେ ଟ୍ରକ୍ ଡ୍ରାଇଭର ଏବଂ ଜଣେ ଧୀବର ଉଡ଼ନ୍ତା ବସ୍ତୁଟି ଦେଖିଥିଲେ ।

ପୋଲକ ଏହି ଘଟଣା ଉପରେ ଅନୁସନ୍ଧାନ ଚଳାଇ ଅନୁମାନ କରୁଛନ୍ତି ଯେ, ଏହା ପଛରେ କିଛି ବିସ୍ମୟଜନକ ମହାକାଶ-ରହସ୍ୟ ଥାଇପାରେ । ତେବେ ଏହି ମହାକାଶ-ରହସ୍ୟଟି କ'ଣ ହୋଇପାରେ ? କେତେକ ବୈଜ୍ଞାନିକ ମତ ଦିଅନ୍ତି ଯେ, ଏହି ବିଶ୍ୱବ୍ରହ୍ମାଣ୍ଡରେ ଏମିତି ଅନେକ ଗ୍ରହ-ଉପଗ୍ରହ ରହିଛି, ଯେଉଁଠାରେ ମଣିଷ କିମ୍ବା ଅନ୍ୟ ପ୍ରକାରର ଉନ୍ନତ ଜୀବ ବସବାସ କରୁଛନ୍ତି । ସେମାନେ ଆମ ସମ୍ପର୍କରେ ବିଶେଷ ବିବରଣୀ ଜାଣିବା ପାଇଁ ଏପରି ଉଡ଼ନ୍ତା ବସ୍ତୁ ବା ୟୁଫୋ ପଠାଉଛନ୍ତି । ଏହି ବସ୍ତୁ ବା ଯାନ ଏପରି କାରିଗରୀ କୌଶଳ ଦ୍ୱାରା ନିର୍ମିତ ହୋଇଛି ଯେ, ତାର ରହସ୍ୟ ଭେଦ କରିବା ଆମ ପକ୍ଷରେ ସମ୍ଭବ ହେଉ ନାହିଁ । ବାସ୍ତବତଃ ଆମଠାରୁ ସେମାନେ ଯେ ବହୁକ୍ଷେତ୍ରରେ, ବିଶେଷତଃ ବୈଜ୍ଞାନିକ ପ୍ରୟୋଗ ଓ ଯନ୍ତ୍ର ବିଦ୍ୟାରେ ଯଥେଷ୍ଟ ଅଗ୍ରଣୀ, ଏହା ପ୍ରମାଣିତ ହେଉଛି ।

କଥା ହେଉଛି ଯେ, ନୋଲେନ୍ ଯେଉଁ ୟୁଫୋ ବିଷୟ ଉଲ୍ଲେଖ କଲେ, ତାହା ପ୍ରକୃତରେ ଘଟିଥିଲା, ନା ତାଙ୍କର ମତିଭ୍ରମ ଯୋଗୁଁ ଏପରି ଅଜବ ଦୃଶ୍ୟ ଦେଖାଯାଇଥିଲା ? ଏହା କେତେଦୂର ଗ୍ରହଣଯୋଗ୍ୟ ଏବଂ ଗୁରୁତର ଗବେଷଣା ପାଇଁ ଉପାଦେୟ ?

ଏଠାରେ ସ୍ପଷ୍ଟ କରି ଦିଆଯାଇପାରେ ଯେ, ଏହି ମହାକାଶ-ରହସ୍ୟ ସମ୍ପର୍କରେ ବହୁ ମାନ୍ୟଗଣ୍ୟ ଓ ପ୍ରତିଷ୍ଠିତ ବ୍ୟକ୍ତି ମଧ୍ୟ ନୋଲେନଙ୍କ ପରି ଅନୁରୂପ ବିବରଣୀମାନ ଦେଇଛନ୍ତି । ୧୯୬୯ ମସିହା ଜାନୁଆରୀ ୬ ତାରିଖର ଘଟଣା । ଯୁକ୍ତରାଷ୍ଟ୍ର ଆମେରିକାର ଜର୍ଜିଆ ରାଜ୍ୟ ଅନ୍ତର୍ଗତ ଲିଅରିଠାରେ ରାତି ସାତଟା ପନର ମିନଟ୍ ବେଳେ ଗୋଟିଏ ଆଶ୍ଚର୍ଯ୍ୟଜନକ ଘଟଣା ଆମେରିକାର ପୂର୍ବତନ ରାଷ୍ଟ୍ରପତି ଜିମି କାର୍ଟରଙ୍କ ନଜରରେ ପଡ଼ିଥିଲା । ସେତେବେଳେ ସେ ସ୍ଥାନୀୟ ଲାଏନ୍ସ କ୍ଲବର ଗୋଟିଏ ଅଧିବେଶନରେ ଉଦ୍‌ବୋଧନ ଦେବା ପାଇଁ ପ୍ରକୋଷ୍ଠ ବାହାରେ ଅପେକ୍ଷା କରିଥିଲେ । ତାଙ୍କ ନିକଟରେ ଦଶ ପନରଜଣ ବ୍ୟକ୍ତି ମଧ୍ୟ ଉପସ୍ଥିତ ଥିଲେ । ହଠାତ୍ ଗୋଟିଏ ଗୋଲାକାର ଜ୍ୱଳନ୍ତ ବସ୍ତୁ ପରିଦୃଷ୍ଟ ହେଲା । ପ୍ରଥମେ ତାହା ନୀଳରଙ୍ଗର ଥିଲା; କିନ୍ତୁ ପରେ ପରେ ତାର ରଙ୍ଗ ବଦଳି ଲାଲ ଦେଖାଗଲା । ଉକ୍ତ ବସ୍ତୁଟି ଅଳ୍ପ ସମୟ ମଧ୍ୟରେ ତାଙ୍କର ନିକଟତର ହୋଇ ପରେ ପରେ ଦୂରକୁ ଚାଲିଯାଇଥିଲା । ପ୍ରାୟ ଦଶ ମିନଟ୍ ଧରି ଏହି ପଦାର୍ଥଟିକୁ ଦର୍ଶକମାନେ ଦେଖିପାରିଥିଲେ । କାର୍ଟର ଦୃଢ଼ଭାବେ ମତଦେଲେ ଯେ, ଉଡ଼ନ୍ତା ଥାଳିଆଟି ନିଶ୍ଚିତଭାବେ ବାସ୍ତବ । ତାର ଅସ୍ତିତ୍ୱ ସମ୍ପର୍କରେ ଅଧିକ ଅନୁସନ୍ଧାନ ଚଳାଇବାକୁ ସେ ବାୟବୀୟ ଘଟଣା ସମ୍ପର୍କୀୟ ଜାତୀୟ ଅନୁସନ୍ଧାନ କମିଟି ବା "ନିକାପ"କୁ ମଧ୍ୟ ଜଣାଇଥିଲେ ।

ଦ୍ୱିତୀୟ ମହାଯୁଦ୍ଧର ଅନ୍ତିମ ବର୍ଷରେ ମଧ୍ୟ ଏହି ପ୍ରକାର କେତେକ ରହସ୍ୟମୟ ଅଜ୍ଞାତ ବସ୍ତୁ ଦୃଷ୍ଟିଗୋଚର ହୋଇଥିଲା । ତତ୍କାଳୀନ ଯୁଦ୍ଧର ପରିସ୍ଥିତିରେ ଜର୍ମାନମାନେ ଏହାକୁ ଅପରପକ୍ଷ ଆମେରିକାର ନୂତନ ବାୟୁ-ଅସ୍ତ୍ର ବୋଲି ମନେ କରୁଥିବା ବେଳେ ଆମେରିକୀୟ ଯୁଦ୍ଧ-ବିଶାରଦମାନେ ଏହାକୁ ଶତ୍ରୁପକ୍ଷର ଅଦ୍ଭୁତ ବାୟବୀୟ ରଣ-କୌଶଳ ବୋଲି ଭାବୁଥିଲେ । ଏହି ପାରସ୍ପରିକ ଭୁଲ୍ ବୁଝାମଣା ଯୋଗୁଁ ଉଭୟ ପକ୍ଷର ଶିବିରରେ କୌତୁହଳ ଭୟ ସୃଷ୍ଟି ହୋଇଥିଲା । ଏହି କାରଣରୁ ପ୍ରକୃତ ରହସ୍ୟ ଲୁକ୍କାୟିତ ହୋଇ ରହିଥିଲା ।

ସାମରିକ ଦୃଷ୍ଟିକୋଣରୁ ଉଡ଼ନ୍ତା ବସ୍ତୁର ମହତ୍ତ୍ୱ ଉପଲବ୍ଧି କରି ଆମେରିକାର ଏୟାର ଫୋର୍ସ ଦ୍ୱାରା ୧୯୪୮ ମସିହାରେ ଗୁରୁତ୍ୱର ସହିତ ଅନୁସନ୍ଧାନ ଆରମ୍ଭ କରାଯାଇଥିଲା । ପ୍ରୋଜେକ୍ଟ ବ୍ଲୁ-ବୁକ୍ ନାମରେ ପରିଚିତ ଏହି ସଂସ୍ଥା ଦ୍ୱାରା ୧୮ ବର୍ଷ ବ୍ୟାପୀ ୧୨,୬୦୦ଟି ଘଟଣା ଉପରେ ତଦନ୍ତ କରାଯାଇଥିଲା । ଫଳାଫଳରୁ ଜଣାଗଲା ଯେ, ତନ୍ମଧ୍ୟରୁ ପ୍ରାୟ ବାରହଜାର ଘଟଣାରେ ସମ୍ପୃକ୍ତ ଉଡ଼ନ୍ତାବସ୍ତୁ ଅବାସ୍ତବ କିମ୍ବା ମିଥ୍ୟା । କିନ୍ତୁ ଅବଶିଷ୍ଟ ପ୍ରାୟ ସାତଶହ ଉଡ଼ନ୍ତାବସ୍ତୁ ସମ୍ପର୍କରେ ଅନୁସନ୍ଧାନକାରୀମାନେ କୌଣସି ବିଶିଷ୍ଟ ମତାମତ ଦେଇପାରି ନଥିଲେ । ତେଣୁ ୧୯୬୬ ମସିହାରେ ଆମେରିକାର ବାୟୁସେନାବାହିନୀ ତରଫରୁ ପୁଣି ତଦନ୍ତ ଆରମ୍ଭ କରାଗଲା । ଏହି ପ୍ରୋଜେକ୍ଟ ସହିତ ବହୁ ପ୍ରତିଷ୍ଠିତ ବୈଜ୍ଞାନିକଙ୍କୁ ସମ୍ପୃକ୍ତ କରାଯାଇଥିଲା ଏବଂ ତା'ର ନେତୃତ୍ୱ ନେଇଥିଲେ କଲୋରାଡୋ ବିଶ୍ୱବିଦ୍ୟାଳୟର ବରିଷ୍ଠ ପଦାର୍ଥ ବିଜ୍ଞାନବିତ୍ ଡକ୍ଟର ଏଡ୍‌ୱାର୍ଡ କଣ୍ଡନ୍ । ସେମାନେ ୫୯ଟି ଘଟଣା ଉପରେ ଜୋର୍ ଦେଇଥିଲେ । ତନ୍ମଧ୍ୟରୁ ୩୨ଟି ଘଟଣା ଅସତ୍ୟ ବୋଲି ଜଣାପଡ଼ିଥିଲେ ମଧ୍ୟ ଅବଶିଷ୍ଟ ୨୭ଟି ଘଟଣାର ସତ୍ୟାସତ୍ୟ ସମ୍ପର୍କରେ କୌଣସି ମନ୍ତବ୍ୟ ଦିଆଯାଇ ନ ଥିଲା । ତଥାପି ସେମାନେ ଜଣାଇଥିଲେ ଯେ, ଏକୋଇଶି ବର୍ଷ ଧରି ୟୁଫୋ ଉପରେ ଗବେଷଣା କରାଯାଇଥିଲେ ମଧ୍ୟ ଏହାଦ୍ୱାରା ବିଜ୍ଞାନର କୌଣସି ଉନ୍ନତି ହୋଇ ନାହିଁ । ତେଣୁ ଏହି ସମ୍ପର୍କରେ ଆଉ ଅଧିକ ଗବେଷଣା ଚଳାଇବା ଅନାବଶ୍ୟକ । ସେମାନେ ପୁଣି ଭବିଷ୍ୟବାଣୀ ଦେଇଥିଲେ ଯେ, ଆଗାମୀ ଦଶହଜାର ବର୍ଷ ମଧ୍ୟରେ ସୌରଜଗତର ବାହାରୁ କୌଣସି ବୁଦ୍ଧିମାନ ଜୀବ ପୃଥିବୀରେ ପ୍ରବେଶ କରିବେ ନାହିଁ । ଡକ୍ଟର କଣ୍ଡନ୍‌ଙ୍କ ଉପସଂହାର ଆମେରିକୀୟ ବାୟୁସେନା ଦ୍ୱାରା ଗ୍ରହଣ କରାଯାଇଥିଲା । କିନ୍ତୁ ଜ୍ୟୋତିର୍ବିଜ୍ଞାନୀ ଆଲେନ୍ ହାଇନେକ୍ ଡକ୍ଟର କଣ୍ଡନ୍‌ଙ୍କ ଉପସଂହାରରେ ସନ୍ତୁଷ୍ଟ ନ ହୋଇ ୟୁଫୋ ଉପରେ ଅନୁସନ୍ଧାନ ଜାରି ରଖିଲେ । ଏଥିପାଇଁ ସେ କ୍ୟୁଫୋସ୍ ନାମକ ଏକ ବେସରକାରୀ ଗବେଷଣା ସଂସ୍ଥା ମଧ୍ୟ ପ୍ରତିଷ୍ଠା କଲେ । ୧୯୮୨ ମସିହା

ସୂଚନା ଏହି ସଂଖ୍ୟା ୬୦ ହଜାର ଉଡ଼ନ୍ତାବସ୍ତୁ ଉପରେ ତଦନ୍ତ କରି ଜାଣିପାରିଛନ୍ତି ଯେ, ତନ୍ମଧ୍ୟରୁ ଶତକଡ଼ା କୋଡ଼ିଏଗୋଟି ଘଟଣା ରହସ୍ୟାବୃତ ହୋଇ ରହିଛି । ତେଣୁ ଉଡ଼ନ୍ତାବସ୍ତୁକୁ ମିଥ୍ୟା ଏବଂ ମତିଭ୍ରମ ବୋଲି ନିର୍ଦ୍ଦେଶରେ କହିଦେବା ଅନୁଚିତ ଏବଂ ଅବୈଜ୍ଞାନିକ ମନୋଭାବର ପରିଚାୟକ ।

ମନୋଚିକିତ୍ସାବିଜ୍ଞାନୀ କାର୍ଲ ୟୁଙ୍ଗ ଉଡ଼ନ୍ତାବସ୍ତୁକୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କରି ନୂତନ ତଥ୍ୟ ଦେଇଛନ୍ତି । "ଉଡ଼ନ୍ତା ଥାଳିଆ : ଆକାଶରେ ଦୃଷ୍ଟିତ ବସ୍ତୁମାନଙ୍କର ଏକ ଆଧୁନିକ ମିଥ୍" (୧୯୫୮) ପୁସ୍ତକରେ ସେ ମତ ଦେଇଛନ୍ତି ଯେ, ପ୍ରାଚୀନ କାଳରୁ ମଣିଷ ସାମଗ୍ରିକତାକୁ ବର୍ଣ୍ଣନା କରିବା ପାଇଁ ବିଭିନ୍ନ ଗୋଲାକାର ବସ୍ତୁ ବା ଚକ୍ରକୁ ମାଧ୍ୟମ ଭାବେ ଗ୍ରହଣ କରି ଆସିଛି । (ଉଦାହରଣ ସ୍ୱରୂପ ବୌଦ୍ଧଧର୍ମର ପ୍ରତୀକ "ମାଣ୍ଡାଲା"କୁ ବିଚାର କରାଯାଇପାରେ ।) ତେଣୁ ପୁନଃ ପୁନଃଥର ମଣିଷ-ଜାତିର ଅବଚେତନ ମନରେ ଏହା ଏକ ବଦ୍ଧମୂଳ ଧାରଣା ଭାବେ ରହି-ଆସିଥିବା ଯୋଗୁଁ ସାମଗ୍ରିକତାର ପ୍ରତୀକ ଭାବେ ଗୋଲାକାରବସ୍ତୁ ସର୍ବସାଧାରଣରେ ଗୃହୀତ ହୋଇଛି । ଦର୍ଶକର କଳ୍ପନାର ସ୍ଥିର ଓ ସ୍ଥିତି ଅନୁଯାୟୀ ଏହି ପ୍ରତୀକଧର୍ମୀ ଗୋଲାକାର ବସ୍ତୁଟି କେତେବେଳେ ଉଡ଼ନ୍ତା ଭାବେ ଦୃଷ୍ଟିଗୋଚର ହୁଏ ତ; ଅନ୍ୟ କେତେବେଳେ ସ୍ଥିର । ପ୍ରକୃତରେ ଉଡ଼ନ୍ତା ବସ୍ତୁ ଅବାସ୍ତବ, ତାର କୌଣସି ଅସ୍ତିତ୍ୱ ନାହିଁ । ଆମ ଅବଚେତନ-ମନର ପ୍ରତିଛବି ସ୍ୱରୂପ ଆମେ ବୃତ୍ତାକାରରେ ଏମିତି ଗୋଲାକାର ପଦାର୍ଥମାନ ରହସ୍ୟଜନକ ଭାବେ ଦେଖିଥାଉ । ପ୍ରକାଶ ଥାଉ କି, ମନର ଏହି ପ୍ରକାର ଅନ୍ତର୍ନିହିତ ଦୋଷ ହିଁ ବିଭିନ୍ନ ସ୍ୱପ୍ନ, ସଙ୍କେତ ତଥା ମିଥ୍‌ର କାରଣ ।

ଏହି ପ୍ରସଙ୍ଗରେ ଉଲ୍ଲେଖ କରାଯାଇପାରେ ଯେ, ଉଡ଼ନ୍ତାବସ୍ତୁର ବିଭିନ୍ନ ବିଶେଷତ୍ୱ ହେଉଛି ଯେ, ଏହା କେବଳ ଗୋଲାକାର ନୁହେଁ, ଆଲୋକର ଉତ୍ସ ମଧ୍ୟ । ଏପରି ଉଜ୍ଜ୍ୱଳ ଦେଖାଯିବା ପଛରେ ମଧ୍ୟ ମାନସିକ କାରଣ ନିହିତ ଅଛି । ଯଦି କୌଣସି ବ୍ୟକ୍ତି ମୃତ୍ୟୁମୁଖରୁ ରକ୍ଷା ପାଇଯାଏ, କିମ୍ବା ସମାଧିସ୍ଥ ଅଥବା ମୋହଗ୍ରସ୍ତ ଅବସ୍ଥାରୁ ହଠାତ୍ ଫେରିଆସେ, ସେ ଯେଉଁ ବିଚିତ୍ର ଦୃଶ୍ୟମାନ ଦେଖିଥିବା ବିଷୟ ଦାବି କରେ, ତନ୍ମଧ୍ୟରେ ଥାଏ, ସତେ ଯେମିତି ସେ କିଛି ଆଲୋକ ଦେଖିଥିଲେ; କିମ୍ବା କେହି ଜଣେ ପଥପ୍ରଦର୍ଶକ ତାକୁ ବାଟ କଢ଼ାଉଥିଲେ; ଅଥବା ତାକୁ କେହି ଅପରିଚିତ ବ୍ୟକ୍ତି ନୂତନ ବାର୍ତ୍ତାମାନ ଶୁଣାଉଥିଲେ ଇତ୍ୟାଦି । ଏହି ଅବସ୍ଥାରେ ମଧ୍ୟ ସେମାନେ ଅନେକ ଲୋକମାନଙ୍କ ସହିତ ଦୂରସମ୍ବେଦନ (ଟେଲିପାଥି) ମାଧ୍ୟମରେ ଯୋଗାଯୋଗ ସ୍ଥାପନ କରିଥିବା ବିଷୟ ପ୍ରକାଶ କରିଥାନ୍ତି । ପ୍ରସଙ୍ଗକ୍ରମେ ଏଠାରେ ଲକ୍ଷ୍ୟ କରିବା କଥା ଯେ, ଯେଉଁମାନେ ଉଡ଼ନ୍ତା ଥାଳିଆ ଦେଖିଥିବା ବିଷୟ ଦାବି କରନ୍ତି, ସେମାନେ

ମଧ୍ୟ ଠିକ୍ ସେପରି ଅସ୍ୱାଭାବିକ ଅନୁଭୂତିମାନ ବର୍ଣ୍ଣନା କରିଥାନ୍ତି । ଏହି ଉଭୟ ତଥ୍ୟ ମଧ୍ୟରେ ତୁଳନା କରି ଆମେ ବୁଝିପାରୁ ଯେ, ଆମର ସାମୟିକ ଚେତନାଶୂନ୍ୟତା କିମ୍ବା ମୋହଗ୍ରସ୍ତ ଅବସ୍ଥା ଉଡ଼ନ୍ତା ଥାଳିଆ ଦେଖିବା ପାଇଁ ଅନୁକୂଳ । ଏହାର ଅର୍ଥ ହେଉଛି ଯେ, ଉଡ଼ନ୍ତା ଥାଳିଆ ଉଜ୍ଜ୍ୱଳ ଦେଖାଯିବା ପାଇଁ ଆମର ସାମୟିକ ମାନସିକ ବିକୃତି ଦାୟୀ ।

ଜାକ୍ସ ଭାଲେ ନାମକ ଜଣେ କମ୍ପ୍ୟୁଟର ବିଜ୍ଞାନୀ "ପାସପୋର୍ଟ ଟୁ ମାଗୋନିଆ" ପୁସ୍ତକରେ କାର୍ଲ ୟୁଙ୍ଗଙ୍କ ମତକୁ ସମର୍ଥନ କରିଛନ୍ତି । ମଣିଷର ଜୀବନ କଳ୍ପନା ଓ ପୁରାକଥା ବା ମିଥ୍ ଦ୍ୱାରା ନିୟନ୍ତ୍ରିତ । ଏହାର ଫଳ ସ୍ୱରୂପ ଆମେ ପାରାନର୍ମାଲ ଅନୁଭୂତି ଅର୍ଜନ କରିଥାଉ । ଏହାର ପରିଣତ ସୁଦୂରପ୍ରସାରୀ ହୋଇପାରେ । ଉଦାହରଣ ସ୍ୱରୂପ, ଦେବତା ତଥା ବିଶ୍ୱବ୍ରହ୍ମାଣ୍ଡ ସମ୍ପର୍କରେ ଆମର ଧାରଣା ଏହି ମିଥ୍ ଦ୍ୱାରା ପରିବର୍ତ୍ତିତ ଏବଂ ପରିବର୍ଦ୍ଧିତ ହୁଏ । ଯେତେବେଳେ ସାମାଜିକ ପରିସ୍ଥିତି ପରି କୌଣସି କାରଣରୁ ବ୍ୟକ୍ତି ଉପରେ ଚାପ କିମ୍ବା ତାର ଦୁଶ୍ଚିନ୍ତା ଅଧିକ ହୋଇଥାଏ, ଉକ୍ତ ଅସ୍ୱାଭାବିକ ଅନୁଭୂତି ଅଧିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । ଏମିତି ଏକ ସମଷ୍ଟିଗତ, ଅସାଧାରଣ ମାନସିକ ସ୍ଥିତି ହିଁ ନୁଫୋ କିମ୍ବା ବହିର୍ଜଗତର ଜୀବ ସହିତ ସାମନାରୁ ସାକ୍ଷାତ କରାଏ । ଯୁଗଯୁଗ ଧରି ଏହି ଉଦ୍ଦୀପକ (ଷ୍ଟିମୁଲସ୍) ମଣିଷ ଉପରେ ପ୍ରଭାବ ପକାଇ ଆସୁଥିବା ଯୋଗୁଁ ମଣିଷର ଜୈବିକ ଗଠନରେ ଏହା ଏକ ମୌଳିକ ତଥା ଅଭିନ୍ନ ଉପାଦାନ ଭାବେ ବର୍ତ୍ତମାନ ରହି ଗଲାଣି । ଆମ ମନ ଏମିତି ଏକ ସ୍ୱତଃ ପ୍ରୋଗ୍ରାମ୍‌ର ଅନ୍ତର୍ଭୁକ୍ତ ହୋଇଗଲାଣି ଯେ, ଉକ୍ତ ଉତ୍ତେଜକ ନୁଫୋ ଦେଖିବା ପରି ଏକ ମାନସିକ ଅବସ୍ଥା ସୃଷ୍ଟି କରିଥାଏ । ତେଣୁ କୌଣସି ବହିର୍ଜଗତର ଭୌତିକ କାରଣ ଦ୍ୱାରା ନୁଫୋ ଦୃଶ୍ୟମାନ ହୁଏ ନାହିଁ । ଅବଶ୍ୟ ବୈଜ୍ଞାନିକ ଭାଲେ କହନ୍ତି ଯେ, ମାନସିକ କାରଣରୁ ନୁଫୋ ସୃଷ୍ଟି ହେଉଥିଲେ ସୁଦ୍ଧା ଏହି ଘଟଣା ସହିତ କୌଣସି ଭୌତିକ ପରିସ୍ଥିତି କେତେ ମାତ୍ରାରେ ଅବଶ୍ୟ ସଂଶ୍ଳିଷ୍ଟ । ନୁଫୋ ଦେଖାଯିବା ବେଳେ ବିଦ୍ୟୁତ-ଚୁମ୍ବକୀୟ ତରଙ୍ଗ ପାରିପାର୍ଶ୍ୱିକ ବାତାବରଣରେ କେତେକ ପରିବର୍ତ୍ତନ ସୃଷ୍ଟି କରେ । ତେଣୁ ଭାଲେଙ୍କ ଦୃଷ୍ଟିକୋଣକୁ ଏହି କାରଣରୁ ସମର୍ଥନ କରାଯାଇପାରେ ଏବଂ ନୁଫୋର ଭୌତିକ ସତ୍ତାକୁ ହୁଏତ ଅସ୍ୱୀକାର କରାଯାଇ ନ ପାରେ । ତଥାପି କଡ଼ାକଡ଼ି ଭାବେ ବିଚାର କଲେ, ଏହି ତଥାକଥିତ ରହସ୍ୟମୟ ଉଡ଼ନ୍ତାବସ୍ତୁ ଆମ ଦୁର୍ବଳ ମନର ଏକ ଉଦ୍ଭାବନ ଏବଂ ଅବାସ୍ତବ ସର୍ଜନା ।

ଉଡ଼ନ୍ତା ଥାଳିଆ ସମ୍ପର୍କରେ ଏଭଳି ଯେଉଁ ବିପରୀତ ମତ ଓ ବାଦାନୁବାଦ ରହିଛି, ତା ପଛରେ ମୂଳ ପ୍ରଶ୍ନ ହେଉଛି—ପୃଥିବୀ ବାହାରେ କୌଣସି ଜୀବ ଅଛି କି ? ଯଦି

ଅଛୁ, ତାହାହେଲେ ତାହା କେତେଦୂର ଉନ୍ନତ ଏବଂ ୟୁଫୋ ପଠାଇବା ପାଇଁ କେତେଦୂର ସକ୍ଷମ ?

୧୯୭୯ ମସିହାରେ ଜାପାନର କେତେକ ଭୂତତ୍ତ୍ୱବିତ୍ ଆଣ୍ଟାର୍କଟିକା ଅଭିଯାନରେ ଯାଇଥିବାବେଳେ ୧୮୦ ଗ୍ରାମ୍ ଓଜନର ଗୋଟିଏ କ୍ଷୁଦ୍ର ଉଲ୍କାପିଣ୍ଡ ବରଫର ଆସ୍ତରଣ ତଳୁ ଉଦ୍ଧାର କରିଥିଲେ । ସେମାନେ ତାକୁ ୟମାଟୋ—୭୯୧୧୯୮ ନାମରେ ନାମିତ କରିଥିଲେ । ବହୁ ପ୍ରାଚୀନକାଳରୁ ପ୍ରଦୂଷିତ ନହୋଇ ଅନାବିଳ ଅବସ୍ଥାରେ ରହିଥିବା ଏହି ଉଲ୍କାପିଣ୍ଡଟିକୁ ଜାପାନର ସୁକୁବା ବିଶ୍ୱବିଦ୍ୟାଳୟରେ ବିଶ୍ଳେଷଣ କରିବା ପରେ ଜଣାଗଲା ଯେ, ଏଥିରେ କୋଡ଼ିଏ ପ୍ରକାରର ଏମିନୋ-ଏସିଡ୍ ଅଛନ୍ତି । ପ୍ରମାଣ ଥାଉ କି, ଏମିନୋ ଏସିଡ୍ ଯେ କୌଣସି ଜୀବର ଜୀବନ ପାଇଁ ଅପରିହାର୍ଯ୍ୟ । ଯେ ଯାହାହେଉ, ଉକ୍ତ ଉଲ୍କାପିଣ୍ଡରେ ଯେଉଁ ପ୍ରକାର ଏସିଡ୍ ଥିଲା, ତନ୍ମଧ୍ୟରେ ଗ୍ଲ୍ୟୁଟିଣକ୍ ଏମିନୋ ଏସିଡ୍ ତଥା ଉଭୟ ଅଇସୋମେରିକ ଚଙ୍ଗର ଏମିନୋ-ଏସିଡ୍-ଆଲାନାଇନ୍ ରହିଥିଲା, ଯାହାକି ପୃଥିବୀର ପରିବେଶରେ ସୃଷ୍ଟି ହେବା ଆଦୌ ସମ୍ଭବ ନୁହେଁ । ତେଣୁ ଏହା ଅନ୍ତରୀକ୍ଷରେ ସୃଷ୍ଟି ହୋଇଛି ବୋଲି ସେମାନେ ଅନୁମାନ କଲେ । ଏମିନୋଏସିଡ୍ ଯେକୌଣସି ଜୀବନର ମୂଳ ଉପାଦାନ ହୋଇଥିବା ଯୋଗୁଁ ସର୍ବପ୍ରଥମେ ଜୀବନ ପୃଥିବୀରେ ସୃଷ୍ଟି ନ ହୋଇ ବହିର୍ଜଗତରେ ହୋଇଛି ବୋଲି ସେମାନେ ମତ ଦେଲେ ।

ପୁଣି ପ୍ରସିଦ୍ଧ ଜ୍ୟୋତିର୍ବିତ୍ କାର୍ଲ ସାଗାନ୍ଙ୍କ ଦ୍ୱାରା ସମ୍ପାଦିତ "ଇକାରସ୍" ପତ୍ରିକାରେ ୧୯୮୧ ସାଲରେ ଫ୍ରାନ୍ସିସ୍ କ୍ରିକ୍ ଓ ଲେସଲି ଓର୍ଗେଲ ଯେଉଁ "ଡାଇରେକ୍ଟେଡ୍ ପାନ୍ସ୍ପେରିଆ" ନାମକ ନୂତନ ତଥ୍ୟ ଉପସ୍ଥାପିତ କରିଛନ୍ତି । ସେଥିରେ ଅନ୍ତରୀକ୍ଷରେ ବୁଦ୍ଧିମାନ ଜୀବନ ରହିଥିବା ବିଷୟ ଉଲ୍ଲେଖ କରାଯାଇଛି । ଏହି ମତବାଦ ଅନୁସାରେ ଗୋଟିଏ ବୁଦ୍ଧିମାନ ଏବଂ ବିଜ୍ଞାନ ତଥା କାରିଗରୀ କୌଶଳରେ ଅତି ଉନ୍ନତ ସଭ୍ୟତା ସୌର-ମଣ୍ଡଳ ବାହାରେ, ଅନ୍ୟ କୌଣସି ଏକ ଗ୍ରହରେ ଅବଶ୍ୟ ରହିଛି । ସେଠାକାର ଜୀବମାନେ ପ୍ରାୟ [illegible] ବିଲିୟନ୍ ବର୍ଷ ପୂର୍ବେ ଗୋଟିଏ ମହାକାଶଯାନରେ ବ୍ୟାକ୍ଟେରିଆ ଭର୍ତ୍ତି କରି ଆମ ପୃଥିବୀକୁ ପ୍ରେରଣ କରିଥିଲେ । ବହୁ-ଜଗତର ଏହି ବ୍ୟାକ୍ଟେରିଆମାନଙ୍କ ଠାରୁ ହିଁ ଆମେ ଜନ୍ମିତ ବୋଲି ସେମାନେ ମତ ଦେଇଛନ୍ତି ।…ତାହାହେଲେ ୟୁଫୋ ଗଣ ପ୍ରକୃତରେ ଭୌତିକ ଏବଂ ବାସ୍ତବ ?

କ୍ରିକ୍ଙ୍କ ଏହି ମତବାଦକୁ ତାଙ୍କ ସ୍ତ୍ରୀ ଏକ କୌତୁହଳଜନକ ବିଜ୍ଞାନ-କାହାଣୀ ବୋଲି ମତ୍ ସମାଲୋଚନା କରୁଥିବା ବେଳେ, ତାଙ୍କ ପୁଅ ମାଇକେଲ କ୍ରିକ୍ ତାର

ସତ୍ୟତାରେ ପୂର୍ଣ୍ଣ ବିଶ୍ୱାସୀ । ବାସ୍ତବିକ ନିକ୍ସନ୍ଙ୍କ ଶାସନକାଳରେ କେବଳ ଲୁର୍ଦ୍ଦେ, ପ୍ରାୟ ସବୁଜ ତାଙ୍କ ମତବାଦକୁ ଦଳେ ସମର୍ଥନ କରୁଛନ୍ତି ତ, ଅନ୍ୟମାନେ ବିରୋଧ କରୁଛନ୍ତି ।

ଏହି ପରିପ୍ରେକ୍ଷୀରେ ଅନ୍ତରୀକ୍ଷରେ ଜୀବଜଗତ୍ ସମ୍ପର୍କରେ ଅନୁସନ୍ଧାନ ଆବଶ୍ୟକତା ରହିଛି । ଆମେରିକାର ମହାକାଶ ସଂସ୍ଥା ନାସା "ବହିର୍ଜଗତରେ ବୁଦ୍ଧି ପାଇଁ ଅନୁସନ୍ଧାନ" (ସେଟି) ନାମକ ଏକ ଯୋଜନା ପ୍ରସ୍ତୁତ କରିଛି । ଆମେସ ରିସର୍ଚ୍ଚ ସେଣ୍ଟର ଏବଂ କାଲିଫର୍ଣ୍ଣିଆସ୍ଥିତ ଷ୍ଟାନଫୋର୍ଡ ବିଶ୍ୱବିଦ୍ୟାଳୟ ଉଦ୍ୟୋଗରେ ଯେଉଁ ସୁପର ଅନାଲିଟିକାଲ କମ୍ପ୍ୟୁଟର ଉଦ୍ଭାବନ କରିଛି, ତାହା ଏହି ପ୍ରୋଜେକ୍ଟରେ ବ୍ୟବହୃତ ହେବ । ବିଶ୍ୱର ବିଭିନ୍ନ ସ୍ଥାନକୁ ଯେଉଁ ଦୀର୍ଘ ତରଙ୍ଗ-ଦୈର୍ଘ୍ୟର ରେଡ଼ିଓ ସିଗ୍ନାଲ ପଠାଯିବ, ତାହାର ପ୍ରତିକ୍ରିୟା ଏହି ସୁପର କମ୍ପ୍ୟୁଟର ରେକର୍ଡ କରାଯିବ । ପ୍ରକାଶ ଥାଉକି, ଏହି ସୁପର କମ୍ପ୍ୟୁଟରଟି ଅତି ଦ୍ରୁତ । ଏହା ପ୍ରତି ସେକେଣ୍ଡରେ ଦଶ ବିଲିଅନ୍ ଅପରେସନ୍ କରିପାରେ । ତାର ଯାନ୍ତ୍ରିକ ମସ୍ତିଷ୍କର ମୁଖ୍ୟ ଅଂଶ ହେଉଛି ଗୋଟିଏ ଅଠବର୍ଗ ମିଲିମିଟର ଆୟତନର କ୍ଷୁଦ୍ର ଚକଲା ଚିପ୍, ଯାହାକି ୬୪,୦୦୦ ଟ୍ରାଞ୍ଜିଷ୍ଟର ସହିତ ସମାନ । ଏହି କମ୍ପ୍ୟୁଟରଟି ଏତେ ଶକ୍ତିଶାଳୀ ଯେ, ଏକଦା ପୃଥିବୀଠାରୁ ଛଅ ବିଲିଅନ୍ କିଲୋମିଟର ଦୂରରୁ ଆମେରିକାର ପାଓନିଅର୍ ମହାକାଶଯାନ ଯେଉଁ ଏକ-ୱାଟ୍ ଶକ୍ତିବିଶିଷ୍ଟ ଦୁର୍ବଳ ରେଡ଼ିଓ ସିଗ୍ନାଲ୍ ପୃଥିବୀକୁ ପଠାଉଥିଲା, ଅତି ସହଜରେ ଉକ୍ତ କମ୍ପ୍ୟୁଟର ଦ୍ୱାରା ତାହା ଧରି ପଡ଼ିଥିଲା । ତେଣୁ ବହିର୍ଜଗତ ସମ୍ପର୍କରେ ଜାଣିବାକୁ ବିଭିନ୍ନ ତାରା ନକ୍ଷତ୍ରକୁ ଯେଉଁ ରେଡ଼ିଓ ସିଗ୍ନାଲ୍ ପଠାଯିବ, ତାର ଉତ୍ତର ଗ୍ରହଣ କରିବାରେ ଏହି କମ୍ପ୍ୟୁଟର ପାଇଁ କୌଣସି ଅସୁବିଧା ହେବ ନାହିଁ ।

ସେଟି-ପ୍ରୋଜେକ୍ଟ ପାଇଁ ଅଗଣିତ ଡଲାର ଖର୍ଚ୍ଚ ହେବ ଏବଂ ଦଶବର୍ଷ ସମୟ ଲାଗିବ । ତଥାପି ନାସା ଏହି ଗବେଷଣାର ପ୍ରାସଙ୍ଗିକତା ଓ ଉପାଦେୟତା ହୃଦୟଙ୍ଗମ କରି ତାକୁ ମଞ୍ଜୁର କରିଛି । ଅନ୍ତରୀକ୍ଷରେ ମଣିଷ ତାର ସାଥିଟିଏ ପାଇଲେ, କେତେ ଯେ ଖୁସୀ ହେବ, ସେଇ ଆଶା ନେଇ ଏହି ବ୍ୟୟବହୁଳ ଓ ସମୟସାପେକ୍ଷ ପ୍ରୋଜେକ୍ଟର ସଫଳତା ପାଇଁ ବୈଜ୍ଞାନିକ ନିକ୍ସନ୍ଙ୍କ ସମେତ ବହୁ ବିଶିଷ୍ଟ ବ୍ୟକ୍ତି ବ୍ୟସ୍ତ । ତାହାହେଲେ ଉଡ଼ନ୍ତାଥାଳିଆର ଭୌତିକ ଭିତ୍ତି ମଧ୍ୟ ସୁପ୍ରତିଷ୍ଠିତ ହେବ ।

# ଚନ୍ଦ୍ରର ପ୍ରକୃତି ଓ ଉତ୍ପତ୍ତି

ଯେମିତ ମା'ର ସେମିତ ଝିଅ ହୁଏ ବୋଲି ଆମ ମନରେ ବିଶ୍ୱାସ ରହିଆସିଛି । ଆମେ ପୃଥିବୀକୁ ମା ଓ ଚନ୍ଦ୍ରକୁ ଝିଅ ବୋଲି ଭାବୁଛୁ ପୃଥିବୀର ଗୁଣାବଳୀ ଚନ୍ଦ୍ରପାଖରେ ଦେଖାଦେବ ବୋଲି ଆଶା କରୁଛେଁ । କିନ୍ତୁ ଏହା ଏକ ଭ୍ରାନ୍ତ ଧାରଣା । ଚନ୍ଦ୍ରର ପ୍ରକୃତ ଯେପରି ବିଚିତ୍ର ତାର ଉତ୍ପତ୍ତି ସେପରି ରହସ୍ୟାଚ୍ଛନ୍ନ । ତେଣୁ ଜ୍ୟୋତିର୍ବିଜ୍ଞାନୀମାନେ ଚନ୍ଦ୍ରର ପ୍ରକୃତ ଓ ଉତ୍ପତ୍ତି ସମ୍ପର୍କରେ ନିର୍ଦ୍ଦିଷ୍ଟ ତଥ୍ୟମାନ ଜାଣିବା ପାଇଁ ଯୁଗଯୁଗ ଧରି ଅଧ୍ୟୟନରତ ।

ଚନ୍ଦ୍ର ନିଜ ଅକ୍ଷରେ ରହି ଘୂରୁଥାଏ । ଏତଦ୍‌ବ୍ୟତୀତ ପୃଥିବୀର ଚତୁର୍ଦ୍ଦିଗରେ ଏକ ନିର୍ଦ୍ଦିଷ୍ଟ ପଥରେ ପରିକ୍ରମା କରୁଥାଏ । ଏହି ଦୁଇପ୍ରକାର ଘୂର୍ଣ୍ଣନ ପାଇଁ ଦୁଇଟି ଆବର୍ତ୍ତିକାଳ ରହିଛି । ଏମାନଙ୍କୁ ଆବର୍ତ୍ତନକାଳ ଓ ପରିକ୍ରମଣକାଳ କୁହାଯାଇଥାଏ । ଏମାନଙ୍କ ମୂଲ୍ୟ ଯଥାକ୍ରମେ ୨୭ ଦିନ ୧୯ଘଣ୍ଟା ୧' ସେକେଣ୍ଡ ଓ ୨୭ ଦି ୭ଘ ୪୩ ସେ । ଏଥିରୁ ଜଣାଯାଏ ଯେ, ଚନ୍ଦ୍ର ନିଜ ଅକ୍ଷରେ ଥରେ ଘୂରିବା ପାଇଁ ଯେତେ ସମୟ ନିଏ, ପୃଥିବୀ ଚାରିପଟେ ଥରେ କକ୍ଷପଥରେ ଘୂରିବା ପାଇଁ ପ୍ରାୟ ସେତେ ସମୟ ନିଏ । ଜ୍ୟୋତିର୍ବିତ୍‌ମାନେ ଏହାକୁ ଅଧିକୃତ ଘୂର୍ଣ୍ଣନ (କ୍ୟାପଚେରଡ୍‌ ରୋଟେସନ୍‌) ବୋଲି କହିଥାନ୍ତି । ଏହାର ଏମିତ ଏକ ପରିଣତି ହୁଏ ଯେ, ଚନ୍ଦ୍ରର ଏକ ନିର୍ଦ୍ଦିଷ୍ଟ ଅର୍ଦ୍ଧାଂଶ ସଦାସର୍ବଦା ଆମ ଅଗୋଚରରେ ରହେ ।

ପ୍ରାୟ ୩୫୦ ବର୍ଷ ପୂର୍ବେ ଯେତେବେଳେ ଗାଲିଲିଓ ଦୂରବୀକ୍ଷଣଯନ୍ତ୍ର ବ୍ୟବହାର କଲେ, ଜ୍ୟୋତିର୍ବିଦ୍‌ମାନେ ଉପଗ୍ରହଟିର ଅଧ୍ୟୟନ ପାଇଁ ଅପୂର୍ବ ସୁଯୋଗ ପାଇଲେ । ସେମାନେ ଏହି ଯନ୍ତ୍ର ସାହାଯ୍ୟରେ ଚନ୍ଦ୍ରରେ ଦେଖାଯାଉଥିବା ଅର୍ଦ୍ଧାଂଶ ସମ୍ପର୍କରେ ବିସ୍ତୃତ ଓ ଗଭୀର ଅନୁଧ୍ୟାନ କରିବାରେ ସକ୍ଷମ ହୋଇପାରିଥିଲେ । ଚନ୍ଦ୍ରପୃଷ୍ଠରେ ପର୍ବତ ଶ୍ରେଣୀ, ଉପତ୍ୟକା, ନିମ୍ନ ସମତଳ ଅଞ୍ଚଳ ଇତ୍ୟାଦି ସେମାନେ ଲକ୍ଷ୍ୟ

କରିଥିଲେ । ଚନ୍ଦ୍ରକୁ ପୃଥିବୀର ଏକ କ୍ଷୁଦ୍ର ସଂସ୍କରଣ ବୋଲି ଧରିନେଇ ସେମାନେ ଚନ୍ଦ୍ରର କଳଙ୍କିତ ଅଞ୍ଚଳରେ ପୃଥିବୀପରି ଜଳ ପରିପୂର୍ଣ୍ଣ ହୋଇ ରହିଛି ବୋଲି ମତବ୍ୟକ୍ତ କଲେ । ଏହି ଅନୁମାନକୁ ଭିତ୍ତିକରି ସେମାନେ ଚନ୍ଦ୍ରର ଜୀବସତ୍ତ୍ୱ ଅଛି ବୋଲି ଦାବୀ କରିବା ସଙ୍ଗେ ସଙ୍ଗେ ସେଠାକାର କେତେକ ନିମ୍ନ ଅଞ୍ଚଳକୁ ମେରିଆ ବା ସମୁଦ୍ର ନାମରେ ନାମିତ କଲେ । ଏହି ଅନୁସାରେ ସେମାନେ ଝଡ଼ର ସମୁଦ୍ର (ଓସିଆନ୍ ଅଫ୍ ଷ୍ଟର୍ମ), ମେଘ ସମୁଦ୍ର (ଓସିଆନ୍ ଅଫ୍ କ୍ଲାଉଡ୍), ବର୍ଷାର ସମୁଦ୍ର (ଓସିଅନ୍ ଅଫ୍ ରେନ୍), ନୀରବ ସମୁଦ୍ର (ଓସିଅନ୍ ଅଫ ଟ୍ରାନ୍‌କ୍ୱିଲିଟି) ଇତ୍ୟାଦି ନାମକରଣ କଲେ । ପରବର୍ତ୍ତୀ ଅନୁଧ୍ୟାନରୁ ଏହା ଭ୍ରମାତ୍ମକ ବୋଲି ଜଣାପଡ଼ିଥିଲା । ଏହି ତଥାକଥିତ ସମୁଦ୍ରମାନ ପ୍ରକୃତରେ ଜଳଶୂନ୍ୟ ଓ ବିସ୍ତୀର୍ଣ୍ଣ ଧୂସର ରଙ୍ଗର ବାଲୁକା ଭୂମି । ସେଠାରେ ଜଳ କିମ୍ବା ବାୟୁ ନ ଥିବା ଯୋଗୁଁ ତାହା ଜୀବନଧାରଣ କରିବା ପାଇଁ ସମ୍ପୂର୍ଣ୍ଣ ଅନୁପଯୋଗୀ । ପୁଣି ସୂର୍ଯ୍ୟ ଆଡ଼କୁ ଥିବା ଚନ୍ଦ୍ରପୃଷ୍ଠର ତାପମାତ୍ରା ୧୨୭ଡିଗ୍ରୀ ସେଣ୍ଟିଗ୍ରେଡ୍ ହୋଇଥିବାବେଳେ ସୂର୍ଯ୍ୟର ପଛପଟେ ଥିବା ଚନ୍ଦ୍ରପୃଷ୍ଠର ତାପମାତ୍ରା-(ମାଇନସ) ୧୭୩ ଡିଗ୍ରୀ ସେ.ଗ୍ରେ. । ଏହି ପ୍ରସଙ୍ଗରେ ଜୀବସତ୍ତ୍ୱ ଧାରଣ କରିଥିବା ପୃଥିବୀର ହାରାହାରି ଉତ୍ତାପ ଉଲ୍ଲେଖ କରାଯାଇପାରେ । ଜଣାଯାଏ ଯେ, ଏହା ୧୪ ଡ଼ିଗ୍ରୀ ସେ. ଗ୍ରେ. । ତେଣୁ ଏଠାରେ ଜଳ ତରଳ ଅବସ୍ଥାରେ ମିଳେ ଏବଂ ବିଭିନ୍ନ ଜୀବଜନ୍ତୁ ଓ ବୃକ୍ଷଲତା ଏହି ଜଳ ବା ପବନ ପାନ କରି ବଞ୍ଚିବାକୁ ସକ୍ଷମ ହୋଇପାରନ୍ତି । ଏହି ଦୃଷ୍ଟିରୁ ବିଚାରକଲେ, ସ୍ପଷ୍ଟ ଭାବେ ଜଣାଯାଏ ଯେ, ଚନ୍ଦ୍ର ଏକ ନିର୍ଜନ ନିର୍ଜୀବ ଓ ପ୍ରାଣଶୂନ୍ୟ ଉପଗ୍ରହ ହେବା ପାଇଁ ବାଧ୍ୟ । ପୁଣି ତାହା ବାସ୍ତବରେ ଅତି ଅସୁନ୍ଦର । ତାର ପୃଷ୍ଠଦେଶ ଅତ୍ୟନ୍ତ ଅସମାନ; ବାଲୁକାମୟ ଭୂଖଣ୍ଡରେ ପରିପୂର୍ଣ୍ଣ । ସେଠାରେ ଏକ କିଲୋମିଟରରୁ ଆରମ୍ଭ କରି ୨୫୦ କିଲୋମିଟର ବ୍ୟାସ ବିଶିଷ୍ଟ ରହିଥିବା ପ୍ରାୟ ତିରିଶ ହଜାର ମୃତ ଆଗ୍ନେୟଗିରିର ଗହ୍ୱର ରହିଛି । ତେଣୁ ତାହା ବସନ୍ତ ରୋଗରୁ ଉଠିଥିବା ମଣିଷର ମୁହଁପରି ଅସୁନ୍ଦର । ଏହା ଦ୍ୱାରା ଜାଣିହୁଏ ଯେ, ଚନ୍ଦ୍ର ପ୍ରକୃତରେ ସୁନ୍ଦରମୂର୍ତ୍ତି ନୁହେଁ । ଯୁଗ ଯୁଗ ଧରି ଆମେ ଚନ୍ଦ୍ରର ସୌନ୍ଦର୍ଯ୍ୟ ବିଷୟରେ ଯାହା ବର୍ଣ୍ଣନା କରି ଆସିଛେ, ତାହା ଭିତ୍ତିହୀନ ।

ସେମିତ ଚନ୍ଦ୍ରର ଯେଉଁ କଳଙ୍କ ଅଛି, ତା ପଛରେ ମଧ୍ୟ ବୈଜ୍ଞାନିକ କାରଣ ରହିଛି । ସେଠାରେ ଥିବା ଉଚ୍ଚ ପର୍ବତଶ୍ରେଣୀ ଉପରେ ସୂର୍ଯ୍ୟର ଆଲୋକ ପଡ଼ିଲେ ଛାୟା ସୃଷ୍ଟି ହୁଏ । ତେଣୁ ସେଇ ପର୍ବତମାନ ଚକ୍ ଚକ୍ ହୋଇ ଉଜ୍ଜ୍ୱଳ ଦେଖାଯାଉଥିଲେ ସୁଦ୍ଧା, ସେମାନଙ୍କ ଦ୍ୱାରା ଜାତ ହୋଇଥିବା ଛାୟାମାନ କଳଙ୍କ ରୂପେ ପରିଦୃଷ୍ଟ ହୁଏ ।

ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ଚନ୍ଦ୍ରର ସମ୍ମୁଖ ସ୍ଥଳ ପ୍ରାନ୍ତର ସବୁ ଅଧ୍ୟୟନ କରିବା ସମ୍ଭବ ହୋଇଥିଲେ ମଧ୍ୟ ତାର ଲୁକ୍କାୟିତ ଅର୍ଦ୍ଧସ୍ଥଳ ବର୍ତ୍ତମାନ ଯାଏଁ ଦେଖିବା ସମ୍ଭବପର ହୋଇ ନ ଥିଲା । ମହାକାଶ ଯୁଗ ଆରମ୍ଭ ହେବା ପରେ ଏହା ବାସ୍ତବରୂପ ନେଲା । ଅକ୍ଟୋବର ୧୯୫୯ରେ ରୁଷର ଲୁନା-୩ ଏହି ତଥ୍ୟ ପ୍ରଥମେ ଯୋଗାଇଲା । ପରେ ପରେ ଆମେରିକାର ଆପୋଲୋଯାନ ଦ୍ୱାରା ଅଧିକ ବିବରଣୀ ସଂଗୃହୀତ ହୋଇପାରିଥିଲା । ବିଭିନ୍ନ ମହାକାଶଯାନ ଦ୍ୱାରା ପ୍ରେରିତ ଆଲୋକଚିତ୍ରରୁ ଜଣାଯାଏ ଯେ, ଉକ୍ତ ଲୁକ୍କାୟିତ ଅର୍ଦ୍ଧାଂଶ ମୁଖ୍ୟତଃ ଉଲ୍କାପିଣ୍ଡର ଆଘାତ ଯୋଗୁଁ ଖଣ୍ଡବିଖଣ୍ଡିତ ଓ ଗ୍ରେଟ ବଡ଼ ଗହ୍ୱର ଦ୍ୱାରା ପରିପୂର୍ଣ୍ଣ । ପୁଣି ଆମେ ଚନ୍ଦ୍ରର ଯେଉଁ ଅର୍ଦ୍ଧସ୍ଥଳ ଦେଖୁ, ତାର ପୃଷ୍ଠର ଆବରଣ ହାଲୁକା ହୋଇଥିବାବେଳେ ଲୁକ୍କାୟିତ ଅର୍ଦ୍ଧାଂଶ ଅପେକ୍ଷାକୃତ କଠିଣ ।

ଚନ୍ଦ୍ରର ପ୍ରକୃତ ଏପରି ବିଚିତ୍ର ହୋଇଥିବା ଯୋଗୁଁ ତାର ଉତ୍ପତ୍ତି, ଇତିହାସ ଓ ନାମକରଣ ମଧ୍ୟ ତଦନୁସାରେ ବାଦାନୁବାଦ ମୂଳକ । ଚନ୍ଦ୍ରର ଉତ୍ପତ୍ତି ସମ୍ପର୍କରେ ତିନୋଟି ମତବାଦ ରହିଛି ।

(୧) ପୃଥିବୀ ସୃଷ୍ଟି ହେବା ସମୟରେ ତାହା ତରଳ ଅବସ୍ଥାରେ ତୀବ୍ର ଜୋରରେ ନିଜ ଅକ୍ଷରେ ଘୂରୁଥିଲା । ତେଣୁ ପୃଥିବୀର ଆକାର ନାସପାତି ପରି ଦେଖାଯାଉଥିଲା । ପରବର୍ତ୍ତୀ କାଳରେ ଏଥିରୁ ନାଭ କ୍ଷୁଦ୍ର ଅଂଶଗୋଟି ଖସି ଚାଲିଗଲା ଏବଂ ଏହା ଚନ୍ଦ୍ର ନାବେ ବିଦିତ ହେଲା । ଏହି ତତ୍ତ୍ୱ ଅନୁସାରେ ଚନ୍ଦ୍ରର ଉତ୍ପତ୍ତି ପୃଥିବୀର ଶରୀରରୁ ହୋଇଛି । କିନ୍ତୁ ଅନ୍ୟ ଦୁଇଟି ମତବାଦ କହେ ଯେ, ଚନ୍ଦ୍ରର ଉତ୍ପତ୍ତି ପାଇଁ ପୃଥିବୀ ଦାୟୀ ହେଲେ ମଧ୍ୟ ଏହା ପୃଥିବୀରୁ ପଦାର୍ଥମାନ ଗ୍ରହଣ କରି ଗଠିତ ହୋଇ ନାହିଁ । ତେଣୁ ଚନ୍ଦ୍ର ବହିରାଗତ । ଏହି ଦୁଇଟି ମତବାଦ ସମ୍ବନ୍ଧରେ ଉଲ୍ଲେଖ କରାଯାଇପାରେ ।

(୨) ପୃଥିବୀ ସୃଷ୍ଟି ହେଉଥିବା ବେଳେ ତାର ମାଧ୍ୟାକର୍ଷଣ କ୍ଷେତ୍ର ଦ୍ୱାରା ମହାକାଶରେ ଇତସ୍ତତଃ ଭାବେ ରହିଥିବା କେତେକ କ୍ଷୁଦ୍ରାତିକ୍ଷୁଦ୍ର ପଦାର୍ଥମାନ ଏକଜୁଟ ହୋଇ ପୃଥିବୀଠାରୁ କିଛି ଦୂରରେ କେନ୍ଦ୍ରିତ ହେଲେ । ଏହା ପରବର୍ତ୍ତୀ କାଳରେ ଚନ୍ଦ୍ର ନାମରେ ନାମିତ ହେଲା ।

(୩) ତୃତୀୟ ତତ୍ତ୍ୱ ଦେଉଛି ଯେ, ଚନ୍ଦ୍ର ଓ ପୃଥିବୀ ସମେତ ସମସ୍ତ ସୌରମଣ୍ଡଳ ଏକା ସମୟରେ ସୃଷ୍ଟି ହୋଇଛି । ପ୍ରାରମ୍ଭରେ ଚନ୍ଦ୍ର ଅନିର୍ଦ୍ଦିଷ୍ଟଭାବେ ଯାଉଥିବାବେଳେ

ଦୈବାତ୍ ପୃଥିବୀର କକ୍ଷରେ ଧରାଗଲା । ଚନ୍ଦ୍ର ଠାରୁ ପୃଥିବୀର ବସ୍ତୁତ୍ୱ ଅଧିକ ହୋଇଥିବା ଯୋଗୁଁ ତାର ମାଧ୍ୟାକର୍ଷଣ ଶକ୍ତି ମଧ୍ୟ ଅଧିକ । ତେଣୁ ପୃଥିବୀ ଚନ୍ଦ୍ରକୁ ଅଧିକାର କରିବାକୁ ସକ୍ଷମ ହେଲା । ଚନ୍ଦ୍ର ଆଉ ଆଗକୁ ଯାଇ ନପାରି ପୃଥିବୀକୁ କେନ୍ଦ୍ରକରି ବୃତ୍ତାକାରରେ ବର୍ତ୍ତମାନଯାଏଁ ଘୂରିବାରେ ଲାଗିଛି । ଏହି ମତବାଦମାନ ବର୍ତ୍ତମାନ ଯାଏଁ ଅସମାହିତ ଅବସ୍ଥାରେ ରହିଛି ।

ଚନ୍ଦ୍ରର ଉତ୍ପତ୍ତି ଓ କ୍ରମବିକାଶ ସମ୍ପର୍କରେ ବହୁ ବାଦ ବିବାଦ ଲାଗି ରହିଛି । ଏହାର ସମାଧାନ ପାଇଁ ବୈଜ୍ଞାନିକ ସ୍ତରରେ ବହୁ ପ୍ରଚେଷ୍ଟା ଚାଲିଛି । ତନ୍ମଧ୍ୟରେ ଚନ୍ଦ୍ରର ଶିଳା ଅଧ୍ୟୟନ ଅନ୍ୟତମ । ଏହି ଦିଗରେ ରୁଷ ମଣିଷବିହୀନ ଅନୁସନ୍ଧାନ ଯନ୍ତ୍ରଯାନ ଚଳାଇଥିବାବେଳେ ଯୁକ୍ତରାଷ୍ଟ୍ର ଆମେରିକା ମାନବଯୁକ୍ତ ଅନୁସନ୍ଧାନ ଯାନ ବ୍ୟବହାର କରିଛି ।

ରୋବୋଟ୍ ବା ଯନ୍ତ୍ରଚାଳିତ ମହାକାଶଯାନର ବ୍ୟବହାର ଦିଗରେ ରୁଷ ଯଥେଷ୍ଟ ଅଗ୍ରଗତି କରିଛି । ସେପ୍ଟେମ୍ବର ୧୯୭୦ରେ ଲୁନା-୧୬ ଚନ୍ଦ୍ରର ସି ଅଫ୍ ଫେର୍ଟିଲିଟିରେ ଅବତରଣ କଲା । ସେଠାରୁ ଚନ୍ଦ୍ରର ମୃତ୍ତିକା ସଂଗ୍ରହ କରି ପୃଥିବୀକୁ ଫେରି ଆସିଲା । ସେପ୍ଟେମ୍ବର ୧୯୭୨ରେ ଲୁନା-୨୦ ଚନ୍ଦ୍ରର ଏକ ପାର୍ବତ୍ୟାଞ୍ଚଳରେ ଓହ୍ଲାଇ ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଶିଳା ପୃଥିବୀକୁ ଆଣିପାରିଥିଲା । ଏହି ଅଞ୍ଚଳ ଏପରି ଦୁର୍ଗମ ଯେ, ସେଠାରେ କୌଣସି ମହାକାଶଚାରୀ ଓହ୍ଲାଇବା ସମ୍ଭବପର ନୁହେଁ । ଏହି ପରିପ୍ରେକ୍ଷୀରେ ମଣିଷବିହୀନ ଯାନର ସଫଳତା ଉଲ୍ଲେଖଯୋଗ୍ୟ । ଠିକ୍ ସେମିତି ଲୁନାଖୋଡ୍-୧ ନାମକ ଏକ ଗାଡ଼ି ଚନ୍ଦ୍ରରେ ପ୍ରାୟ ଏଗାର ମାସ କାର୍ଯ୍ୟକ୍ଷମ ରହିଥିଲା ଏବଂ ଚନ୍ଦ୍ରପୃଷ୍ଠର ୮୦,୦୦୦ ବର୍ଗମିଟର ଅଞ୍ଚଳ ପରୀକ୍ଷା ନିରୀକ୍ଷା କରି ବିଭିନ୍ନ ତଥ୍ୟ ପୃଥିବୀର ବିଜ୍ଞାନାଗାରକୁ ଯୋଗାଇଥିଲା । ସେଇ ଗାଡ଼ିର ଟେଲିଭିଜନ କ୍ୟାମେରା ଚନ୍ଦ୍ରପୃଷ୍ଠର ୧୦,୦୦୦ ଛବି ପ୍ରେରଣ କରିଥିଲା ।

ଆପୋଲୋ ଅଭିଯାନ ଦ୍ୱାରା ଆମେରିକାର ମହାକାଶଚାରୀମାନେ ସର୍ବପ୍ରଥମେ ଜୁଲାଇ ୧୯୬୯ରେ ଚନ୍ଦ୍ରର ନୀରବ ସମୁଦ୍ରରେ ଓହ୍ଲାଇଲେ । ପରବର୍ତ୍ତୀକାଳରେ ବିଭିନ୍ନ ଆପୋଲୋଯାନ ପଠାଯାଇ ମହାକାଶଚାରୀଙ୍କ ଦ୍ୱାରା ୩୮୦ କିଲୋଗ୍ରାମ ଓଜନର ଚନ୍ଦ୍ରଶିଳା ସଂଗୃହୀତ ହୋଇଥିଲା ।

ଏହି ଚନ୍ଦ୍ରଶିଳା ଉପରେ ବିଭିନ୍ନ ପରୀକ୍ଷା ନିରୀକ୍ଷା ଗବେଷଣାଗାରମାନଙ୍କରେ ବ୍ୟାପକସ୍ତରରେ କରାଯାଇଛି । ଏହା ମୁଖ୍ୟତଃ କେତୋଟି ପଥର ବା ବାସାଲ୍ଟ ପଥର ।

ଆମ ଭୂପୃଷ୍ଠରେ ଅଗ୍ନେୟଗିରିରୁ ଯେଉଁ ତରଳ ଲାଭା ବାହାରି ଥାଏ, ତାହା ସହିତ ଏହି ଶିଳାର ସାମଞ୍ଜସ୍ୟ ରହିଛି । ଜଣାଯାଏ ଯେ, ଚନ୍ଦ୍ରଶିଳାର ବୟସ ତିନରୁ ସ୍ୱର ହଜାର ନିୟୁତବର୍ଷ ହେବ । ପୃଥିବୀର ଜଣାଶୁଣା ଶିଳାମାନଙ୍କ ଠାରୁ ଏମାନଙ୍କ ବୟସ ଯଥେଷ୍ଟ ଅଧିକ ହେବ । ବର୍ତ୍ତମାନ ବିଶ୍ୱାସ କରାଯାଉଛି ଯେ ପ୍ରାୟ ୪,୬୦୦ ନିୟୁତବର୍ଷ ପୂର୍ବେ ଚନ୍ଦ୍ରର ଉତ୍ପତ୍ତି ହୋଇଥିଲା । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଏହି ସମୟରେ ସୌରମଣ୍ଡଳର ମଧ୍ୟ ସୃଷ୍ଟି ହୋଇଥିଲା ।

ସୌରମଣ୍ଡଳର ସୃଷ୍ଟି ହେବା ବେଳେ ଚନ୍ଦ୍ର ପୃଥିବୀ ନିକଟରେ ଏକ କ୍ଷୁଦ୍ର ଗ୍ରହ ରୂପେ ବିଦ୍ୟମାନ ଥିଲା । ସେମାନଙ୍କ ମଧ୍ୟରେ ଥିବା ମାଧ୍ୟାକର୍ଷଣ ଶକ୍ତି ଯୋଗୁଁ ସେମାନେ ସୃଷ୍ଟିର ଆରମ୍ଭରୁ ଏମିତି ଅବସ୍ଥାରେ ରହି ଆସିଛନ୍ତି । ଏହି ଦୃଷ୍ଟିରୁ ବହୁ ବୈଜ୍ଞାନିକ ମତ ଦେଉଛନ୍ତି ଯେ, ଚନ୍ଦ୍ର ଓ ପୃଥିବୀ ଏକ ଡବଲ୍-ପ୍ଲାନେଟ ବା ଯୋଡ଼ି-ଗ୍ରହ । ପୁଣି ଜଣାଯାଏ ଯେ, ସୌରମଣ୍ଡଳରେ ଏମିତି କୌଣସି ଉପଗ୍ରହ ନାହିଁ, ଯାହାକି ତାର ମୂଳଗ୍ରହ ସହିତ ଆକାର ଓ ଓଜନରେ ଚନ୍ଦ୍ରପରି ଏତେ ମାତ୍ରାରେ ନିକଟତର । ଉଦାହରଣ ସ୍ୱରୂପ, ଚନ୍ଦ୍ରର ବ୍ୟାସାର୍ଦ୍ଧ ପୃଥିବୀର ବ୍ୟାସାର୍ଦ୍ଧର ଏକ-ଚତୁର୍ଥାଂଶ । ପୁଣି ଏହାର ବସ୍ତୁତ୍ୱ ଏତେ ଅଧିକ ଯେ, ତାହା ବୁଧପରି ଗୋଟିଏ ଗ୍ରହର ଦୁଇ-ତୃତୀୟାଂଶ ହେବ । ତେଣୁ ଉଭୟ ଆକାର ଓ ବସ୍ତୁତ୍ୱ ଦୃଷ୍ଟିରୁ ଚନ୍ଦ୍ର ସେମିତି କିଛି କମ୍ ନୁହେଁ ଯେ, ତାକୁ ଗ୍ରହ ନ କହି ଉପଗ୍ରହ କୁହାଯିବ । ଏହି ଦୃଷ୍ଟିରୁ ଚନ୍ଦ୍ରକୁ ପୃଥିବୀର ଉପଗ୍ରହ ବୋଲି କହିବା ସମୀଚୀନ ନୁହେଁ । ଚନ୍ଦ୍ର ଓ ପୃଥିବୀକୁ ଏକ ଯୋଡ଼ି-ଗ୍ରହ ବୋଲି ଧରିବା ଯଥାର୍ଥ ମନେହୁଏ । ଭାରସାମ୍ୟ ରକ୍ଷି ପାରି ନ ଥିବା ଗୋଟିଏ ଡମ୍ବ୍-ବେଲ୍ ପରି ଚନ୍ଦ୍ର ଓ ପୃଥିବୀ ଗୋଟିଏ ମାଧ୍ୟାକର୍ଷଣ କେନ୍ଦ୍ରକୁ କେନ୍ଦ୍ରକରି ବୁଲୁଥାନ୍ତି । ଏହି ଜଟିଳ ପରିସ୍ଥିତିରେ ଭାରସାମ୍ୟ ରକ୍ଷା କରିବା ପାଇଁ ପୃଥିବୀ ଅଣ୍ଡାକୃତି ପଥରେ ସୂର୍ଯ୍ୟ ଚାରିପଟେ ବୁଲିବାବେଳେ ନିଜର ପାର୍ଶ୍ୱସ୍ଥିତିକୁ ସାମାନ୍ୟ ଏପଟସେପଟ କରି ସନ୍ତୁଳନ ରକ୍ଷା କରୁଥାଏ ଏବଂ ଚନ୍ଦ୍ର ପୃଥିବୀକୁ କେନ୍ଦ୍ର କରି ବୁଲୁଥାଏ ।

ବର୍ତ୍ତମାନ ଚନ୍ଦ୍ରର ଇତିହାସ ଓ କ୍ରମବିକାଶ ପ୍ରତି ଦୃଷ୍ଟି ଦିଆଯାଉ । ପ୍ରାରମ୍ଭରେ ଚନ୍ଦ୍ରର ଶରୀରରେ ଥିବା ପଦାର୍ଥ-କଣିକାମାନ ସଙ୍କୋଚନ-ପ୍ରକ୍ରିୟାରେ କେନ୍ଦ୍ରୀଭୂତ ହେବାରେ ଲାଗିଲେ । ସୁଦୂର ଅତୀତରେ ଏହି ପ୍ରକ୍ରିୟା ଚନ୍ଦ୍ରରେ ସଂଗଠିତ ହେଉଥିବାବେଳେ, ତା ଶରୀରରେ ଉତ୍ତାପ ପ୍ରଚଣ୍ଡ ଭାବେ ବୃଦ୍ଧି ପାଉଥାଏ । ଫଳରେ ହାଲୁକା ହୋଇଥିବା ଯୋଗୁଁ ଚନ୍ଦ୍ରପୃଷ୍ଠରେ ରହିଥିବା ପଦାର୍ଥମାନ ତରଳି ନିମ୍ନ ଅଞ୍ଚଳକୁ ବହିଲା । ପରବର୍ତ୍ତୀ କାଳରେ ଏହି ତରଳ ପଦାର୍ଥ ଶୀତଳ ହେଲା ଓ

କଠିନ ରୂପ ନେଲା । କେତେକ ସ୍ଥାନରେ ବହୁତ ତରଳ ପଦାର୍ଥ ଜମା ହୋଇଯିବା ଯୋଗୁଁ ଉଚ୍ଚ ପୃଷ୍ଠଭୂମି ମଧ୍ୟ ସୃଷ୍ଟି ହୋଇଥିଲା ।

ଚନ୍ଦ୍ର ଇତିହାସର ଏହି ସମୟରେ ମହାଶୂନ୍ୟରେ ଘୂରି ବୁଲୁଥିବା ଉଲ୍କା-ଖଣ୍ଡମାନ ବହୁପରିମାଣରେ ଚନ୍ଦ୍ର ଉପରେ ପିଟି ହେଉଥାନ୍ତି । ଯେଉଁ ଉଲ୍କାମାନ ଚନ୍ଦ୍ରର ଉଚ୍ଚ ପୃଷ୍ଠଭୂମିକୁ ଆଘାତ କଲେ, ସେଠାରେ ପର୍ବତମାଳା ସୃଷ୍ଟି କରିବାରେ ସମର୍ଥ ହେଲେ । ଠିକ୍ ସେମିତି ଯେଉଁ ଉଲ୍କାମାନ ଚନ୍ଦ୍ରର ସମତଳ ଅଞ୍ଚଳରେ ଧକ୍କା ଦେଲେ, ସେଠାରେ ଗହ୍ୱର ବା ସମୁଦ୍ର ଜାତ ହେଲା ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଚନ୍ଦ୍ରର ତଳର ଅନ୍ତର୍ଦେଶରେ ଯେଉଁ ସବୁ ପଦାର୍ଥମାନ ଜମାହୋଇ ରହିଥିଲେ, ତନ୍ମଧ୍ୟରେ ତେଜସ୍କ୍ରିୟ (ରେଡ଼ିଓ ଆକ୍ଟିଭ) ଅଣୁ ବିଦ୍ୟମାନ ଥିବାଯୋଗୁଁ ଆଣବିକ ପ୍ରକ୍ରିୟାରେ ଅନବରତ ଉତ୍ତାପ ଉତ୍ପତ୍ତି ହେଉଥାଏ । ତେଣୁ ସେଠାରେ ମଝିରେ ମଝିରେ ଆଗ୍ନେୟଗିରିର ମୁହଁଫାଟ ହେଉଥାଏ । ଭୂପୃଷ୍ଠକୁ ବିଦୀର୍ଣ୍ଣ କରି ଆଗ୍ନେୟଗିରିରୁ ତରଳ ଲାଭା ବହୁଥାଏ ଏବଂ ଉଲ୍କା ଦ୍ୱାରା ସୃଷ୍ଟ ହୋଇଥିବା ଖାଲୁଆ ଅଂଶମାନଙ୍କୁ କିଛି ପରିମାଣରେ ପୂର୍ଣ୍ଣ କରିବାରେ ଏହି ଲାଭା ସକ୍ଷମ ହେଉଥାଏ ।

ଏହି ପ୍ରକାରେ ଚନ୍ଦ୍ରରେ ଅସ୍ଥିରତା ଓ ଉତ୍ପାତଜ ପ୍ରାକୃତିକ ପରିବର୍ତ୍ତନମାନ ସୃଷ୍ଟିର ଆରମ୍ଭରେ ଲାଗି ରହିଥିଲା । କିନ୍ତୁ ଗତ ତିନିହଜାର ନିୟୁତବର୍ଷ ପୂର୍ବରୁ ଏହା ପ୍ରାୟତଃ ବନ୍ଦ ହୋଇଗଲାଣି । ବର୍ତ୍ତମାନ ଚନ୍ଦ୍ର ମୃତ ଓ ଶାନ୍ତ । ଅବଶ୍ୟ ସେଠାରେ ବେଳେ ବେଳେ ମୃତ ଆଗ୍ନେୟଗିରିମାନଙ୍କରେ ସାମାନ୍ୟ ଅଗ୍ନ୍ୟୁତ୍ପାତ ପରିଲକ୍ଷିତ ହୁଏ ।

ଆମ ପୃଥିବୀରେ ମହାଦେଶ, ମହାସାଗର ଓ ଜୀବଜଗତର ପ୍ରଥମ ସୂଚନା ଜାତ ହେଉଥିବାବେଳେ ପ୍ରକୃତ ଯେଉଁ ଅବସ୍ଥାରେ ଥିଲା, ତାର ବହୁ ପୂର୍ବକାଳୀନ ଅବସ୍ଥା ବର୍ତ୍ତମାନ ଚନ୍ଦ୍ରରେ ଅଛି । ତେଣୁ ଆମେ ଯଦି ପୃଥିବୀରେ ଅତୀତରେ ବିଦ୍ୟମାନ ଥିବା ତିନି ହଜାର ନିୟୁତବର୍ଷ ପୂର୍ବର ପ୍ରାକୃତିକ ଅବସ୍ଥା ଓ ପରିସ୍ଥିତି ଦେଖିବାକୁ ଚାହୁଁ, ତାହାହେଲେ ବର୍ତ୍ତମାନ ଆମକୁ ଚନ୍ଦ୍ରପୃଷ୍ଠକୁ ଯିବାକୁ ପଡ଼ିବ । ଚନ୍ଦ୍ରରେ ବାୟୁ ନାହିଁ, ବର୍ଷା ନାହିଁ । ସେଠାରେ ଶିଳା କିମ୍ବା ମୃତ୍ତିକା କ୍ଷୟ ହେବାର ବିଶେଷ ସମ୍ଭାବନା ନାହିଁ । ତେଣୁ ତିନି ହଜାର ନିୟୁତବର୍ଷ ପୂର୍ବେ ଚନ୍ଦ୍ର ଯେଉଁ ଅବସ୍ଥାରେ ଥିଲା, ବର୍ତ୍ତମାନ ମଧ୍ୟ ତାହା ସେମିତି ରହିଛି—ସତେ ଯେମିତି ସେ ସେଇଦିନଠାରୁ ମରିଗଲାଣି ! ଏହି ଅବଧି ମଧ୍ୟରେ ଅବଶ୍ୟ ଆମ ପୃଥିବୀରେ ଜୀବଜଗତ ସୃଷ୍ଟି ହେଲାଣି ।

ବାୟୁମଣ୍ଡଳ ଯୋଗୁଁ ବନ୍ୟା, ବାତ୍ୟା ଦେଖାଦେଇ ପୃଥିବୀର ପୃଷ୍ଠଭାଗରେ ବେଳେ ପରିବର୍ତ୍ତନ ଘଟିଲାଣି । ତେଣୁ ପୃଥିବୀର ପ୍ରକୃତଗତ ଅତୀତ ଜାଣିବା ପାଇଁ ଆମକୁ ପୃଥିବୀ ବର୍ତ୍ତମାନ କୌଣସି ପ୍ରତ୍ୟକ୍ଷ ଓ ସଠିକ ପ୍ରମାଣ ଯୋଗାଇ ନ ପାରିଲେ ମଧ୍ୟ ଚନ୍ଦ୍ର ଯୋଗାଇ ପାରିବ । ଏହି ଦୃଷ୍ଟିରୁ ଚନ୍ଦ୍ରର ଗବେଷଣା ପାଇଁ ଭାପୂର୍ଣ୍ଣ ରହିଛି ।

ଅବଶ୍ୟ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଚନ୍ଦ୍ରରେ ଝଡ଼ ବନ୍ୟା ବର୍ଷା ହେଉ ନ ଥିବା ଯୋଗୁଁ ସେଠାରେ ଶିଳା ଓ ମୃତ୍ତିକାର କ୍ଷୟ ହୋଇ ନ ଥାଏ । ତଥାପି କ୍ଷୁଦ୍ର ଉଲ୍କାପିଣ୍ଡମାନ ଚନ୍ଦ୍ର ଉପରେ ଅନବରତ ପଡ଼ୁଥିବା ଯୋଗୁଁ ସେଠାରେ ଶିଳା କିଛି ପରିମାଣରେ ଚୂର୍ଣ୍ଣ ହୁଏ । ତେଣୁ ଚନ୍ଦ୍ରରୁ ଅଣାଯାଇଥିବା ଶିଳାରେ ଧୂଳିର ଏକ ଆସ୍ତରଣ ଜମି ରହିଥିବା ଦେଖାଯାଏ । ବେଳେବେଳେ ଚନ୍ଦ୍ରର ଏହି ଧୂଳି-ଆସ୍ତରଣ ସେଠାରେ ମହାକାଶଯାନ ଅବତରଣ ସମୟରେ ଅସୁବିଧା ସୃଷ୍ଟି କରିଥାଏ । ସମୟେ ସମୟେ ଏହି ଧୂଳି-ସ୍ତର ଚନ୍ଦ୍ରରେ ସ୍ଥାପିତ କରାଯାଇଥିବା ମହାକାଶଯାନ ଉପରେ ଲଦି ହୋଇଯାଏ ଓ ଯନ୍ତ୍ରମାନ ଅଚଳ ହୋଇଯାଏ । ତଥାପି ଅନ୍ତରୀକ୍ଷ-ଯାତ୍ରୀମାନେ ସେଠାରେ ଓହ୍ଲାଇ ଚଳବୁଲ କରିବାରେ ବିଶେଷ ଅସୁବିଧା ହୋଇ ନ ଥାଏ । ମୋଟାମୋଟି ସବୁ କହିବାକୁ ଗଲେ, ଚନ୍ଦ୍ର-ଯାତ୍ରା ଯେ ସୃଷ୍ଟିର ରହସ୍ୟ ଉଦ୍‌ଘାଟନ କରିବାରେ ସହାୟକ ହେବ, ଏଥିରେ ଦ୍ୱିମତ ନାହିଁ ।



# ଅନ୍ତରୀକ୍ଷ ଗବେଷଣା ଓ ଚନ୍ଦ୍ର

ରାତିରେ ମେଘମୁକ୍ତ ଆକାଶକୁ ଚାହିଁଲେ ସାଧାରଣତଃ ଆମ ମନ ନୈସର୍ଗିକ ଆନନ୍ଦରେ ଉଲ୍ଲସିତ ହୋଇଉଠେ । ଆମର ଏହି ପ୍ରବୃତ୍ତି ଯୁଗଯୁଗ ଧରି ରହି ଆସିଛି । ଏପରିକି ବର୍ତ୍ତମାନ ଯୁଗରେ ମଧ୍ୟ ବଡ଼ ବଡ଼ ସହରମାନଙ୍କରେ ଆକାଶ ନିର୍ମଳ ଓ ସ୍ୱଚ୍ଛଭାବେ ଦେଖି ହୁଏ ନାହିଁ ବୋଲି ପ୍ଲାନେଟେରିଅମ୍‌ର କଳ୍ପନା କରାଯାଇଛି ।

କିନ୍ତୁ ଆକାଶ ସମସ୍ତଙ୍କ ପାଇଁ ସବୁଯୁଗରେ ସମାନ ସୂଚନା ଓ ଆବେଦନ ଦେଇ ନ ଥାଏ । ଧର୍ମଶାସ୍ତ୍ରଜ୍ଞଙ୍କ ପାଇଁ ଏହା ବିଭିନ୍ନ ଦେବଦେବୀଙ୍କର ଉପସ୍ଥିତି ବିଷୟ ଜଣାଉଥିବାବେଳେ କବିମାନଙ୍କ ପାଇଁ ରହସ୍ୟମୟ ଓ ପ୍ରେମସଂସ୍ପର୍ଶସୂଚକ ହୋଇଥାଏ । ବୈଜ୍ଞାନିକ ଓ ମହାକାଶଯାତ୍ରୀଙ୍କ ପାଇଁ ବୈଜ୍ଞାନିକ ଗବେଷଣା ଓ ଦୁଃସାହସିକ ଯାତ୍ରା ପାଇଁ ଖୋରାକ ଯୋଗାଉଥିବାବେଳେ ଜ୍ୟୋତିଷୀମାନଙ୍କ ପାଇଁ ମଣିଷ ଉପରେ ଗ୍ରହନକ୍ଷତ୍ରର ରହସ୍ୟାଚ୍ଛନ୍ନ ପ୍ରଭାବ ସମ୍ପର୍କରେ ତଥ୍ୟ ଯୋଗାଏ ।

ଏହା ବିଭିନ୍ନ ବିଶେଷଜ୍ଞଙ୍କ ପାଇଁ ଭିନ୍ନ ଭିନ୍ନ ରୂପ ନେଉଥିଲେ ସୁଦ୍ଧା, ସାଧାରଣ ଲୋକଙ୍କ ପାଇଁ ମୁଖ୍ୟତଃ ଧାର୍ମିକରୂପ ଧାରଣ କରିଥାଏ, ଯାହାକି ବିଭିନ୍ନ ପୁରାଣ ଦ୍ୱାରା ପରିପୁଷ୍ଟ ।

ସ୍ୱର୍ଗ କେଉଁଠାରେ ଅଛି ବୋଲି ପ୍ରଶ୍ନ କରାଗଲେ, ସାଧାରଣ ଲୋକେ ସିଧା ଉପରକୁ ଆଙ୍ଗୁଠି ଉଠାଇ ଆକାଶକୁ ଚିହ୍ନିତ କରିଥାନ୍ତି । ପ୍ରକୃତରେ ପ୍ରାଚୀନକାଳରୁ ଆମ ମନରେ ବିଶ୍ୱାସ ରହିଆସିଛି ଯେ, ଆକାଶରେ ତେତିଶିକୋଟି ଦେବତା ବସବାସ କରୁଛନ୍ତି । ପୁଣି ଏହି ଗ୍ରହ ନକ୍ଷତ୍ରମାନଙ୍କୁ ଗୋଟିଏ ଗୋଟିଏ ଦେବତା ବୋଲି ବିଭିନ୍ନ ପୌରାଣିକ ଉପାଖ୍ୟାନମାନଙ୍କରୁ ପ୍ରତିପାଦିତ ହୋଇଥାଏ । ଏହି ପ୍ରକାର ଉପାଖ୍ୟାନମାନ ବୈଜ୍ଞାନିକ ବିଶ୍ଳେଷଣରୁ କେତେ ଦୂର ଭିନ୍ନ ଓ ଅମୂଳକ ତାହା ନିମ୍ନ ଦୃଷ୍ଟାନ୍ତରୁ ଜଣାପଡ଼େ ।

ପୌରାଣିକ ମତ ଅନୁସାରେ, ସୃଷ୍ଟିର ଆରମ୍ଭରେ ଯେତେବେଳେ ସମୁଦ୍ର-ମନ୍ଥନ କରାଗଲା, ଦେବତାଗଣ ଅମୃତ ପାନ କରିବା ପାଇଁ ଗୋଟିଏ ଧାଡ଼ିରେ ବସିଲେ । ସେତେବେଳେ ଅନ୍ୟ ଏକ ସ୍ୱତନ୍ତ୍ର ଧାଡ଼ିରେ ରାକ୍ଷସଗଣ ଏକତ୍ରିତ ହୋଇଥାନ୍ତି । ଏହି ପରିସ୍ଥିତିରେ ଗୋଟିଏ ରାକ୍ଷସ ଦେବତାର ଶରୀରର ଧାରଣ କରି ଦେବତାଙ୍କ ଧାଡ଼ିରେ ବସିଗଲା । ଚନ୍ଦ୍ର ଓ ସୂର୍ଯ୍ୟ ଏହି ଛଦ୍ମବେଶୀ ଦାନବକୁ ଚିହ୍ନିପାରି ଅନ୍ୟାନ୍ୟ ଦେବତାଙ୍କୁ ଏହି ବିଷୟ ଜଣାଇଲେ । ବିଷ୍ଣୁ ଏହାଶୁଣି ପ୍ରମାଦ ଗଣିଲେ । ସେ ତୁରନ୍ତ ଚକ୍ର ପେଷି ଏହି ଦାନବର ମସ୍ତକ ଛେଦନ କଲେ । କିନ୍ତୁ ଦାନବଟି ଅମୃତ ପାନ କରିଥିବା ଯୋଗୁଁ ତାର ଶରୀର ଦୁଇଖଣ୍ଡ ହୋଇଗଲେ ସୁଦ୍ଧା ସେ ଜୀବିତ ରହିଲା । ତାର ମସ୍ତକ-ଭାଗର ନାମ ରାହୁ ଓ ଅବଶିଷ୍ଟ ଶରୀରର ନାମ କେତୁ ରଖାଗଲା । କିନ୍ତୁ ଏହି ଘଟଣା ପାଇଁ ଚନ୍ଦ୍ର ଓ ସୂର୍ଯ୍ୟ ଦାୟୀ ବୋଲି ସେ ଦାନବ ଭାବିଲା । ତେଣୁ ପ୍ରତିଶୋଧ ନେବା ପାଇଁ ସେ କେତେକ ପୂର୍ଣ୍ଣିମା ଓ ଅମାବାସ୍ୟା ବେଳେ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଗ୍ରାସ କରେ । ଏହାକୁ ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ କୁହାଯାଏ । ହିନ୍ଦୁମାନେ ଏହି ଦିନମାନଙ୍କରେ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ଦୁର୍ଦ୍ଦଶା ପ୍ରତି ଦୁଃଖ ଓ ସହାନୁଭୂତି ଜଣାଇବା ପାଇଁ ପୂଜାଉପାସନା ତଥା ପ୍ରାୟଶ୍ଚିତ୍ତ କରିଥାନ୍ତି । ସେଇଦିନ ମଧ୍ୟ ବିଭିନ୍ନ କାର୍ଯ୍ୟାଳୟ, ଅଦାଲତ ଇତ୍ୟାଦି ବନ୍ଦ ରଖାଯାଏ ।

କିନ୍ତୁ ଆଧୁନିକ ଯୁଗରେ ବିଜ୍ଞାନ ଏହିପ୍ରକାର ବର୍ଣ୍ଣନାକୁ କୌଣସି ଗୁରୁତ୍ୱ ଦିଏ ନାହିଁ । ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ ପାଇଁ ଭିନ୍ନ ବୈଜ୍ଞାନିକ କାରଣ ରହିଛି । ଦୈନନ୍ଦିନ ଜୀବନରେ ଆମେ ଲକ୍ଷ୍ୟକରୁଁ ଯେ, ଯେତେବେଳେ ଅସ୍ୱଚ୍ଛ ପଦାର୍ଥ ଉପରେ ଆଲୋକ ପଡ଼େ, ସେତେବେଳେ ଛାୟା ସୃଷ୍ଟି ହୁଏ । ସୂର୍ଯ୍ୟକୁ କେନ୍ଦ୍ରକରି ପୃଥିବୀ ଓ

ପୃଥିବୀକୁ କେନ୍ଦ୍ର କରି ଚନ୍ଦ୍ର ଅନବରତ ନିୟମିତଭାବେ ଘୂରୁଥିବା ଯୋଗୁଁ ପୃଥିବୀ ଓ ଚନ୍ଦ୍ରର ଛାୟା ଯେତେବେଳେ ଏମାନଙ୍କର ଶରୀରକୁ ପୂର୍ଣ୍ଣ ବା ଆଂଶିକ ଭାବେ ଘୋଡାଇ ଦିଏ, ସେତେବେଳେ ଏଇ ତଥାକଥିତ ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ ପରିଦୃଷ୍ଟ ହୁଏ । ତେଣୁ ରାହୁ ଦ୍ୱାରା ଚନ୍ଦ୍ର କିମ୍ବା ସୂର୍ଯ୍ୟଗ୍ରାସ ବିଜ୍ଞାନସମ୍ମତ ନୁହେଁ । ଅବଶ୍ୟ ଏହି ଗ୍ରହଣପାତବେଳେ ଅନେକ ଖାଦ୍ୟତ୍ୟାଗ ଇତ୍ୟାଦି ପ୍ରାୟଶ୍ଚିତମାନ ଯେପରି ପାଳନ କରୁଛେଁ, ତା ପଛରେ କିଛି ବୈଜ୍ଞାନିକସମ୍ମତ ରହିପାରେ । ପୁଣି ଜ୍ୟୋତିଷଶାସ୍ତ୍ରର ଜାତକ-ଚକ୍ରର ବିଜ୍ଞାନ ଦ୍ୱାରା ସଂଗଠିତ ନ ହେଲେ ସୁଦ୍ଧା ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ ପାଇଁ ତଦ୍ୱାରା ଯେଉଁ ଦିନ ଓ ଦଣ୍ଡ ନିର୍ଦ୍ଧାରିତ କରାଯାଇଥାଏ, ତାହା ପ୍ରାୟତଃ ନିର୍ଭୁଲ ।

ଧାର୍ମିକ ମତକୁ ଛାଡ଼ିଦେଲେ ଅନେକେ କବି ଚନ୍ଦ୍ରକୁ ସୌନ୍ଦର୍ଯ୍ୟର ପ୍ରତୀକ ବୋଲି ଭାବି କାବ୍ୟ-କବିତା ରଚନା କରିଥାନ୍ତି । କଥିତ ଅଛି ଯେ, ଲି ପୋ (୭୦୫-୬୨) ଚୀନ୍ ଦେଶର ଜଣେ କବି ଥିଲେ । ତାଙ୍କ କବିତାର ମୁଖ୍ୟ ଆଧାର ଥିଲା ପ୍ରେମ ଓ ମଦ । ଥରେ ସେ ମାତାଲ ଅବସ୍ଥାରେ ନଦୀରେ ନୌକାବିହାର କରୁଥିବାବେଳେ ନଦୀଜଳରେ ଚନ୍ଦ୍ରଙ୍କ ପ୍ରତିବିମ୍ବକୁ ସପ୍ରେମ ଚୁମ୍ବନ ଦେବା ପାଇଁ ଚେଷ୍ଟା କରୁଥିବା ବେଳେ ପାଣିରେ ବୁଡ଼ି ମରିଗଲେ । କେବଳ ଚୀନ୍ ଦେଶ ନୁହେଁ, ଆମ ଦେଶରେ ମଧ୍ୟ ଚନ୍ଦ୍ରଙ୍କୁ ପ୍ରେମରସର ଆଧାର ବୋଲି ଗ୍ରହଣ କରାଯାଇଛି । ପୁରାଣରେ ବର୍ଣ୍ଣିତ ଅଛି ଯେ, ଚନ୍ଦ୍ର, ନିଜ ଗୁରୁ ବୃହସ୍ପତିଙ୍କ ସ୍ତ୍ରୀ ତାରାଙ୍କ ଅନନ୍ୟ ସୌନ୍ଦର୍ଯ୍ୟରେ ମୁଗ୍ଧହୋଇ ତାଙ୍କୁ ହରଣ କଲେ । ଏହି ପାପକର୍ମ ଯୋଗୁଁ ସେ ଶାପଗ୍ରସ୍ତ ହୋଇ ଯକ୍ଷ୍ମାରୋଗରେ ପୀଡ଼ିତ ହେଲେ । ଏହି ଉପାଖ୍ୟାନର ଅନୁରୂପ ଆମେ ଚନ୍ଦ୍ରଙ୍କୁ କାମ ଓ ଯୌବନ ଭାବନାର ଜନକପ୍ରତୀକ ବୋଲି ଗ୍ରହଣ କରୁଁ । କାମଶାସ୍ତ୍ରରେ ଉଲ୍ଲେଖ କରାଯାଇଛି ଯେ, ଯୁବତୀମାନଙ୍କର ଭିନ୍ନ ଭିନ୍ନ ଅଂଶ ଭିନ୍ନ ଭିନ୍ନ ତିଥିରେ ଉତ୍ତେଜିତ ହୋଇଥାନ୍ତି । ଏହି ଅଙ୍ଗମାନଙ୍କର କେନ୍ଦ୍ରକୁ ଚନ୍ଦ୍ର ବୋଲି ବୁଝାଯାଏ । ତେଣୁ ରମଣ ସମୟରେ ନିର୍ଦ୍ଦିଷ୍ଟ ତିଥିର ନିର୍ଦ୍ଦିଷ୍ଟ ଚନ୍ଦ୍ରକୁ ଉତ୍ତେଜିତ କରିପାରିଲେ, ଯୁବତୀ ଜଣକ କାମରସରେ ଉନ୍ମତ୍ତ ହୋଇଯାଏ । ଏହି ଦୃଷ୍ଟିରୁ ପ୍ରେମିକ ପ୍ରେମିକାମାନେ ଚନ୍ଦ୍ରଙ୍କୁ ଆଖି ଆଗରେ ରଖି ସୁନେଲି କଳ୍ପନାରେ ମଗ୍ନ ରହୁଥିବା ତଥ୍ୟକୁ ସ୍ପଷ୍ଟ କରାଯାଇପାରେ ।

କେବଳ ଯୁବକ ଯୁବତୀ ନୁହନ୍ତି; ପିଲାମାନେ ମଧ୍ୟ ଚନ୍ଦ୍ରଙ୍କ ଦ୍ୱାରା ଆକର୍ଷିତ ହୋଇଥାନ୍ତି । ମା'ମାନେ ଶିଶୁକୁ କୋଳରେ ଧରି ଗାଇଥାନ୍ତି, "ଆ ଜହ୍ନମାମୁଁ ସରଗ ଶଶୀ, ମୋ କାହ୍ନୁ କୋଳରେ ପଡ଼ ରୁ ଖସି ।" କଥିତଅଛି ଯେ ଯେତେବେଳେ ଶ୍ରୀକୃଷ୍ଣ ପିଲାଦିନେ ଜହ୍ନ ଧରିବା ପାଇଁ ଅଡ଼ି ବସିଲେ ତାଙ୍କ ମା ବଡ଼ ଅଡ଼ୁଆରେ

ପଢ଼ିଲେ । ପରିଶେଷରେ ସେ ଗୋଟିଏ କୌଶଳ ପାଖ ଦର୍ପଣଟିଏ ଆଣି ସେଥିରେ ଜନ୍ତୁକୁ ପ୍ରତିଫଳିତ କରାଇ ପୁଅ ହାତରେ ଧରାଇ ଦେଲେ । ଏମିତି ସେ ପୁଅକୁ ସନ୍ତୁଷ୍ଟ କରିପାରିଥିଲେ । କିନ୍ତୁ ଦିନେ ସେହି ଜନ୍ତୁ ଧରିବା ଏକ ଦିବାସ୍ୱପ୍ନ ଥିଲା, ତାହା ବର୍ତ୍ତମାନ ବାସ୍ତବ ରୂପ ନେଇଛି ।

ଆକାଶ ଓ ଚନ୍ଦ୍ରଙ୍କ ସମ୍ପର୍କରେ ଭିନ୍ନ ଲୋକ ଭିନ୍ନ ଦୃଷ୍ଟିଭଙ୍ଗୀ ଗ୍ରହଣ କରିଥିବା ବେଳେ ବୈଜ୍ଞାନିକମାନେ ମଧ୍ୟ ନିଜସ୍ୱମତ ପୋଷଣ କରିଆସନ୍ତି । ଏହି ବିଶ୍ୱବ୍ରହ୍ମାଣ୍ଡର ଶୃଙ୍ଖଳିତ ସୀମାହୀନତା ଓ ସୃଷ୍ଟିର ଅଦ୍ଭୁତ ରହସ୍ୟ ସେମାନଙ୍କ ଅନ୍ୱେଷଣାତ୍ମକ ମନକୁ ଆନ୍ଦୋଳିତ କରିଥାଏ । ଫରାସୀ ସାହିତ୍ୟକାର ସିରାନୋ ଡ଼ି ବେର୍ଜେରାକ୍ ସପ୍ତଦଶ ଶତାବ୍ଦୀରେ ଚନ୍ଦ୍ରରେ ପଦାର୍ପଣ କରିବା ପାଇଁ ମଣିଷ ଦିନେ ରକେଟ୍ ବ୍ୟବହାର କରିବ ବୋଲି ଭବିଷ୍ୟବାଣୀ ଶୁଣାଇଥିଲେ । ରୁଷୀୟବୈଜ୍ଞାନିକ କୋନଷ୍ଟାଣ୍ଟିନ୍ ସିଓଲକୋଭସ୍କି (୧୮୫୭—୧୯୩୫) ମଧ୍ୟ ମହାକାଶ ଯାତ୍ରା ପାଇଁ ରକେଟର ଉପାଦେୟତା ବିଷୟରେ ନିର୍ଦ୍ଦିଷ୍ଟ ଧାରଣା ଦେଇଥିଲେ । ତାଙ୍କର ଉକ୍ତିର ବକ୍ତବ୍ୟ ଥିଲା ଯେ, ମନୁଷ୍ୟ ଏହି ପୃଥିବୀପୃଷ୍ଠରେ ସବୁଦିନେ ବନ୍ଦୀ ହୋଇ ରହିବ ନାହିଁ । ପଦାର୍ଥ ବିଜ୍ଞାନବିତ୍ ସାର୍ ଆଇଜାକ୍ ନିଉଟନ୍ ୧୬୮୭ ସାଲରେ କୃତ୍ରିମ ଉପଗ୍ରହର ସମ୍ଭାବନା ବିଷୟରେ ପୂର୍ବରୁ ସୂଚନା ଦେଇଥିଲେ । ଏଇସବୁ ଦୃଷ୍ଟାନ୍ତରୁ ସୌରଜଗତ ପ୍ରତି ବୈଜ୍ଞାନିକମାନଙ୍କର ସ୍ୱପ୍ନକଳ୍ପନାରୁ ରହି ଆସିଥିବା ମନୋଭାବର ବୈଜ୍ଞାନିକ ସୂଚନା ମିଳେ ।

ଦୂରବୀକ୍ଷଣଯନ୍ତ୍ର ଉଦ୍ଭାବିତ ହେବା ପରେ ଜ୍ୟୋତିଃ ବିଜ୍ଞାନର ବିକାଶ କ୍ଷେତ୍ରରେ ଏକ ନୂତନ ପର୍ଯ୍ୟାୟ ଆରମ୍ଭ ହେଲା । ଏହି ଯନ୍ତ୍ରଦ୍ୱାରା ଇଂଲଣ୍ଡର ଥୋମାସ୍ ହ୍ୟାରିଅଟ୍ ଚନ୍ଦ୍ରର ମାନଚିତ୍ର ଅଙ୍କିଲେ ।

ଦୂରବୀକ୍ଷଣଯନ୍ତ୍ର ଦୁଇ ପ୍ରକାରର; ପ୍ରତିସରଣକାରୀ ଓ ପ୍ରତିଫଳନକାରୀ । ୧୮୯୭ ମସିହାରେ ଓ୍ୟିସକନସିନର ୟେର୍କେସ୍ ମାନମନ୍ଦିରରେ ସ୍ଥାପିତ ଏକମିଟର ଅବକାଶବିଶିଷ୍ଟ ଦୂରବୀକ୍ଷଣଯନ୍ତ୍ର ସବୁଠାରୁ ଶ୍ରେଷ୍ଠ ପ୍ରତିସରଣକାରୀ ଯନ୍ତ୍ର । ଠିକ୍ ସେମିତି ରୁଷର କକେସୀୟ ପର୍ବତମାଳାରେ ଛଅ ମିଟର ବର୍ତ୍ତୁଳାକାର ଦର୍ପଣ ଲାଗିଥିବା ପ୍ରତିଫଳନକାରୀ ଦୂରବୀକ୍ଷଣଯନ୍ତ୍ର ସବୁଠାରୁ ଶ୍ରେଷ୍ଠ । ଏହାର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିବାକୁ ଦୀର୍ଘ ୧୫ ବର୍ଷ ଲାଗି ୧୯୭୬ରେ ସମାପ୍ତ ହୋଇଥିଲା । ସୌର-ବିଜ୍ଞାନର ଗବେଷଣା ପାଇଁ ଉନ୍ନତତର ଦୂରବୀକ୍ଷଣଯନ୍ତ୍ରମାନଙ୍କର ନିର୍ମାଣ କାର୍ଯ୍ୟ ଅବ୍ୟାହତ ରହିଛି । ୧୯୯୮ସାଲ୍ ସୁଦ୍ଧା ଆମେରିକାର ଆରିଜୋନା ଅନ୍ତର୍ଗତ ଗ୍ରାହାମ ପର୍ବତର ୩୦୦୦ ମିଟର ଉଚ୍ଚତାରେ ପରୀକ୍ଷାମୂଳକ ଡବଲ [illegible] ପୃଥିବୀର

ସୁବୃହତ ଦୂରବୀକ୍ଷଣଯନ୍ତ୍ର ନିର୍ମାଣ କରିବା ଯୋଜନା ବର୍ତ୍ତମାନ ପ୍ରସ୍ତୁତ କରାଯାଉଛି ।

ଏହି ପ୍ରକାରେ ଉନ୍ନତମାନର ଦୂରବୀକ୍ଷଣଯନ୍ତ୍ରମାନ ବୈଜ୍ଞାନିକମାନଙ୍କ ନିକଟରେ ଥିବା ସତ୍ତ୍ୱେ ସେମାନେ ପୃଥିବୀ ପୃଷ୍ଠରୁ ଏଗୁଡ଼ିକ ବ୍ୟବହାର କରି ଆଶାନୁରୂପ ସଫଳତା ପାଇ ପାରୁନାହାନ୍ତି । ପୃଥିବୀକୁ ଆବୃତ କରି ରହିଥିବା ଘନ ବାୟୁମଣ୍ଡଳ ଯୋଗୁଁ ଗ୍ରହ ଓ ନକ୍ଷତ୍ରମାନ ଉଜ୍ଜ୍ୱଳ ଓ ନିର୍ମଳ ଦେଖାଯାଉ ନ ଥାନ୍ତି । ପୁଣି ମେଘ ଓ ବର୍ଷା ପାଗରେ ଦୂରବୀକ୍ଷଣଯନ୍ତ୍ରମାନ ବ୍ୟବହାର କରିହୁଏ ନାହିଁ । ତେଣୁ ପୃଥିବୀର ବାୟୁମଣ୍ଡଳ ବାହାରେ, ସୌରମଣ୍ଡଳ ଅଧ୍ୟୟନ ଅଧିକ ଉପଯୋଗୀ । ଯଦି ୨.୪ ମିଟର ଆକାର ବିଶିଷ୍ଟ ଗୋଟିଏ ଦୂରବୀକ୍ଷଣଯନ୍ତ୍ର ଦ୍ୱାରା କୌଣସି ମହାକାଶଯାନରୁ ଆକାଶକୁ ନିରୀକ୍ଷଣ କରାଯିବ, ତାହାହେଲେ ପୃଥିବୀସ୍ଥ ଦୂରବୀକ୍ଷଣଯନ୍ତ୍ରଠାରୁ ଏହା ଗ୍ରହନକ୍ଷତ୍ର-ମାନଙ୍କର ଦଶଗୁଣ ନିକଟ ଓ ଶହେ ଗୁଣ ଉଜ୍ଜ୍ୱଳ ପ୍ରତିବିମ୍ବ ଦେଖାଇବ । ପୁଣି ଗ୍ରହନକ୍ଷତ୍ରମାନଙ୍କୁ ଖାଲି ଦେଖିଦେଲେ କାମ ସରିଯାଏ ନାହିଁ; ଅନେକ ସମୟରେ ସେମାନଙ୍କର ଫଟୋ ଦରକାର ହୁଏ । ତେଣୁ ଆମ ଆଖିକୁ ଦେଖା ଯାଉନଥିବା କିମ୍ବା ଅସ୍ପଷ୍ଟ ଦେଖାଯାଉଥିବା ଗ୍ରହନକ୍ଷତ୍ରମାନ ମହାକାଶରୁ ଅନେକ ଉତ୍ତମ ସ୍ପଷ୍ଟଭାବେ ଲିପିବଦ୍ଧ କରାଯାଇ ପାରିବ ।

ଆମେ ଉଲ୍ଲେଖ କରିପାରିବା ଯେ, କେବଳ ଦୂରବୀକ୍ଷଣଯନ୍ତ୍ର ଜ୍ୟୋତିର୍ବିଦ୍ୟାର ଗବେଷଣା ପାଇଁ ଏକମାତ୍ର ମାଧ୍ୟମ ନୁହେଁ । ଓଡ଼ିଶାର ସାମନ୍ତ ଚନ୍ଦ୍ରଶେଖର ମାତ୍ର ଦୁଇଖଣ୍ଡ କାଠି ସାହାଯ୍ୟରେ ବିଭିନ୍ନ ଗ୍ରହନକ୍ଷତ୍ରମାନଙ୍କ ସମ୍ବନ୍ଧରେ ଗଭୀର ଅନୁଧ୍ୟାନ କରିପାରିଥିଲେ । ଠିକ୍ ସେମିତି ବିନା ଯନ୍ତ୍ର ବ୍ୟବହାରରେ ଗଣିତ ସୂତ୍ର ବଳରେ ବିଭିନ୍ନ ଗ୍ରହ ଆବିଷ୍କୃତ ହୋଇଥିବା ବିଷୟ ଆମେ ଜାଣୁ । ଉଦାହରଣ ସ୍ୱରୂପ ନେପ୍‌ଚ୍ୟୁନ୍ ଗ୍ରହକୁ ନିଆଯାଇପାରେ ।

୧୭୮୧ ସାଲରେ ହର୍ସେଲ୍‌ଙ୍କ ଦ୍ୱାରା ଆକସ୍ମିକ ଭାବେ ୟୁରାନସ୍ ଗ୍ରହ ଆବିଷ୍କୃତ ହେବା ପରେ ତାର ଗତି ଓ କକ୍ଷପଥ ସମ୍ପର୍କରେ ପର୍ଯ୍ୟବେକ୍ଷଣକାରୀମାନେ ଅନୁସନ୍ଧାନ ଚଳାଇଲେ । ପୂର୍ବରୁ ସମସ୍ତେ ବିଶ୍ୱାସ କରୁଥିଲେ ଯେ, ନିଉଟନ୍‌ଙ୍କ ବେଗ ଓ ମାଧ୍ୟାକର୍ଷଣ-ନିୟମ ବ୍ୟବହାର କରି ଏହି ଗବେଷଣା ସମ୍ପୂର୍ଣ୍ଣ କରାଯାଇପାରିବ । କିନ୍ତୁ ଏହି ନିୟମାନୁସାରେ ୟୁରାନସ୍‌ର ଗତି ଓ କକ୍ଷପଥ ଠିକ୍‌ଭାବେ ନିର୍ଣ୍ଣିତ ହୋଇପାରିଲା ନାହିଁ । ତେଣୁ ନିଉଟନ୍‌ଙ୍କ ପ୍ରଦର୍ଶିତ ମାଧ୍ୟାକର୍ଷଣ ନିୟମ ବିରୋଧରେ କେତେକ ବୈଜ୍ଞାନିକ ୧୮୪୦ ମସିହାରେ ଏକ ଭିନ୍ନ ତଥ୍ୟ ଉପସ୍ଥାପିତ କଲେ । କିନ୍ତୁ ଅନ୍ୟ କେତେକ ବୈଜ୍ଞାନିକ ନିଉଟନ୍‌ଙ୍କ ନିୟମର ବିରୁଦ୍ଧାଚରଣ ନ କରି ମତ ଦେଲେ

ଯେ, ଅନ୍ୟ ଏକ ଅନାବିଷ୍କୃତ ଗ୍ରହ ୟୁରେନସ୍ ନିକଟରେ ଲୁଚି ରହିଥିବା ଯୋଗୁଁ ୟୁରେନସ୍‌ର କକ୍ଷପଥରେ ଏପରି ବ୍ୟତିକ୍ରମ ଦେଖାଯାଉଛି । ଏହି ତତ୍ତ୍ୱର ଅନୁସାରେ ଫରାସୀ ଜ୍ୟୋତିର୍ବିଦ୍ ଲିଭେରିଅର୍ ବିଶେଷ ଗାଣିତିକ ଅନୁସନ୍ଧାନ ଚଳାଇ, ଏହି ଅନାବିଷ୍କୃତ ଗ୍ରହର ଆନୁମାନିକ ସ୍ଥିତି ସମ୍ପର୍କରେ ପୂର୍ଣ୍ଣ ସୂଚନା ବର୍ଲିନ ଅବଜରଭେଟୋରୀକୁ ଜଣାଇଲେ । ଠିକ୍ ସେମିତି ଇଂଲଣ୍ଡର ଗଣିତଜ୍ଞ ଜନ୍ କାଉଚ୍ ଆଡ଼ମସ୍ ଏହି ଗ୍ରହ ସମ୍ପର୍କରେ ବର୍ଷେ ପୂର୍ବରୁ ନିର୍ଦ୍ଦିଷ୍ଟ ସୂଚନା ଦେଇଥିଲେ । ପ୍ରକୃତରେ ୧୮୪୭ ସାଲରେ ଏହି ଗଣନା ଅନୁଯାୟୀ ଜ୍ୟୋତିର୍ବିଦ୍‌ମାନେ ଅଷ୍ଟମ ଗ୍ରହ ରୂପେ ନେପ୍‌ଚ୍ୟୁନକୁ ଆବିଷ୍କାର କରିପାରିଥିଲେ । ଏହି ପ୍ରକାରେ ନେପ୍‌ଚ୍ୟୁନ-ଆବିଷ୍କାର ଗାଣିତିକ ବିଜ୍ଞାନର ଏକ ଚୂଡ଼ାନ୍ତ ବିଜୟ ବୋଲି କହିଲେ ଚଳେ ।

ପ୍ରକୃତରେ ସୌରବିଜ୍ଞାନର ବିକାଶ ପାଇଁ ଏହିପରି ବିଭିନ୍ନ ଉପାୟ ଗ୍ରହଣ କରି-ଯାଇଥାଏ । ଅନ୍ୟ ଏକ ଅଭିନବ ପଦ୍ଧତି ୧୯୩୦ର ଦଶକରେ ସର୍ବପ୍ରଥମେ ଅବଲମ୍ବନ କରାଯାଇଥିଲା । ଏଥିପାଇଁ ଜ୍ୟୋତିର୍ବିତ୍‌ର ଦୃଷ୍ଟିଶକ୍ତି କିମ୍ବା ଆଲୋକଚିତ୍ରର ଆବଶ୍ୟକତା ନାହିଁ । ଏହି ପଦ୍ଧତିରେ ଆକାଶର ଦୂର ଦୂରାନ୍ତରୁ ଆସୁଥିବା ରେଡ଼ିଓ ତରଙ୍ଗକୁ ବିଶ୍ଳେଷଣ କରାଯାଏ । ଆମେରିକାର ଦୂରଭାଷର ଇଂଜିନିୟର କାର୍ଲ ଜାନ୍‌ସ୍କି ଏହି ପ୍ରକାରେ ବିଭିନ୍ନ ନୀହାରିକା ସମ୍ପର୍କରେ ଜ୍ଞାନ ଆହରଣ କରିହେବ ବୋଲି ସର୍ବ ପ୍ରଥମେ ଜଣାଇଥିଲେ ।

କିନ୍ତୁ ସବୁଠାରୁ ଉଲ୍ଲେଖଯୋଗ୍ୟ ଗବେଷଣା କୃତ୍ରିମ ଉପଗ୍ରହ ମାଧ୍ୟମରେ ହୋଇଥାଏ । ଚନ୍ଦ୍ର ପୃଥିବୀର ଏକମାତ୍ର ପ୍ରାକୃତିକ ଉପଗ୍ରହ ହୋଇଥିଲେ ସୁଦ୍ଧା ବୈଜ୍ଞାନିକ ଅନୁସନ୍ଧାନ ପାଇଁ ତାର ବିଶେଷ ମହତ୍ତ୍ୱ ନାହିଁ । କାରଣ ଏହା ପୃଥିବୀକୁ ଆବଶ୍ୟକୀୟ ତଥ୍ୟ ଯୋଗାଇ ପାରେ ନାହିଁ । କିନ୍ତୁ ବର୍ତ୍ତମାନ ଯେଉଁ କୃତ୍ରିମ ଉପଗ୍ରହ ମହାକାଶକୁ ଛଡ଼ାଯାଏ, ସେମାନେ ସକ୍ରିୟ ରହିଥାନ୍ତି । ସେମାନଙ୍କ ଉତ୍କ୍ଷେପଣ ପଛରେ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରହିଥାଏ । ତେଣୁ ସେମାନେ ନିର୍ଦ୍ଦେଶାନୁସାରେ ପୃଥିବୀକୁ ପାଣିପାଗ ସମ୍ପର୍କରେ ପୂର୍ବ ସୂଚନା ଯୋଗାଇଥାନ୍ତି । ଦେଶ ଦେଶ ମଧ୍ୟରେ ସମ୍ବାଦ ପରିବହନ କାର୍ଯ୍ୟ ସମ୍ପାଦନ କରିଥାନ୍ତି । ଏତଦ୍‌ବ୍ୟତୀତ ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ସେମାନଙ୍କର ଉଲ୍ଲେଖନୀୟ ଅବଦାନ ରହିଛି । ସେମାନେ ବହିର୍ଦ୍ଦିକାଶରୁ ପୃଥିବୀ ଆଡ଼କୁ ଆସୁଥିବା ବିକିରଣ ଗ୍ରହଣ କରି ବିଶ୍ଳେଷଣ କରିଥାନ୍ତି । ଉଦାହରଣସ୍ୱରୂପ ଏକ୍ସ-ରେ ଉପଗ୍ରହ ଦ୍ୱାରା ନିଉଟ୍ରନ-ଷ୍ଟାର, ବ୍ଲାକ୍-ହୋଲ୍ ଇତ୍ୟାଦି ମହାକାଶର ଆଶ୍ଚର୍ଯ୍ୟମାନଙ୍କ ସମ୍ପର୍କରେ ବିଶଦ ବିବରଣୀ ଜାଣିହୁଏ । ୧୯୫୮ ସାଲର ଜାନୁଆରୀ ମାସରେ ଯୁକ୍ତରାଷ୍ଟ୍ର ଆମେରିକାର ଏକ୍ସପ୍ଲୋରେର୍-୧ ଦ୍ୱାରା ପୃଥିବୀ ଚାରିପଟେ ଥିବା ଭାନ୍‌ଆଲେନ୍

ରେଡ଼ିଏସନ୍-ବେଲ୍ଟର ପ୍ରଥମ ସୂଚନା ମିଳିଥିଲା । ପୃଥିବୀର ଚୁମ୍ବକୀୟ କ୍ଷେତ୍ର ଯୋଗୁଁ ଏହି ବେଲ୍ଟରେ ଇଲେକ୍ଟ୍ରନ, ପ୍ରୋଟନ୍ ଇତ୍ୟାଦି ସ୍ୱର୍ଣ୍ଣଯୁକ୍ତ କଣିକା ବନ୍ଦୀ ହୋଇ ରହିଥାନ୍ତି । ଏହାର ଆବିଷ୍କାର ଯୋଗୁଁ ମହାକାଶ ଗବେଷଣା ଏକ ଉଲ୍ଲେଖନୀୟ ସଫଳତା ହାସଲ କରିପାରିଥିଲା । ଚନ୍ଦ୍ର ଆମର ପ୍ରାକୃତିକ ଉପଗ୍ରହ ହୋଇ ଏତେ ନିଷ୍କ୍ରିୟ ହୋଇଥିବାବେଳେ, ଆମ କୃତ୍ରିମ ଉପଗ୍ରହମାନ କେତେ ସକ୍ରିୟ— ତାହା ଲକ୍ଷ୍ୟ କରିବା କଥା !

କୃତ୍ରିମ ଉପଗ୍ରହ-କାର୍ଯ୍ୟକ୍ରମର ଏକ ଉନ୍ନତ ପର୍ଯ୍ୟାୟରେ ସ୍ପେସ୍ ଷ୍ଟେସନମାନ ନିର୍ମାଣ କରାଯାଇଛି । ମେ ୧୯୭୩ରେ ଆମେରିକା ତାର ପ୍ରଥମ ସ୍ପେସ୍ ଷ୍ଟେସନ୍ ମହାକାଶକୁ ପ୍ରେରଣ କରିଥିଲା, ଯାହାର ଲମ୍ବା ଥିଲା ୬୦ ଫୁଟ ଓ ଉଚ୍ଚତା ୨୧ ଫୁଟ । ତା' ଭିତରେ ଦୁଇଟି କୋଠରୀ ଥିଲା । ଗୋଟିଏ ହେଉଛି କର୍ମଶାଳା ଓ ଅନ୍ୟଟି ବସାଉଠା କରିବା ପାଇଁ କୋଠରୀ । ଏହି ବଖରାଟିରେ ପାଇଖାନା, ଗାଧୁଆ ଘର, ସୌରଚାଳିତ ଚୁଲ୍ଲୀ ମଧ୍ୟ ରଖାଯାଇଥିଲା । ମହାକାଶଯାତ୍ରୀମାନେ ବ୍ୟାୟାମ କରିବେ ବୋଲି ସାଇକେଲ୍‌ଟିଏ ମଧ୍ୟ ରଖାଯାଇଥିଲା । ସ୍କାଇଲାବରେ ବିଭିନ୍ନ ପ୍ରକାର ବୈଜ୍ଞାନିକ ପରୀକ୍ଷା କରାଯାଇଥିଲା ! ତନ୍ମଧ୍ୟରେ ସତର-ବର୍ଷୀୟା ଜୁଡ଼ିଥ୍ ମାଇଲସ୍ ନାମ୍ନୀ ଏକ ସ୍କୁଲ ଛାତ୍ରୀର ବୈଜ୍ଞାନିକ ପରୀକ୍ଷା ଅନ୍ତର୍ଭୁକ୍ତ । ଅନ୍ତରୀକ୍ଷର ଓଜନଶୂନ ପରିସ୍ଥିତିରେ ବୁଢ଼ିଆଣୀ କିପରି ଜାଲ ବୁଣିପାରେ—ତାହା ଲକ୍ଷ୍ୟ କରିବା ପାଇଁ ମିସ୍ ଜୁଡିଥ୍ ଏକ ପ୍ରୋଜେକ୍ଟ ଦେଇଥିଲେ । ସ୍କାଇଲାବ୍‌ର ପରୀକ୍ଷାରୁ ଜଣାଗଲା ଯେ, ପ୍ରାରମ୍ଭରେ ବୁଢ଼ିଆଣୀ ଠିକ ଭାବେ ଜାଲ ବୁଣି ନ ପାରିଲେ ସୁଦ୍ଧା କ୍ରମଶଃ ସେ ପରିସ୍ଥିତିରେ ସୁନ୍ଦର ଓ ସ୍ୱାଭାବିକ ଭାବେ ଜାଲ ବୁଣିପାରିଥିଲା ।

ଏହି ସ୍କାଇଲାବଟି ଜୁଲାଇ ୧୯୭୯ରେ ପୃଥିବୀରେ ଅବତରଣ କରିବାବେଳେ ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଇଥିଲା । କିନ୍ତୁ ଏପ୍ରେଲ ୧୯୭୧ରେ ଆରମ୍ଭ କରାଯାଇଥିବା ରୁଷିଆର ସାଲ୍ୟୁଟ ସ୍ପେସ୍-ଷ୍ଟେସନ ସ୍କାଇଲାବଠାରୁ ଆକାରରେ କ୍ଷୁଦ୍ର ହୋଇଥିଲେ ସୁଦ୍ଧା ବହୁଦିନ ଧରି କାର୍ଯ୍ୟକ୍ଷମ ରହିଛି ।

ଏହି ମହାକାଶ-କାର୍ଯ୍ୟକ୍ରମ ଦ୍ୱାରା ମହାକାଶଯାତ୍ରୀମାନେ ପୃଥିବୀର ପ୍ରାକୃତିକ ସମ୍ପଦ ଅଧ୍ୟୟନ କରିବାରେ ସକ୍ଷମ ହୋଇପାରିଛନ୍ତି । ସ୍କାଇଲାବର ତିନିଜଣ ଯାତ୍ରୀ ପୃଥିବୀ-ସମ୍ପଦର ୪୭,୦୦୦ ଛବି ସମେତ ସୂର୍ଯ୍ୟଙ୍କର ୧୭୫,୦୦୦ଟି ଚିତ୍ର ଆଣିଛନ୍ତି ।

କୃତ୍ରିମ ଉପଗ୍ରହ ଓ ସ୍ପେସ୍-ଷ୍ଟେସନମାନ ପୃଥିବୀର ମାଧ୍ୟାକର୍ଷଣ-କ୍ଷେତ୍ର ମଧ୍ୟରେ ସୀମିତ ରହିଥିବାବେଳେ, ପୃଥିବୀ-ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ କରାଇ ଅନ୍ୟ କେତେକ

ମହାକାଶଯାନକୁ ବହୁଦୂରକୁ ପ୍ରେରଣ କରାଯାଇଛି । ତଦନୁସାରେ ପାୟୋନିୟର୍ ୧୦ ଓ ୧୧ ନାମକ ଦୁଇଟି ଆମେରିକୀୟ ମହାକାଶଯାନ ସୌରମଣ୍ଡଳର ଗ୍ରହମାନଙ୍କ ସମ୍ପର୍କରେ ତଥ୍ୟ ଯୋଗାଇବା ପାଇଁ କିଛିବର୍ଷ ପୂର୍ବେ ମହାଶୂନ୍ୟକୁ ପଠାଯାଇଥିଲା । ସୌରମଣ୍ଡଳ ଅତିକ୍ରମ କରି ଏହି ଯାନ ଅନନ୍ତ ମହାଶୂନ୍ୟରେ ବିଚରଣ କରିବା ସମ୍ଭାବନା ରହିଛି । ତେଣୁ ଏହି ଯାନରେ ଆମ ସୌରମଣ୍ଡଳର ଛବି, ସୂର୍ଯ୍ୟର ସ୍ଥିତି ଓ ପୁରୁଷ-ନାରୀର ଚିତ୍ର ଧାତୁରେ ଖୋଦିତ କରି ସଂରକ୍ଷିତ କରାଯାଇଛି । ପୁଣି ବିଭିନ୍ନ ଭାଷାରେ ଅଭିନନ୍ଦନ ବାର୍ତ୍ତା ଓ ଆମ ବିଶ୍ୱର ବିଭିନ୍ନ ସଙ୍ଗୀତଜ୍ଞମାନଙ୍କର ସଙ୍ଗୀତର ରେକର୍ଡ ରଖାଯାଇଛି । ଉଦ୍ଦେଶ୍ୟ ହେଉଛି ଯେ, ଯଦି ମହାକାଶର ଅଜଣା ଅଶୁଣା ଭିନ୍ନ ଗ୍ରହ ଓ ଉପଗ୍ରହରେ କୌଣସି ଉନ୍ନତ ଜୀବ ଥାଆନ୍ତି, ତାହାହେଲେ ସେମାନେ ଆମର ଏହି ଚିତ୍ର ଓ ଶବ୍ଦମାନଙ୍କରୁ ପୃଥିବୀରେ ଥିବା ମଣିଷ ଜାତି ଓ ତାର ଉନ୍ନତ ସଭ୍ୟତା ସମ୍ପର୍କରେ କିଛି ସନ୍ଦେଶ ପାଇପାରିବେ ଓ ପୃଥିବୀ ସହିତ ଯୋଗାଯୋଗ ରଖିବାକୁ ଚେଷ୍ଟା କରିବେ ।

ବର୍ତ୍ତମାନ ମହାକାଶ ବିଜ୍ଞାନ ଏତେ ପ୍ରଭାବଶାଳୀ ହେଲାଣି ଯେ, ବିଜ୍ଞାନର ଏଇ ଯୁଗକୁ ମହାକାଶ ଯୁଗ ବୋଲି ଅଭିହିତ କରାଯାଉଛି । ଏହି ଉପଲକ୍ଷେ, ଫ୍ରାନ୍ସର ପାଓତ୍ୟାସ୍ଥଳ ମେଣବେଲ୍ଠାରେ ପ୍ରତିବର୍ଷ ଜୁଲାଇମାସରେ ଅନୁଷ୍ଠିତ ହେଉଥିବା ମହାକାଶ-ଉତ୍ସବ ବିଷୟରେ ଉଲ୍ଲେଖ କରାଯାଇପାରେ । ଯେଉଁମାନେ ଅନ୍ତରୀକ୍ଷ ଗବେଷଣା ଓ ଯାତ୍ରା ସହିତ ସମ୍ପୃକ୍ତ ଏବଂ ଆଗ୍ରହୀ, ସେମାନେ ସେଠାରେ ଏକତ୍ରିତ ହୋଇଥାନ୍ତି । ବିଶ୍ୱର ବିଭିନ୍ନ ଦେଶରୁ ଅନ୍ତରୀକ୍ଷ ଯାତ୍ରୀ, ବୈମାନିକ, ସମ୍ପୃକ୍ତ ଲେଖକ, କଳାକାର, ଛାତ୍ର ଓ ବୈଜ୍ଞାନିକମାନେ ମହାକାଶ ସମ୍ପର୍କରେ ମତାମତ ଏହି ଉତ୍ସବ ସମୟରେ ବିନିମୟ କରିଥାନ୍ତି । ଏହି ଉତ୍ସବ ବର୍ଷକୁ ବର୍ଷ ଯେମିତି ଅଧିକ ଲୋକପ୍ରିୟ ଓ ପ୍ରଭାବଶାଳୀ ହେବାରେ ଲାଗିଛି—ତାହା ମହାକାଶ-ଯୁଗର ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦେଉଛି ।

କିନ୍ତୁ ଏହି ଉତ୍ସବକାଳୀନ ଆନନ୍ଦର ଅନ୍ତରାଳରେ ଚିନ୍ତା ଓ ଉଦ୍‌ବେଗ କିଛି ପରିମାଣରେ ଲୁଚି ରହିଛି । ଏହି ମର୍ମରେ ୧୯୭୦ ସାଲରେ ଚନ୍ଦ୍ରରେ ଅବତାରଣା କରିବା ପାଇଁ ଅନ୍ତରୀକ୍ଷଯାତ୍ରୀ ଲୋଭେଲ, ସ୍ୱିଗର୍ଟ ଓ ହେଇସେଲ୍ସ ନେଇଥିବା ଆପୋଲୋ—୧୩ ଅଭିଯାନ ସ୍ମରଣ କରାଯାଇପାରେ । ଅମ୍ଳଜାନ-ଟ୍ୟାଙ୍କ୍‌ରେ ବିସ୍ଫୋରଣ ଘଟି ଏହି ଯାନ ଚନ୍ଦ୍ରରେ ଅବତରଣ କରିପାରିଲା ନାହିଁ । ଏଥି ସଙ୍ଗେ ସଙ୍ଗେ ମହାକାଶଯାତ୍ରୀଙ୍କ ମୃତ୍ୟୁ ଆସନ୍ନ ହେଲା । ଏଇ ସଙ୍କଟପୂର୍ଣ୍ଣ ସମୟରେ ସମସ୍ତ ବିଶ୍ୱ ଆତୁରଭାବ ସହିତ ସେମାନଙ୍କ ଜୀବନ ରକ୍ଷା ପାଇଁ ଇଶ୍ୱରଙ୍କୁ ପ୍ରାର୍ଥନା କଲା ।

ତେବେ ଏଠାରେ ଉଲ୍ଲେଖ କରିବା କଥା ଯେ, ଯେତେବେଳେ ମାତ୍ର ତିନିଜଣ ମହାକାଶଚାରୀଙ୍କ ଜୀବନ ବିପର୍ଯ୍ୟସ୍ତ ହୋଇଥିବାବେଳେ ସମସ୍ତ ବିଶ୍ୱ ଆତଙ୍କିତ ହୋଇଥିଲା। ଦୁର୍ଭାଗ୍ୟବଶତଃ ଆମ ସମସ୍ତଙ୍କ ଜୀବନ ବର୍ତ୍ତମାନ ମହାକାଶ-ଗବେଷଣା ଯୋଗୁଁ ପରୋକ୍ଷଭାବେ ବିପନ୍ନ ହୋଇଥିବାବେଳେ ଆମେ ଅବିଚଳିତ ହୋଇ ରହିଛେଁ। ଅବଶ୍ୟ ଏହାର କାରଣ ହେଉଛି ଆମର ଅଜ୍ଞତା। ଅଧୁନା ମହାକାଶ ପ୍ରଦୂଷିତ ହୋଇଥିବା ଯୋଗୁ ଆମ ଅଜ୍ଞାତସାରରେ ବିଶ୍ୱର ସମସ୍ତ ଜୀବଜଗତର ଅସ୍ତିତ୍ୱ ଯେ ଲୋପ ପାଇଯାଇପାରେ—ଏହା ଆମକୁ ହୃଦୟଙ୍ଗମ କରିବାକୁ ପଡ଼ିବ।

ଏଡ଼ିନବରାସ୍ଥିତ ରୟାଲ୍ ଅବଜାରଭେଟୋରୀରେ କାର୍ଯ୍ୟରତ ଥିବା ଉଚ୍ଚେଲ୍, ଏବେରିଷ୍ଟ ଭବିଷ୍ୟବାଣୀ ଶୁଣାଇଛନ୍ତି ଯେ ଆଗାମୀ ଦୁଇବର୍ଷ ମଧ୍ୟରେ ମହାକାଶ-ଗବେଷଣା ଯୋଗୁଁ ଅନ୍ତରୀକ୍ଷରେ ଛୋଟ ବଡ଼ ପ୍ରାୟ ସାତହଜାର ଅନାବଶ୍ୟକ ପଦାର୍ଥ ଘୂରି ବୁଲୁଥିବେ। ଏମାନଙ୍କ ଆକାର କ୍ଷୁଦ୍ର ଗୋଲ୍ଡୁଠାରୁ ଆରମ୍ଭ କରି ବସ୍ ପରି ବିରାଟକାୟ ହୋଇପାରେ। ପ୍ରତିରକ୍ଷା ବିଭାଗର ରଡ଼ାର୍ ଦ୍ୱାରା ୧୯୬୦ ସାଲରେ ଜଣାପଡ଼ିଥିଲା ଯେ, ଏମାନଙ୍କ ସଂଖ୍ୟା ଏକୋଇଶିଶହ। ତିନିବର୍ଷ ପରେ ଏହି ସଂଖ୍ୟା ଦୁଇଗୁଣରୁ ବୃଦ୍ଧି ପାଇ ପ୍ରାୟ ୪,୪୦୦ରେ ପହଞ୍ଚିଲା। ମହାକାଶ ଗବେଷଣାରେ ଯେଉଁ ତତ୍ପରତା ବୃଦ୍ଧି ପାଉଛି, ତାକୁ ଲକ୍ଷ୍ୟକରି ସେ ଅନୁମାନ କରିଛନ୍ତି ଯେ, ୧୯୮୯ ସାଲ ସୁଦ୍ଧା ଏହା ୭,୦୦୦ରେ ପହଞ୍ଚିବ।

ମହାକାଶରେ ବର୍ତ୍ତମାନ ଥିବା ଉପଗ୍ରହର ସଂଖ୍ୟା ଏକହଜାର ହୋଇଥିବା ସ୍ଥଳେ, ଅନ୍ୟାନ୍ୟ ସ୍ୱଳ୍ପ ପରିପୂର୍ଣ୍ଣ ଗବେଷଣାଜନିତ ଅଦରକାରୀ ପଦାର୍ଥ ଏବଂ ରକେଟ ତଥା ଉପଗ୍ରହମାନଙ୍କର ଭଙ୍ଗାରୁଜା ପରିତ୍ୟକ୍ତ ଅଂଶ ଜମା ହେଲଣି। ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ପରିତ୍ୟକ୍ତ ପଦାର୍ଥମାନ ପୃଥିବୀ ଆଡ଼କୁ ଆସୁଥିବା ବେଳେ ବାୟୁମଣ୍ଡଳରେ ପ୍ରବଳ ଘର୍ଷଣର ସମ୍ମୁଖୀନ ହୋଇ ଜଳିଯାନ୍ତି। ତଥାପି ବେଳେ ବେଳେ ସେମାନେ ଏହି ବାଧା ଅତିକ୍ରମ କରି ପୃଥିବୀ ପୃଷ୍ଠରେ ପଡ଼ି ଜଟିଳ ସମସ୍ୟାମାନ ସୃଷ୍ଟି କରିଥାନ୍ତି। ୨୪।୧।୧୯୭୮ ସାଲରେ ରୁଷିଆର କସ୍‌ମସ୍—୯୫୪ ଉପଗ୍ରହ ଦୁର୍ଘଟଣାବଶତଃ ଖଣ୍ଡବିଖଣ୍ଡ ହୋଇ କାନାଡ଼ାର ଉତ୍ତର ପଶ୍ଚିମାଂଚଳରେ ପଡ଼ିଲା। ଏହି ଉପଗ୍ରହଟି ଆଣବିକ ଶକ୍ତି ଦ୍ୱାରା ପରିଚାଳିତ ହୋଇଥିବା ଯୋଗୁଁ ତାହା କାନାଡ଼ାର ଅଧିବାସୀଙ୍କ ମନରେ ଭୟ ଓ ଆଶଙ୍କା ସୃଷ୍ଟି କରିଥିଲା। କାନାଡ଼ା ସରକାର ଉପଗ୍ରହର ସନ୍ନିସ୍ତ ଆବର୍ଜନା ସଫା କରିବା ପାଇଁ ରୁଷ ନିକଟରେ ଛଅନିୟୁତ ଡଲାର ଦାବି କଲା। କିନ୍ତୁ ମୂଲଚାଲ ଓ ବାଦାନୁବାଦ ପରେ ରୁଷ ତିନି ନିୟୁତ ଡଲାର ଅର୍ଥ ଦେଇଥିଲା।

ଠିକ୍ ଏମିତି କାରଣରୁ ଷଡଯନ୍ତ୍ର ବଦଳରେ ପୁରସ୍କାର ପାଇବା ବିଷୟ ମଧ୍ୟ ଅନ୍ୟ ଏକ ପ୍ରସଙ୍ଗରେ ଜଣାଯାଏ । ଜୁଲାଇ ୧୯୭୯ରେ ଦୁର୍ଘଟଣାଗ୍ରସ୍ତ ଆମେରିକାର ସ୍କାଇଲାବ୍‌ର କିଛି ଭଗ୍ନ ଅଂଶ ପଶ୍ଚିମ ଅଷ୍ଟ୍ରେଲିଆରେ ଖସି ପଡ଼ିଥିଲା । ସେତେବେଳେ ଜଣେ ଅଷ୍ଟ୍ରେଲିଅ ଯୁବକ ସ୍କାଇଲାବ୍‌ର ଗୋଟିଏ ଭଗ୍ନ ଅଂଶ ନେଇ ସାନ୍‌ଫ୍ରାନ୍‌ସିସ୍କୋର ଏକ ଖବରକାଗଜ ଅଫିସରେ ପହଞ୍ଚିଲେ ଏବଂ ଉକ୍ତ ସମ୍ବାଦପତ୍ରର ବିଜ୍ଞାପନ ଅନୁସାରେ ଦଶ ହଜାର ଡଲାର ପୁରସ୍କାର ପାଇଥିଲେ ।

ଷଡଯନ୍ତ୍ର ହେଉ, କିମ୍ବା ପୁରସ୍କାର ହେଉ – ମୁଖ୍ୟ ବିଷୟ ହେଉଛି ଯେ, ମହାକାଶ ଗବେଷଣା ଯୋଗୁଁ ଆଜି ପରିବେଶ ପ୍ରଦୂଷିତ ଓ ଆମ ଜୀବନ ବିପନ୍ନ । ବର୍ତ୍ତମାନ ଏହି ବିପଦ ଅବଶ୍ୟ ପ୍ରାଥମିକ ସ୍ତରରେ ରହିଛି । ତଥାପି ଏଥିପ୍ରତି ସତର୍କ ନ ହେଲେ, ଭବିଷ୍ୟତରେ ଏହା ଭୟଙ୍କର ରୂପ ନେବ । ମହାକାଶରେ ହେଉଥିବା ଏଭଳି ଆବର୍ଜନାମାନଙ୍କର ଉପସ୍ଥିତି ଭବିଷ୍ୟତରେ ଅନ୍ତରୀକ୍ଷ ଗବେଷଣା ପାଇଁ ମଧ୍ୟ ଜଟିଳ ସମସ୍ୟା ସୃଷ୍ଟି କରିବ । ଏକ ମିଲିମିଟର ବ୍ୟାସର ଆବର୍ଜନା ଯେକୌଣସି ମହାକାଶଚାରୀଙ୍କ ପୋଷାକକୁ ଆଘାତ ଦେଇ ଫଟାଇ ଦେବ ଏବଂ ଏକ ସେଣ୍ଟିମିଟର ବ୍ୟାସର ଆବର୍ଜନା ଗୋଟିଏ ମହାକାଶଯାନକୁ ନଷ୍ଟ କରି ଦେବାକୁ ସକ୍ଷମ । ତେଣୁ ବର୍ତ୍ତମାନ ମହାକାଶରେ ଥିବା ଦଶ ସେ. ମି. ବ୍ୟାସ ବିଶିଷ୍ଟ ୫୦୦୦ ଖଣ୍ଡ ଆବର୍ଜନା କେତେ ଦୂର ବିପଦ୍‌ଜନକ ହୋଇପାରେ, ତାହା ସହଜରେ ଅନୁମେୟ । ତେଣୁ ଏଗୁଡ଼ିକୁ ଧ୍ୱଂସ କରି ବିପଦସଙ୍କୁଳ ମହାକାଶଯାତ୍ରାକୁ ନିରାପଦ କରି ନ ପାରିଲେ, ମହାକାଶ ବିଜ୍ଞାନର ପ୍ରଗତି ପ୍ରତିହତ ହେବ ।



# ବିଦ୍ୟୁତ୍ ଓ ମୃତ୍ୟୁ

ମଣିଷ ମାରିବା କେମିତି ? ବିଶେଷତଃ ପ୍ରାଣଦଣ୍ଡ ହେଉଥିବା ଅପରାଧୀମାନଙ୍କୁ ? କିଛି ବର୍ଷ ପୂର୍ବେ ମହାରାଷ୍ଟ୍ରର ଅଭ୍ୟଙ୍କର ମର୍ଡର କେସ୍, ଦିଲ୍ଲୀର ବିଦ୍ୟା ଜୈନ ହତ୍ୟା ମାମଲା ଇତ୍ୟାଦିରେ ଅଭିଯୁକ୍ତ ଏଭିଧରଣର ଆସାମୀମାନେ ସୁପ୍ରିମ କୋର୍ଟରେ ଗୋଟିଏ ଆବେଦନରେ ଜଣାଇଥିଲେ ଯେ, ଫାଶୀ ଦ୍ୱାରା ମୃତ୍ୟୁଦଣ୍ଡ ଅମାନୁଷିକ, ଯନ୍ତ୍ରଣାଦାୟକ ଓ ବର୍ବରୋଚିତ । ତେଣୁ ସେମାନେ ଇଲେକ୍‌ଟ୍ରିକ୍ ଚେୟାର୍ ପରି ଅନ୍ୟ କୌଣସି ବିକଳ୍ପ ପନ୍ଥାରେ ସହଜରେ ମରିବାକୁ ଲୋଡ଼ିଥିଲେ । ପ୍ରକାଶଥାଉ କି, ମୃତ୍ୟୁଦଣ୍ଡ ପାଇଁ ଉପାୟ ଖୋଜିବାକୁ ବହୁବାର ସମସ୍ୟା ଉପୁଜିଛି ଏବଂ

ବର୍ତ୍ତମାନ ସୁଦ୍ଧା ଏହା ସାର୍ବିକ ଭାବେ ସମାଦୃତ ହୋଇଥିବାପରି ମନେ ହେଉନାହିଁ । ଅବିସିନିଆରେ (ବର୍ତ୍ତମାନର ଇଥିଓପିଆ) ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଦ୍ୱିତୀୟ ମେନଲିକ୍ ନାମକ ଜଣେ ସମ୍ରାଟ ଥିଲେ । ତାଙ୍କର ଆଧୁନିକ ଦୃଷ୍ଟିଭଙ୍ଗୀ ଥାଏ । ସେ ସେତେବେଳେ ବିଂଶ ଶତାବ୍ଦୀରେ ବିଜ୍ଞାନ-ମଣ୍ଡିତ ପରିବେଶ ନେଇ ପ୍ରବେଶ କରିବା ପାଇଁ କିଛି ପଦକ୍ଷେପ ନେବା ପାଇଁ ଚିନ୍ତା କଲେ । ତଦନୁସାରେ ସ୍ଥିର କଲେ ଯେ, ମୃତ୍ୟୁଦଣ୍ଡରେ ଦଣ୍ଡିତ ଅପରାଧୀମାନଙ୍କୁ ବୈଦ୍ୟୁତିକ ଚେୟାର ଦ୍ୱାରା ନିହତ କରାଯିବ । ତେଣୁ ବହୁତ ଅର୍ଥ ବିନିଯୋଗ କରିବାକୁ ହେଲେ ସୁଦ୍ଧା, ସେ ବିଦେଶରୁ ତିନୋଟି ବିଦ୍ୟୁତ୍ ଚେୟାର୍ ଆମଦାନି କଲେ । କିନ୍ତୁ ସମ୍ରାଟ ଜାଣି ନ ଥିଲେ ଯେ, ଏଥିପାଇଁ ବିଦ୍ୟୁତ୍ ଶକ୍ତି ଦରକାର, ଯାହାକି ତାଙ୍କ ଦେଶରେ ନାହିଁ ! ଫଳରେ ସେ ସମସ୍ତଙ୍କ ଦ୍ୱାରା ଉପହସିତ ହୋଇଥିଲେ । ଏଥିରେ ଦବି ନ ଯାଇ ସମ୍ରାଟ କହିଲେ ଯେ, ସେ ଏତେ ଦାମ୍ ଦେଇ ଯେତେବେଳେ ଚେୟାରଗୁଡ଼ିକ କିଣିଛନ୍ତି, ସେଗୁଡ଼ିକୁ କ'ଣ ସେମିତି ପକାଇ ରଖିଦେବେ ? ପରିଶେଷରେ ସେଇ ଚେୟାର୍‌ଗୁଡ଼ିକୁ ସେ ନିଜର ସିଂହାସନ ଭାବେ ବ୍ୟବହାର କଲେ । ସେ ଯାହାହେଉନା କାହିଁକି, ବିଦ୍ୟୁତ୍ ସମ୍ପର୍କରେ ଅଜ୍ଞାନୀ ସମ୍ରାଟ ରହି ଯାଇଛନ୍ତି ।

ବଜ୍ର ବା ଚଡ଼କକୁ ଆମେ ଇନ୍ଦ୍ରଦେବଙ୍କର ମାରଣାସ୍ତ୍ର ବୋଲି ଅଭିହିତ କରୁ । କିନ୍ତୁ ପ୍ରକୃତରେ ତାହା କ'ଣ ? ଜଣାଯାଏ ଯେ, ମହାଶୂନ୍ୟରୁ ଜାଗତିକ ରଶ୍ମି ଯେତେବେଳେ ପୃଥିବୀର ବାୟୁମଣ୍ଡଳରେ ପ୍ରବେଶ କରେ, ତାହା ବହୁତ ଅଣୁଗୁଡ଼ିକୁ ପଜିଟିଭ୍ ଓ ନେଗେଟିଭ୍ ସ୍ତରରେ ବିଭକ୍ତ କରିଦିଏ । ଯେତେବେଳେ ଏହି ବିପରୀତଧର୍ମୀ ସ୍ତର ମଧ୍ୟରେ ଭୋଲ୍ଟ—ବ୍ୟବଧାନ ଅଧିକ ହୁଏ, ଆକାଶରେ ବିଦ୍ୟୁତ୍ ପରିପଥ ଯୋଗୁଁ ବିଜୁଳି ଦେଖାଯାଏ । ତେଣୁ ଆମେ ଯେତେବେଳେ ବିଜୁଳି ଯୋଗୁଁ ଉଦ୍ଭିଦ ଜନ୍ତୁ ପ୍ରାଣୀମାନେ ଜଳି ପୋଡ଼ି ଯିବା ଦେଖୁଁ, ତାହା ପ୍ରକୃତରେ ସେମାନଙ୍କ ଶରୀରରେ ଅସହ୍ୟ ବିଦ୍ୟୁତ୍ ପ୍ରବାହ ଯୋଗୁ ଘଟିଥାଏ । ଏହି ଦୁର୍ଘଟଣାମାନଙ୍କରୁ ମଣିଷ ପ୍ରତି ବିଦ୍ୟୁତ୍ ଶକ୍ତିର ବିପଦ ବେଶ୍ ସ୍ପଷ୍ଟ ଓ ବିଜ୍ଞାପିତ ହୋଇପଡ଼ୁଛି । ତେଣୁ ସାଧାରଣ ଜୀବନରେ ତା'ର ନିରାକରଣ ପାଇଁ ଆମକୁ ଯଥାସାଧ୍ୟ ଉପାୟମାନ ଅବଲମ୍ବନ କରିବାକୁ ପଡ଼େ ।

ରାସ୍ତାକଡ଼ରେ ବେଳେ ବେଳେ ଆମେ ଦେଖିବାକୁ ପାଉଁ ଉଚ୍ଚା ତାରବାଡ଼ ଭିତରେ ସଂରକ୍ଷିତ ବିଶାଳକାୟ ବୈଦ୍ୟୁତିକ ସରଞ୍ଜାମ ଯାହାକି ଟ୍ରାନ୍ସ୍‌ଫରମର୍ ଭାବେ ପରିଚିତ । ତା' ଶରୀରରେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିବା ପରି କୌଣସି ଏକ ସ୍ଥାନରେ ଗୋଟିଏ ଫଳକ ଝୁଲି ଯାଉଥାଏ, ଯେଉଁଥିରେ ଗୋଟିଏ ବଡ଼ଟାଳ ଖପୁରିର

ଚଣ ତଳେ ଦୁଇଟି ଲମ୍ବା ସରୁ ହାଡ଼ ଛନ୍ଦାହୋଇ ରହିଥିବା ଛବି ନାଲି ପ୍ରଚ୍ଛଦପଟରେ ଅଙ୍କିତ ହୋଇଥାଏ । ତା ତଳେ ଲେଖାଯାଇଥାଏ "ବିପଦ" । ଏହି ଖୁଣ୍ଟା ତାରବାଡ଼ ଓ ବିପଦପୂର୍ଣ୍ଣ ଫଳକର ମୂଳ ଉଦ୍ଦେଶ୍ୟ ହେଉଛି ସମସ୍ତଙ୍କୁ ସତର୍କ କରାଇଦେବା; ସର୍ବସାଧାରଣଙ୍କ ମନରେ ବିଦ୍ୟୁତ୍‌ର ମାରାତ୍ମକତା ପ୍ରତି ଭୟମିଶ୍ରିତ ଭାବ ଜାତ କରାଇବା । ଏହା ସମସ୍ତଙ୍କର, ବିଶେଷତଃ ବାଳକ ବାଳିକାମାନଙ୍କର କୋମଳ ମନରେ, ଗଭୀର ଚଳନ୍ତା ପ୍ରତିକ୍ରିୟା ସୃଷ୍ଟି କରିଥାଏ । ଏପରିକି ପରିଣତ ବୟସ୍କମାନଙ୍କ ମନରେ ମଧ୍ୟ ପାଳଦହେଉଥିବା ସାପ ବୋଲି ଭାବିବା ନ୍ୟାୟରେ ବିଦ୍ୟୁତ୍ ତାର ଖଣ୍ଡିଏ ନାଗପାଶ-ମୃତ୍ୟୁର ଭାବନା ସୃଷ୍ଟି କରିଥାଏ । ପ୍ରାୟ ସମସ୍ତେ ଉଣା ଅଧିକେ ବିଶ୍ୱାସ କରନ୍ତି ଯେ, ଜୀବନ୍ତ ବିଦ୍ୟୁତ୍ ତାରର ସଂସ୍ପର୍ଶରେ ମୃତ୍ୟୁ ଅବଶ୍ୟମ୍ଭାବୀ । ବୈଦ୍ୟୁତିକ ସକ୍ ଯୋଗୁଁ ସାଧାରଣ ଅନଭିଜ୍ଞ ଲୋକଟିଏ ଠାରୁ ଆରମ୍ଭ କରି ତାଲିମ୍‌ପ୍ରାପ୍ତ ଲାଇନ୍‌ମ୍ୟାନଙ୍କ ଆକସ୍ମିକ ମୃତ୍ୟୁ ସମ୍ବାଦ ଶୁଣି, ଏହି ପ୍ରକାର ବିଦ୍ୟୁତ୍-ବିରୋଧୀ ଭାବନା ସର୍ବସାଧାରଣରେ ବଳବତ୍ତର ହୋଇଛି ।

କିନ୍ତୁ ପ୍ରକୃତରେ କ'ଣ ବିଦ୍ୟୁତ୍‌ଶକ୍ତି ଜୀବଜଗତ ପ୍ରତି ମାରାତ୍ମକ ? ବୈଜ୍ଞାନିକ-ମାନେ ଟର୍ପେଡୋ ନାମକ ଗଭୀର ଜଳରେ ବାସକରୁଥିବା ଗୋଟିଏ ମାଛର ଅନୁସନ୍ଧାନ କରିଛନ୍ତି, ଯାହାକୁ ଥରେ ଦୁଇଥର ଛୁଇଁଦେଲେ ଗଣ୍ଠିବାତ ଜାତୀୟ ରୋଗ ଭଲ ହୋଇଯାଏ । ସାଧାରଣ ଲୋକେ ଏହାକୁ ଶୀଟାର ବା ଦେହେକ ମାଛ ବୋଲି କହନ୍ତି, କାରଣ ଏହା ଦେଖିବାକୁ ଦେହେକପରି । ଗବେଷଣାରୁ ଜଣାଯାଏ ଯେ, ଏହି ମାଛମାନଙ୍କ ଶରୀରରେ ଗୋଟିଏ ବିଶେଷ ଧରଣର ବୈଦ୍ୟୁତିକ ପ୍ରବାହ ରହିଥାଏ, ଯାହା ଫଳରେ ସେମାନଙ୍କୁ ଛୁଇଁଲେ ଆମ ଶରୀର ମଧ୍ୟରେ ଏହି ବିଦ୍ୟୁତ୍‌ପ୍ରବାହ ସଂଚରିତ ହୁଏ । ତେଣୁ ଆମର ଗଣ୍ଠିବାତାଦି ରୋଗ ଉପଶମ ହୋଇଯାଏ ସକ୍-ଟ୍ରିଟ୍‌ମେଣ୍ଟ ଯୋଗୁଁ । ଏହି ଦୃଷ୍ଟାନ୍ତରୁ ପ୍ରତୀତ ହୁଏ ଯେ, ବିଦ୍ୟୁତ୍ ଶକ୍ତିକୁ ଆମେ ଆଖିବୁଜା ଭାବେ ଜୀବନବିନାଶକାରୀ ଏକ ମାରଣାସ୍ତ୍ର ବୋଲି ବିଚାର କରିପାରିବା ନାହିଁ । ଯେତେବେଳେ ସ୍ୱତଃ ବିଦ୍ୟୁତଶକ୍ତିବାହୀ ଦେହେକ ମାଛ ସାଧାରଣ ଭାବେ ବଞ୍ଚିପାରୁଛି, ରୋଗୀମାନେ ଇଲେକ୍‌ଟ୍ରିକ୍ ସକ୍ ଦ୍ୱାରା ଆରୋଗ୍ୟ ହେଉଛନ୍ତି, ସେଇ ପରିସ୍ଥିତିରେ ବିଦ୍ୟୁତ୍‌ଶକ୍ତି ସମ୍ବନ୍ଧରେ ସମ୍ୟକ୍ ଧାରଣା ଆମ ମଧ୍ୟରେ ପ୍ରସୃତ ହେବା ଆବଶ୍ୟକ ।

ପରୀକ୍ଷାରୁ ଜଣାଯାଏ ଯେ, ଆମ ଶରୀରର ବୈଦ୍ୟୁତିକ ପ୍ରତିରୋଧକତା ପ୍ରାୟ ଚାରିଶିହଜାର ପରିମାପକ (ଓମ୍) ଏବଂ ଏହା ସାଧାରଣତଃ ଆମ ଚର୍ମରେ ରହିଥାଏ । କିନ୍ତୁ ଆମ ଚର୍ମରେ ପାଣି ଲାଗିଥିବାବେଳେ ଏହି ସଂଖ୍ୟା ହ୍ରାସ ପାଇ ଦୁଇଶହ କିମ୍ବା

ତିନିଶହ ଓମ୍‌କୁ ଖସି ଆସେ । ଏଠାରେ ପ୍ରକାଶ ରଖିବା ଦରକାରରେ ଯେ, ଏଇ ସଂଖ୍ୟା ଯେତେ କମ୍ ହୁଏ, ଆମ ଶରୀରରେ ବିଦ୍ୟୁତ୍ ପ୍ରବାହ ସେତେ ବେଶି ହୁଏ ଏବଂ ଆମକୁ ବୈଦ୍ୟୁତିକ ଶକ୍ ସେତେ ଆଘାତ ଦିଏ । ଏହି ଦୃଷ୍ଟିରୁ ବିଦ୍ୟୁତ୍‌ସରଞ୍ଜାମ ବ୍ୟବହାର କରିବାବେଳେ ଆମ ଶରୀର କୌଣସି ଭାବେ ଆର୍ଦ୍ର ହେବା ଅନୁଚିତ । ପୁଣି ଯଦି ଆମେ ଶୁଖିଲା ଜୋତା ବ୍ୟବହାର କରିଥାଉ କିମ୍ବା ଆମ ଜୋତାରେ ରବର ସୋଲ୍ ଲାଗିଥାଏ, ତାହାହେଲେ ଦୁଇଶହ କୋଡ଼ିଏ ଭୋଲ୍ଟ୍ 'ପାଏ' ବିଦ୍ୟୁତ୍ ଝଟକା ଆମେ ସହିପାରିବା ।

ଏହି ମର୍ମରେ ପ୍ରଶ୍ନ ଉଠେ; ରାସ୍ତା କଡ଼ରେ ଥିବା ବିଦ୍ୟୁତ୍ ତାର ଉପରେ ବିଭିନ୍ନ ପକ୍ଷୀ ଆରାମରେ ବସନ୍ତି ଓ ଉଡ଼ିଯାଆନ୍ତି, କିନ୍ତୁ ସେମାନେ ମରନ୍ତି ନାହିଁ କାହିଁକି ? ଏହାର କାରଣ ହେଉଛି ଯେ, ଯଦି ସେମାନେ ଗୋଟିଏ ତାରକୁ ସ୍ପର୍ଶ କରି ବସନ୍ତି, ତାହାହେଲେ ସେମାନଙ୍କ ଦେହରେ ବିଦ୍ୟୁତ୍‌ପ୍ରବାହ ହୋଇପାରେ ନାହିଁ । ଫଳରେ ସେମାନେ ଇଲେକ୍‌ଟ୍ରିକ୍ ଶକ୍‌ରୁ ରକ୍ଷା ପାଇଯାଆନ୍ତି । କିନ୍ତୁ ଯଦି ଭିନ୍ନ ଭୋଲ୍‌ଟେଜ୍‌ରେ ଥିବା ଦୁଇଟି ତାରକୁ କିମ୍ବା ଗୋଟିଏ ତାର ସହିତ ମାଟିକୁ ଏକ ସମୟରେ ସେମାନେ ଛୁଅଁନ୍ତି, ତାହାହେଲେ ବିଦ୍ୟୁତ୍‌ପ୍ରବାହ ଯୋଗୁଁ ନିଶ୍ଚିତ ଭାବେ କ୍ଷତ ହେବ । ଆମ ଶରୀରରେ ଅତ୍ୟଧିକ ବିଦ୍ୟୁତ୍‌ପ୍ରବାହ ହେଲେ, ଉତ୍ତାପ ଓ ରାସାୟନିକ ପ୍ରଭାବ ଯୋଗୁଁ ଜୀବକୋଷଗୁଡ଼ିକ ଅତି କମ୍ ସମୟ ମଧ୍ୟରେ ନଷ୍ଟ ହୋଇ ମୃତ୍ୟୁ ଘଟାନ୍ତି ।

ଏଠାରେ ଲକ୍ଷ୍ୟ କରିବା କଥା ଯେ, ବିଦ୍ୟୁତ୍ ପରିବାହକ ଓ ଆମ ଶରୀର ସହିତ ସଂଯୋଗ, ବୈଦ୍ୟୁତିକ ଦୃଷ୍ଟିକୋଣରୁ ସମ୍ପୂର୍ଣ୍ଣ ନ ହୋଇଥିଲେ, ସଂଯୋଗ-ପ୍ରତିରୋଧକତା (Contact Resistance) ବୃଦ୍ଧି ପାଏ । ତେଣୁ ଓମ୍‌ଙ୍କ ନିୟମାନୁସାରେ ବିଦ୍ୟୁତର ପରିମାଣ ଆମ ଶରୀରରେ କମିଯାଏ । କିନ୍ତୁ ବେଳେବେଳେ ଏହି ସଂଯୋଗ-ପ୍ରତିରୋଧକତା ଏତେ ଅଧିକ ହୋଇଥାଏ ଯେ, ଏହା ଦ୍ୱାରା ଶରୀରରେ ବିଦ୍ୟୁତ୍ ପ୍ରବାହ ଅବଶ୍ୟ ଅତି କମ୍ ହୁଏ; କିନ୍ତୁ ଜୁଲ୍‌ଙ୍କର ନିୟମାନୁଯାୟୀ ଶରୀରର ଚର୍ମାବରଣରେ ଅତ୍ୟଧିକ ଉତ୍ତାପ-ବୃଦ୍ଧି ଯୋଗୁଁ ପୋଡ଼ା ଘା' ସୃଷ୍ଟି ହୁଏ ।

ମାତ୍ରାଧିକ ବିଦ୍ୟୁତ ମସ୍ତିଷ୍କରେ ପ୍ରବାହିତ ହେଲେ, ମଣିଷ ଅଚେତ ହୋଇଯାଏ । ସ୍ମରଣ ଶକ୍ତିହୀନତା ବା ଆମ୍ନେସିଆ ତାର ପ୍ରତିକ୍ରିୟା ଭାବେ ପରିଦୃଷ୍ଟ ହୁଏ । ତାର କେନ୍ଦ୍ରୀୟ ସୂକ୍ଷ୍ମ ସ୍ନାୟୁମାନ କ୍ଷତଗ୍ରସ୍ତ ହୋଇ ମନରେ ଅସଂଲଗ୍ନ ଦୃଶ୍ୟମାନ ସୃଷ୍ଟି ହୁଏ । ଆଖିର ରେଟିନା ଓ କାନର ପରଦା ନଷ୍ଟହେବା ଯୋଗୁ ସେ ଅନ୍ଧ ଓ କାଲ ହେବା ପରିସ୍ଥିତି ଉଦ୍ଭବ ହୁଏ । କିନ୍ତୁ ବିଦ୍ୟୁତ୍‌ପ୍ରବାହ ଦ୍ୱାରା ମୃତ୍ୟୁର କାରଣ

ସାଧାରଣତଃ ଦୁଇଟି : ହୃତ୍‌କ୍ରିୟା କିମ୍ବା ଶ୍ୱାସପ୍ରଶ୍ୱାସ ବନ୍ଦ ହେବା । ବିଦ୍ୟୁତ୍‌ଶକ୍ତି ଯୋଗୁଁ ହୃତ୍‌ସ୍ପନ୍ଦନ ବୃଦ୍ଧି ପାଇଲେ, କିମ୍ବା କାର୍ଡ଼ିଓ ଭାସ୍କୁଲର୍ ସେଣ୍ଟର୍ ଉତ୍ତେଜିତ ହେଲେ, ହୃତ୍‌କ୍ରିୟା ବନ୍ଦ ହୋଇଯାଏ । ଏହି ଦୁର୍ଘଟଣାର ପରବର୍ତ୍ତୀ ପର୍ଯ୍ୟାୟରେ ଶ୍ୱାସପ୍ରଶ୍ୱାସ ମଧ୍ୟ ବନ୍ଦ ହୋଇଯାଏ । ଅବଶ୍ୟ କେତେକେତେ ବିଦ୍ୟୁତ୍‌ପ୍ରବାହ ଯୋଗୁଁ ପ୍ରଥମ ଅବସ୍ଥାରୁ ହିଁ ଶ୍ୱାସ-ପ୍ରଶ୍ୱାସ-କେନ୍ଦ୍ର ନଷ୍ଟହୋଇ ମୃତ୍ୟୁ ଘଟେ । ଯେ ଯାହାହେଉ, ବିଦ୍ୟୁତ୍‌ରୁ ମୃତ୍ୟୁ ପାଇଁ ଉଚ୍ଚ ଭୋଲ୍‌ଟେଜ୍ ଯେତେ ଦାୟୀ ନୁହେଁ, ଅଧିକ କରେଣ୍ଟ ସେତେ ଦାୟୀ । ତେଣୁ ଆମ ଶରୀରର ପ୍ରତିରୋଧକତା କୃତ୍ରିମ କିମ୍ବା ପ୍ରାକୃତିକ ଉପାୟରେ ସଦା ସର୍ବଦା ବଢ଼ାଇବା ଆମର ପ୍ରଧାନ ଉଦ୍ଦେଶ୍ୟ ହେବା ଉଚିତ ।

କେତେବେଳେ ଦେଖାଯାଏ ଯେ, ହଠାତ୍ ବିଦ୍ୟୁତ୍ ତାରରୁ ନିଆଁ ବାହାରି ଘର ପୋଡ଼ିଯାଏ ଏବଂ ବହୁ ଧନଜୀବନ କ୍ଷତିଗ୍ରସ୍ତ ହୁଏ । ଏହାର କାରଣ ହେଉଛି ଯେ, ବିଦ୍ୟୁତ୍ ତାରମାନଙ୍କୁ କୁପରିବାହୀ ପ୍ଲାଷ୍ଟିକ୍ ବା ଅନ୍ୟ ପ୍ରକାର ଆବରଣ ମଧ୍ୟରେ ଭଲଭାବେ ଘୋଡ଼ାଇ ରଖା ଯାଇଥାଏ । କେତେବେଳେ ଏହି ତାରମାନଙ୍କର ଆବରଣ ଦୁର୍ବଳ ହୋଇଯାଏ ଏବଂ ସେମାନେ କୌଣସି କାରଣରୁ ପରସ୍ପରର ସଂସ୍ପର୍ଶରେ ଆସିଯାନ୍ତି, ତାହାହେଲେ ଶର୍ଟ-ସର୍କିଟ୍ ଯୋଗୁଁ ଘରେ ନିଆଁ ଧରେ । ବିଦ୍ୟୁତ୍‌ଶକ୍ତି ଦ୍ୱାରା ଦୁର୍ଘଟଣାମାନ ସାଧାରଣତଃ ଆମର ଅସାବଧାନତା କିମ୍ବା ଅଜ୍ଞତା ଯୋଗୁଁ ଘଟିଥାଏ । ତେଣୁ ତାର ଉପାଦେୟତା ବିଷୟରେ ସତର୍କ ରହି ନିରାପତ୍ତା ପାଇଁ ଆମେ ଆର୍ଥିଂ, ଫ୍ୟୁଜ୍ ଇତ୍ୟାଦି ଉପାୟରେ ଉପଯୁକ୍ତ ପଦକ୍ଷେପ ନେବା ଉଚିତ ।

ଉପସଂହାରରେ, ଇଥିଓପିଆର ସମ୍ରାଟ ମେନେଲିକ୍‌ଙ୍କ ଜୀବନୀରୁ ଲକ୍ଷ୍ୟକରି ପ୍ରଗାଢ ଭାବେ କୁହାଯାଇପାରେ ଯେ, ଯେଉଁ ବିଦ୍ୟୁତ-ଶକ୍ତି ବିଦ୍ୟୁତ୍-ଚେୟାରରେ ଶବାଧାରର କାର୍ଯ୍ୟ କରେ, ତାହା ଏହି ବିଦ୍ୟୁତ୍—ପ୍ରଧାନ ଆଧୁନିକ ଯୁଗରେ ରାଜସିଂହାସନର ମର୍ଯ୍ୟାଦା ପାଇଁ ଅବଶ୍ୟ ହକ୍‌ଦାର ।



# ପ୍ରଳୟର ଅଗ୍ନିବେଣୀ

ଭବିଷ୍ୟତରେ ଏମିତ ଦୁର୍ଦ୍ଦିନ ଆସିପାରେ, ଯେତେବେଳେ ଲକ୍ଷ ଲକ୍ଷ ଲୋକଙ୍କ ଶରୀରରେ କ୍ଷତସ୍ଥାନ ସୃଷ୍ଟି ହେବ; ଯେଉଁଥିରୁ ଅବିଶ୍ରାନ୍ତ ପୂଜ, ରକ୍ତ ବହୁଥିବ । ଔଷଧ ବ୍ୟବହାର କଲେ ମଧ୍ୟ ଏହି ଘା, ଶୁଖିବ ନାହିଁ; କିନ୍ତୁ ଯନ୍ତ୍ରଣା କମିବ ନାହିଁ । କୌଣସି ଉପଚାରକୁ ନ ମାନି କ୍ଷତସ୍ଥାନମାନଙ୍କରୁ ଦିନକୁ ଦିନ ଅଧିକ ରକ୍ତସ୍ରାବ ହେବ ଓ ରୋଗୀମାନେ ଏଥିପାଇଁ କୌଣସି ଆଶା ନ ଦେଖି ଶୀଘ୍ର ମୃତ୍ୟୁ ପାଇଁ ଭଗବାନଙ୍କୁ କାତର ପ୍ରାର୍ଥନା କରୁଥିବେ ! ମୃତ୍ୟୁ ନିଶ୍ଚିତ ବୋଲି ଜାଣିପାରୁଥିଲେ ମଧ୍ୟ, ତାହା ବିଳମ୍ବିତ ହୋଇ ଜୀବନ ଅଧିକ ଦୁର୍ବିସହ ହୋଇପଡୁଥିବ । ମାରାତ୍ମକ ଚର୍ମ କର୍କଟ ରୋଗ "ମେଲାନୋମା" ସମସ୍ତଙ୍କୁ ଆକ୍ରମଣ କରି ସୃଷ୍ଟି-ପ୍ରଳୟର ଆତଙ୍କ ସୃଷ୍ଟି କରିବ ।

ମଣିଷଜାତିର ଭବିଷ୍ୟତ ସମ୍ପର୍କରେ ଏମିତ ଏକ ବିଭତ୍ସ କଳ୍ପନା ପଛରେ ମୂଳ କାରଣ ହେଉଛି ଯେ, ଆମେ ଏହାର ପୂର୍ବ ସୂଚନା ବର୍ତ୍ତମାନଠାରୁ ପାଉଛୁଁ । ୧୯୭୪ ମସିହାରେ ଯୁକ୍ତରାଷ୍ଟ୍ର ଆମେରିକାର ଜାତୀୟ କ୍ୟାନସର୍ ଅନୁଷ୍ଠାନ ତରଫରୁ କରାଯାଇଥିବା ଗବେଷଣା ଏହି ମତକୁ ସମର୍ଥନ କରୁଛି । ଜଣାଯାଏ ଯେ, ଆମ ବାୟୁମଣ୍ଡଳରେ ଥିବା ଓଜୋନ୍-ସ୍ତରର ପରିମାଣ ଯଦି କୌଣସି କାରଣ ବଶତଃ ଶତକଡ଼ା ପାଞ୍ଚଭାଗ କମିଯାଏ, ତାହାହେଲେ ପାଞ୍ଚଲକ୍ଷ ଅଧିକା ବ୍ୟକ୍ତି ଚର୍ମ କର୍କଟ ରୋଗ ଦ୍ୱାରା ଆକ୍ରାନ୍ତ ହେବେ । ସୃଷ୍ଟି ପ୍ରଳୟ ଘଟିବ ନା ନାହିଁ; ଯଦି ଘଟିବ, ତାହାହେଲେ କେଉଁ ଉପାୟରେ—ତାହା ଅବଶ୍ୟ ଏକ ବିବାଦୀୟ ବିଷୟ । ତଥାପି କେତେକ ପୁରାଣଶାସ୍ତ୍ରରେ ବର୍ଣ୍ଣିତ ହୋଇଛି ଯେ ହଠାତ୍ ସମୁଦ୍ରର ଉତ୍ତାଳ ତରଙ୍ଗ ସ୍ଥଳ ଭାଗକୁ ମାଡ଼ି ଆସି ପ୍ରଳୟ ହେବ । ବହୁ ସାଧାରଣ ଲୋକ ବିଶ୍ୱାସ କରନ୍ତି ଯେ, ବର୍ତ୍ତମାନ ପୃଥିବୀରେ ଯେଉଁ ବିଶାଳ ଆଣବିକ ଅସ୍ତ୍ର ସଞ୍ଚିତ ଅଛି, ତାହା ଯୁଦ୍ଧ ବେଳେ ପ୍ରୟୋଗ କରାଯାଇ ମୂଳତଃ ଅଗ୍ନ୍ୟୁତ୍ପାତରେ ସୃଷ୍ଟି ନାଶ ହେବ । କିନ୍ତୁ ବାୟୁମଣ୍ଡଳରେ

ଓଜୋନ୍‌ର ହ୍ରାସ ଯୋଗୁଁ ଯଦିଓ ଏ ସମସ୍ତେ ଜନ ଅଜାଣତରେ ମୃତ୍ୟୁର ଦ୍ୱାର ଦେଶରେ ପହଞ୍ଚୁଛନ୍ତି, ତାହା କମ୍ ଉଦ୍‌ବେଗର କାରଣ ହୋଇ ନ ପାରେ ।

ଭୂପୃଷ୍ଠଠାରୁ ପ୍ରାୟ ଦଶରୁ କୋଡ଼ିଏ ମାଇଲ ଉର୍ଦ୍ଧ୍ୱରେ ଆମ ବାୟୁମଣ୍ଡଳରେ ଓଜୋନ୍ ନାମକ ଗ୍ୟାସ୍ ସମଗ୍ର ପୃଥିବୀକୁ ଏକ ନିର୍ଭରଯୋଗ୍ୟ ଛତାପରି ଘୋଡ଼ାଇ ହୋଇ ରହିଛି । ଏହା ସୂର୍ଯ୍ୟର କ୍ଷତିକାରକ ଅତିବାଇଗଣୀରଶ୍ମି ଓ ଏକ୍ସ-ରେକୁ ସଂଶ୍ଳେଷଣ କରି ଆମକୁ ଚର୍ମ କର୍କଟରୁ ରକ୍ଷା କରୁଛି । ଏହାର ସାନ୍ଦ୍ରତା ଅତି ନଗଣ୍ୟ ହୋଇଥିଲେ ମଧ୍ୟ, ଏହା ନ ଥିଲେ ମୋଟେ ପଞ୍ଚଶ ବର୍ଷ ମଧ୍ୟରେ ପୃଥିବୀରୁ ସମସ୍ତ ଜୀବଜନ୍ତୁ ନିଶ୍ଚିହ୍ନ ହୋଇଯାଇଥାନ୍ତେ । ଜଣାଯାଏ ଯେ, ଏହା ବାୟୁମଣ୍ଡଳରେ ନିର୍ଦ୍ଦିଷ୍ଟ ସ୍ତରେ ରହିନଥାଏ । ଏହା ପ୍ରତି ମୁହୂର୍ତ୍ତରେ ଗଠିତ ଓ ବିଘଟିତ ହେଉଥାଏ । ଫଳରେ ଏହି ଗ୍ୟାସ୍‌ର ପରିମାଣ ଓ ସ୍ତର ସର୍ବଦା ସ୍ଥିର ନ ରହି ଗଠନ ଓ ବିଘଟନ ପ୍ରକ୍ରିୟାର ସଂଖ୍ୟା ଉପରେ ନିର୍ଭର କରିଥାଏ । ଏହି ପ୍ରକ୍ରିୟାକୁ ସଂଘଟିତ କରିବା ପାଇଁ ସୂର୍ଯ୍ୟଙ୍କର ଅତି ବାଇଗଣୀ ରଶ୍ମିର ଭୂମିକା ମୁଖ୍ୟ । ବାୟୁମଣ୍ଡଳର ଦ୍ୱିପରମାଣୁ-ବିଶିଷ୍ଟ ଅମ୍ଳଜାନ ଅଣୁକୁ ତ୍ରିପରମାଣୁବିଶିଷ୍ଟ ଓଜୋନ୍-ଅଣୁରେ ପରିଣତ କରିବାକୁ ଏହି ରଶ୍ମି ମୁଖ୍ୟତଃ ଦାୟୀ । ଏହି ପ୍ରକ୍ରିୟାକୁ ବିପରୀତ ଦିଗରେ ସ୍ଖଳନା କରିବା ପାଇଁ ମଧ୍ୟ ଅତିବାଇଗଣୀ ରଶ୍ମି କାର୍ଯ୍ୟ କରିଥାଏ । ତେଣୁ ଓଜୋନ୍‌କୁ ଅମ୍ଳଜାନ ଓ ଅମ୍ଳଜାନକୁ ଓଜୋନ୍‌ରେ ପରିବର୍ତ୍ତିତ କରିବା କାର୍ଯ୍ୟ ଅହରହ ପ୍ରକୃତିରେ ଚାଲିଥାଏ ସୂର୍ଯ୍ୟଙ୍କ ଉକ୍ତ ରଶ୍ମି ସାହାଯ୍ୟରେ ।

ପୃଥିବୀରେ ସର୍ବତ୍ର ଓଜୋନ୍ ସମାନ ଭାବେ ବାଣ୍ଟି ହୋଇ ନଥାଏ । ସୁମେରୁ ଓ କୁମେରୁଠାରେ ଏହାର ପରିମାଣ ସର୍ବାଧିକ ହୋଇଥିବା ବେଳେ ବିଷୁବରେଖା ନିକଟବର୍ତ୍ତୀ ଅଞ୍ଚଳରେ ଏହା କମ୍ ଦେଖାଯାଏ । ପୁଣି ମେରୁ ଅଞ୍ଚଳରେ ଭୂମିଠାରୁ କମ୍ ଉଚ୍ଚତାରେ ତାହା ଥିବା ବେଳେ ଗ୍ରୀଷ୍ମମଣ୍ଡଳୀୟ କ୍ଷେତ୍ରମାନଙ୍କରେ ବହୁ ଉଚ୍ଚରେ ପରିଦୃଷ୍ଟ ହୁଏ ।

୧୯୭୮ ମସିହାରେ ନିମ୍ବସ-୭ ନାମକ ଏକ କୃତ୍ରିମ ଉପଗ୍ରହ ପୃଥିବୀର ପାଣିପାଗ ସମ୍ପର୍କରେ ସମ୍ବାଦ ଯୋଗାଇବା ପାଇଁ ପ୍ରେରିତ ହୋଇଥିଲା । ଏଥିରୁ ପ୍ରାପ୍ତ ତଥ୍ୟାନୁସାରେ ଦକ୍ଷିଣମେରୁରେ ( ଆଣ୍ଟାର୍କଟିକା ) ସେଠାକାର ବସନ୍ତ ଋତୁରେ (ଅଗଷ୍ଟରୁ ଅକ୍ଟୋବର ମାସ) ବିଶେଷ ଭାବେ ଓଜୋନ୍ କମିଯାଏ । ଆର୍କଟିକ ଅଞ୍ଚଳରେ (ଉତ୍ତରମେରୁ) ମଧ୍ୟ ଏହି ହ୍ରାସ ପରିଲକ୍ଷିତ ହୁଏ । ଜଣାଯାଏ ଯେ, ଫେବୃଆରି ୧୯୮୭ରେ ଶତକଡ଼ା ୨.୭ ଭାଗ ଓଜୋନ୍ କମିଥିଲା । ଏହା ଆମର ଓଜୋନ୍-ଛତାରେ ଛିଦ୍ର ହେବା ସହିତ ସମାନ । ଫଳରେ ସୂର୍ଯ୍ୟରୁ ଆସୁଥିବା

କ୍ଷତିକାରକ ଅତିବାଇଗଣୀ ରଶ୍ମି ଆଉ ଓଜୋନ୍-ଛତାରେ ନ ଅଟକି ଭୂପୃଷ୍ଠକୁ ଚାଲି ଆସୁଅଛି । ଏହାଦ୍ୱାରା ଆମ ଶରୀରର ଚର୍ମ କର୍କଟ ପରି ବହୁ ଦୁରାରୋଗ୍ୟ ରୋଗର ସୂତ୍ରପାତ ହୁଏ ।

ଦକ୍ଷିଣମେରୁରେ ଓଜୋନ୍ କମିବା ହୁଏତ ଉଦ୍‌ବେଗଜନକ ହୋଇ ନ ପାରେ କାରଣ ତାହା ଜନବସତିଶୂନ୍ୟ । କିନ୍ତୁ ଉତ୍ତରମେରୁ କ୍ଷେତ୍ରରେ ଜନବସତି ( ସାଇବେରିଆ, କାନାଡ଼ା, ନରୱେ, ସୁଇଡେନ୍ ) ରହିଥିବା ଯୋଗୁଁ ଏହା ଆତଙ୍କ ସୃଷ୍ଟି କରୁଛି । ଓଜୋନ୍-ହ୍ରାସ ସୁମେରୁ ଓ କୁମେରୁ ବ୍ୟତୀତ ଅନ୍ୟାନ୍ୟ ଜନବହୁଳ ଅଞ୍ଚଳକୁ ପ୍ରସାରିତ ହେବାରେ ଲାଗିଛି । ଏହାଦ୍ୱାରା ଅତିବାଇଗଣୀ ରଶ୍ମି ମାତ୍ରାଧିକ ଭାବେ ସମୁଦ୍ରଜଳରେ ପ୍ରବେଶ କରୁଛି । ଫଳରେ ସେଥିରେ ବଢୁଥିବା ସରଳ ବୃକ୍ଷ ଓ ଏକକୋଷ ବିଶିଷ୍ଟ ପ୍ରାଣୀମାନଙ୍କର ବଂଶବୃଦ୍ଧି ହ୍ରାସ ପାଇବା ସହିତ ସେମାନେ ଦିନେ ନିଃଶେଷ ହୋଇଯିବା ଆଶଙ୍କା ସୃଷ୍ଟି ହେଲାଣି । ଏଗୁଡ଼ିକ ବିଭିନ୍ନ ଜଳୀୟ ଜୀବଜନ୍ତୁଙ୍କ ଖାଦ୍ୟ ଭାବେ ବ୍ୟବହୃତ ହେଉଥିବା ଯୋଗୁଁ ସମସ୍ତ ଜଳୀୟ ଜୀବଜଗତ ବର୍ତ୍ତମାନ ପ୍ରମାଦ ଗଣିଲେଣି ।

ଏହି ପରିପ୍ରେକ୍ଷୀରେ ଓଜୋନ୍ ହ୍ରାସର କାରଣମାନ ଅନୁଧ୍ୟାନ କରିବା ଯଥାର୍ଥ ମନେହୁଏ । ପ୍ରଥମେ ସନ୍ଦେହ କରାଯାଇଥିଲା ଯେ, ୧୯୮୨ ସାଲରେ ମେକ୍ସିକୋର ଏଲ୍ ଚିଚନ ଆଗ୍ନେୟଗିରିରେ ଯେଉଁ ବିସ୍ଫୋରଣ ଘଟିଲା, ସେଥିରୁ ନିର୍ଗତ ଧୂଳିପଟଳ ଓ ଅନ୍ୟାନ୍ୟ ରାସାୟନିକ ଦ୍ରବ୍ୟ ଯୋଗୁଁ ଓଜୋନର କ୍ଷୟ ଘଟିଲା । କିନ୍ତୁ ଏପରି ଏକ ସାମୟିକ କାରଣ ଦ୍ୱାରା ବ୍ୟାପକ ଓଜୋନ୍ କ୍ଷୟ ଯଥାଯଥଭାବେ ବୁଝାଇ ହେଉନାହିଁ । ତେଣୁ ଏହା ପଛରେ ଆଧୁନିକ ଶିଳ୍ପୋନ୍ନତ ମଣିଷର ହାତ ରହିଛି ବୋଲି ସନ୍ଦେହ କରାଗଲା ।

ଅହମଦାବାଦ ନିକଟସ୍ଥ କାଣ୍ଡଲାରେ ଯେଉଁ ତୈଳକୂପ ଅଛି, ସେଠାରେ ୧୯୮୫ ସାଲ ଡିସେମ୍ବର ମାସ ପନ୍ଦର ତାରିଖରେ ଏକ ଭୟାବହ ଅଗ୍ନିକାଣ୍ଡ ଘଟିଥିଲା । ଏହା ଲିଭାଇବା ପାଇଁ ଦୀର୍ଘ ସୋହଳ ଦିନ ଲାଗିଥିଲା । ବହୁଦିନ ଧରି ଆକାଶ ଧୂମାଚ୍ଛନ୍ନ ରହିଥିଲା ଓ ବାୟୁମଣ୍ଡଳରେ ମାତ୍ରାଧିକ ଧୂଳିକଣା ଜମିରହି ଏକ ଅସ୍ୱାସ୍ଥ୍ୟକର ପରିସ୍ଥିତି ସୃଷ୍ଟି କରିଥିଲା । ଅହମଦାବାଦସ୍ଥିତ ଫିଜିକାଲ୍ ରିସର୍ଚ୍ଚ ଲାବୋରେଟୋରୀର ବୈଜ୍ଞାନିକମାନେ ଏହି ପରିବେଶରେ ବାୟୁମଣ୍ଡଳୀୟ ସ୍ଥିତି ସମ୍ପର୍କରେ ଅନୁଧ୍ୟାନ କରି ଜଣାଇଲେ ଯେ, ଅଗ୍ନିକାଣ୍ଡ ଆରମ୍ଭ ହେବାର ସାତଦିନ ମଧ୍ୟରେ ଓଜୋନର ପରିମାଣ ଶତକଡ଼ା ଦଶଭାଗ କମିଗଲା । ଓଜୋନର ପୂର୍ବାବସ୍ଥା ଫେରି ଆସିବା ପାଇଁ ଦୁଇ ସପ୍ତାହ ଆବଶ୍ୟକ ହେଲା ।

ମନୁଷ୍ୟ ଯୋଗୁଁ ଯେ ଓଜୋନ୍ ହ୍ରାସ ଘଟିପାରେ, ତାହା ଏହି ଦୃଷ୍ଟାନ୍ତରୁ ସ୍ପଷ୍ଟ ହେଉଛି । ଆମ ବାୟୁମଣ୍ଡଳରେ ଅମ୍ଳଜାନ ଓ ଯବକ୍ଷାରଜାନ ପର୍ଯ୍ୟାପ୍ତ ପରିମାଣରେ ରହିଛି । ଯେତେବେଳେ କୌଣସି ଅଗ୍ନିପିଣ୍ଡ କମ୍ପା ଅଥବା ବିସ୍ଫୋରଣ ଦ୍ୱାରା ବାୟୁମଣ୍ଡଳ ଉତ୍ତପ୍ତ ହୋଇଯାଏ, ଅମ୍ଳଜାନ ଓ ଯବକ୍ଷାରଜାନ ମଧ୍ୟରେ ରାସାୟନିକ ପ୍ରତିକ୍ରିୟା ଘଟି ନାଇଟ୍ରୋଜେନ୍-ଅକ୍ସାଇଡ୍ ସୃଷ୍ଟି ହୁଏ । ଏହି ଅକ୍ସାଇଡ୍‌ମାନ ଓଜୋନ୍‌କୁ କବଳିତ କରି ନଷ୍ଟ କରିଦିଏ । ପୁଣି ବହୁ ଉଚ୍ଚରେ ଆକାଶରେ ବ୍ୟୋମଯାନମାନ ବହୁ ଦ୍ରୁତବେଗେ ଉଡ଼ନ୍ତି । ଫଳରେ ସେମାନେ ନିର୍ଗତ କରୁଥିବା ତାପ ଷ୍ଟ୍ରାଟୋସ୍ଫିଅରର ଉତ୍ତାପ ବୃଦ୍ଧି କରନ୍ତି । ତେଣୁ ଏହି କାରଣରୁ ମଧ୍ୟ ନାଇଟ୍ରୋଜେନ ଅକ୍ସାଇଡ୍ ସୃଷ୍ଟି ହୋଇଥାଏ । ଏତଦ୍‌ବ୍ୟତୀତ ସିଲେନ୍, କ୍ଲୋରିନ୍, ନାଇଟ୍ରିକ୍ ଅକ୍ସାଇଡ୍ ଓ ବ୍ରୋମିନ୍‌ର ଯୌଗିକ ଉପାଦାନଗୁଡ଼ିକ ଓଜୋନ୍ ଧ୍ୱଂସ ପ୍ରକ୍ରିୟାରେ ସହାୟକ ହୋଇଥାନ୍ତି ।

ଶୀତତାପ ନିୟନ୍ତ୍ରଣ, ଶୀତଳ ଭଣ୍ଡାର, ରେଫ୍ରିଜିରେଟର୍ ଇତ୍ୟାଦିରେ ବ୍ୟବହୃତ ହେଉଥିବା ଫ୍ରିଅନ୍ ଗ୍ୟାସରେ କ୍ଲୋରୋଫ୍ଲୋରୋ କାର୍ବନ (ସି.ଏଫ୍.ସି.) ନାମକ ଏକ ଉଦ୍ବାୟୀ ଦ୍ରବ୍ୟ ରହିଥାଏ । କୁହାଯାଏ ଯେ, ପ୍ରତିବର୍ଷ ଦଶଲକ୍ଷ କିଲୋଗ୍ରାମ୍ ସି. ଏଫ୍. ସି. ଗ୍ୟାସ ବାୟୁମଣ୍ଡଳକୁ ଆମ ଉଦ୍ୟୋଗ ଓ ଶିଳ୍ପାଞ୍ଚଳରୁ ଛଡ଼ାଯାଏ । ଏହା ହାଲୁକା ହୋଇଥିବାରୁ ବାୟୁଦ୍ୱାରା ଅତିସହଜରେ ଊର୍ଦ୍ଧ୍ୱକୁ ନୀତ ହୋଇ ଷ୍ଟ୍ରାଟୋସ୍ଫିୟରରେ ପହଞ୍ଚେ । ସେଠାରେ ଅତିବାଇଗଣୀ ରଶ୍ମି ସହିତ ସେମାନେ ପ୍ରତିକ୍ରିୟା ସୃଷ୍ଟି କରନ୍ତି, ଯାହା ଫଳରେ କ୍ଲୋରିନ୍ ପରମାଣୁ ଜାତ ହୁଏ । ଏହି କ୍ଲୋରିନ୍ ଓଜୋନ୍‌ର ବିଘଟନ ସକାଶେ ଉତ୍ପ୍ରେରକ ରୂପେ କାର୍ଯ୍ୟ କରିଥାଏ । ବହୁ ପାଶ୍ଚାତ୍ୟ ରାଷ୍ଟ୍ର ଏହି ବିପଦ ପ୍ରତି ସଚେତନ ହୋଇ ଓଜୋନ୍-ସ୍ତରକୁ ସ୍ଥିର ରଖିବା ପାଇଁ ସି. ଏଫ୍. ସି. ର ବ୍ୟବହାରକୁ ସରକାରୀ ପଦକ୍ଷେପ ଦ୍ୱାରା ନିଷିଦ୍ଧ କରିଲେଣି ।

ଏଠାରେ ଲକ୍ଷ୍ୟ କରିବା କଥା ଯେ, ଶିଳ୍ପାଞ୍ଚଳମାନଙ୍କରେ କମ୍ ଓଜୋନ କ୍ଷୟ ହେଉଥିବା ବେଳେ ମେରୁଅଞ୍ଚଳରେ ଏହି କ୍ଷୟ ଅପେକ୍ଷାକୃତ ଅଧିକ । ବିଶେଷତଃ ଦକ୍ଷିଣମେରୁରେ ଏହା ଅତ୍ୟଧିକ ପରିଲକ୍ଷିତ ହୁଏ । ଦକ୍ଷିଣମେରୁ ଜନଶୂନ୍ୟ ଓ ଶିଳ୍ପବିହୀନ ହୋଇଥିବା ଯୋଗୁଁ ସେଠାରେ ବାୟୁ ପ୍ରଦୂଷଣ ପ୍ରାୟତଃ ନାହିଁ । ତଥାପି ସେଠାରେ ଓଜୋନ୍ କାହିଁକି କ୍ଷୟ ହେଉଛି—ତାର ସୂତ୍ର ବାହାର କରିବା ପାଇଁ ବର୍ତ୍ତମାନ ବୈଜ୍ଞାନିକ ସ୍ତରରେ ଚେଷ୍ଟା ଚାଲିଛି । କୁମେରୁରେ ଘଟୁଥିବା ଏହି କ୍ଷୟ ଯେ ମନୁଷ୍ୟକୃତ ନୁହେଁ—ଏହି ବିଷୟରେ ସମସ୍ତେ ନିଶ୍ଚିତ । ବୈଜ୍ଞାନିକମାନଙ୍କ

ମନେ ହେଉଛି ଯେ, ଏଥିପାଇଁ ସୂର୍ଯ୍ୟ ଦାୟୀ । ସେହି ସୂର୍ଯ୍ୟଙ୍କୁ ଆମେ ଜୀବଜଗତର ଉତ୍ସ ଓ ସୃଷ୍ଟିକର୍ତ୍ତା ବୋଲି ବିଶ୍ୱାସ କରୁଁ, ଯିଏ ସେ ଓଜୋନ୍ ସ୍ତର ଭଳି ପ୍ରଳୟର ଶେଷାବସ୍ଥାରେ ଆମ ପୃଥିବୀକୁ ଜୀବଶୂନ୍ୟ କରିଦେବେ, ତାହା ଆମେ ହଠାତ୍ ବିଶ୍ୱାସ କରିପାରୁ ନାହୁଁ । କିନ୍ତୁ ବୈଜ୍ଞାନିକ ଅନୁଧ୍ୟାନରୁ ଏହାର ସୂଚନା ମିଳୁଛି ।

ଗାଲିଲିଓ ଦୂରବୀକ୍ଷଣଯନ୍ତ୍ର ଉଦ୍ଭାବନ କରିବା ପରେ ୧୬୧୦ ସାଲରେ ପ୍ରଥମେ ସୂର୍ଯ୍ୟପୃଷ୍ଠରେ ସୌରକଳଙ୍କ ଦେଖି ପାରିଥିଲେ । ସୂର୍ଯ୍ୟଙ୍କ ବିଷୁବରେଖାର ଉଭୟ ପାର୍ଶ୍ୱରେ ୧୦ ଡିଗ୍ରୀଠାରୁ ୪୫ ଡିଗ୍ରୀ ଅକ୍ଷରେଖା ମଧ୍ୟରେ ସୌରକଳଙ୍କ ପରିଦୃଷ୍ଟ ହୁଏ । ଏଠାରେ ଉତ୍ତାପ ୪୫୦୦ ଡିଗ୍ରୀ ହୋଇଥିବା ବେଳେ ଏହାର ନିକଟବର୍ତ୍ତୀ ଅଞ୍ଚଳରେ ଉତ୍ତାପ ଛ'ହଜାର ଡିଗ୍ରୀ ସେଣ୍ଟିଗ୍ରେଡ୍ ହୋଇଥାଏ । କମ୍ ଉତ୍ତାପ ଥିବା ଯୋଗୁଁ ଏମାନେ କମ୍ ଆଲୋକ ବିକିରଣ କରନ୍ତି । ତେଣୁ କୃଷ୍ଣବର୍ଣ୍ଣ ଦେଖାଯାନ୍ତି । ଏମାନଙ୍କ ବ୍ୟାସ ସାଧାରଣତଃ ଏକ ହଜାରରୁ ତିନି ହଜାର କିଲୋମିଟର ହୋଇଥାଏ ଏବଂ ତଦେ ଦୁଇତିନି ମାସ ଯାଏଁ ଦେଖାଯାଇ ସୂର୍ଯ୍ୟଙ୍କ ବିଷୁବରେଖା ଆଡ଼କୁ ଗତିକରି ଅଦୃଶ୍ୟ ହୋଇଯାନ୍ତି । ସୂର୍ଯ୍ୟଙ୍କ ଚୁମ୍ବକୀୟ କ୍ଷେତ୍ର ଓ ସେଠାରେ ଥିବା ଘୂର୍ଣ୍ଣାୟମାନ ଚାର୍ଜଯୁକ୍ତ କଣିକା ମଧ୍ୟରେ ସଂଘଟିତ ହେଉଥିବା ପାରସ୍ପରିକ କ୍ରିୟା ଯୋଗୁଁ ସୌରକଳଙ୍କର ଉତ୍ପତ୍ତି ହୁଏ ବୋଲି ବୈଜ୍ଞାନିକମାନେ ଧାରଣା ଦର୍ଶାଉଛନ୍ତି ।

ସୌରକଳଙ୍କର ସଂଖ୍ୟା ସବୁବେଳେ ସ୍ଥାୟୀ ନ ଥାଏ । ପ୍ରତି ଏଗାର ବର୍ଷରେ ଥରେ ଏମାନଙ୍କ ସଂଖ୍ୟା ହଠାତ୍ ବୃଦ୍ଧି ପାଇ ଶତାଧିକରେ ପହଞ୍ଚିଥାଏ । ସେହିପରି ଏହି ଏଗାରବର୍ଷୀୟ ଅବଧିର ମଧ୍ୟଭାଗରେ ଏହା କମିଯାଇ ତିନି କିମ୍ବା ଚାରି ସଂଖ୍ୟାକୁ ଖସିଯାଏ । ଉଦାହରଣ ସ୍ୱରୂପ ୧୯୮୦ ସାଲର ମେ ମାସରେ ଏମାନଙ୍କ ସଂଖ୍ୟା ଅତ୍ୟଧିକ ହୋଇ ୧୮୦ରେ ପହଞ୍ଚିଥିବା ବେଳେ ୧୯୮୬ ରେ ଏହା ଅତି କମ୍ ସଂଖ୍ୟାରେ ପହଞ୍ଚିଥିଲା । ପୁଣି ୧୯୯୧ ସାଲରେ ଏହା ଦ୍ୱିଗୁଣ ଯାଏଁ ବୃଦ୍ଧି ହେବ ବୋଲି ଆଶା କରାଯାଏ । ଏଗାରବର୍ଷିଆ ଅବଧି ଅନୁସାରେ ୧୯୯୭ ସାଲରେ ଏହା ଏକକ ସଂଖ୍ୟାକୁ ଖସି ଆସିବ । ସୌରକଳଙ୍କର ସଂଖ୍ୟାରେ ଏହି ସେହି ନିୟମିତ ବୃଦ୍ଧି ଓ ହ୍ରାସ ଘଟେ, ତଦନୁସାରେ ପୃଥିବୀର ତାପମାତ୍ରାରେ ମଧ୍ୟ ବୃଦ୍ଧି ଓ ହ୍ରାସ ଘଟିଥାଏ । ତେଣୁ ୧୯୮୦ ସାଲରେ ପୃଥିବୀରେ ଅଧିକ ଉତ୍ତାପ ହୋଇଥିବା ବେଳେ ୧୯୮୬ ସାଲରେ ତାପମାତ୍ରା ଏତେ କମିଗଲା ଯେ ଇଂଲଣ୍ଡର ବିଗ୍‌ବେନ୍ ଘଣ୍ଟା ହିମପ୍ରବାହରୁ ଅଚଳ ହୋଇଗଲା । ରୁଷିଆର ମୁର୍‌ମାନସ୍କ ଓ ଉର୍ଦ୍ଦି ସହରର ତାପମାତ୍ରା ହିମାଙ୍କର ୩୫ ଡିଗ୍ରୀ ସେଣ୍ଟିଗ୍ରେଡ୍ ତଳକୁ ଖସିଗଲା । କାଶ୍ମୀରର ଡାଲ୍ ହ୍ରଦରେ ବରଫ କାଟିବା ପାଇଁ ସାମୟିକ ବ୍ୟବସ୍ଥାର ଆବଶ୍ୟକତା ଦେଖା

ଦେଇଥିଲା । ଲେହ—ଶ୍ରୀନଗର ରାଜପଥରେ ଯାଉଥିବା ଏକ ବହୁତ ଅଣୀକଣ ଯାତ୍ରୀଙ୍କର ହୃତ୍‌କ୍ରିୟା ଅଚଳସ୍ଥ ଅଣ୍ଡା ଯୋଗୁଁ ବନ୍ଦ ହୋଇଥିଲା । ଏହା ଅଭୂତ୍-ଏକ୍‌ର ଏକ ନମୁନା ବୋଲି ଧରାଯାଇପାରେ । ପାଞ୍ଚବର୍ଷ ପରେ ଶୀଘ୍ର ପ୍ରବାହ ବେଳେ ମଧ୍ୟ ଏହାପରି ଗୁରୁତର ଓ ସାଂଘାତିକ ଘଟଣାମାନ ଘଟିଥାଏ ।

ସୌରକଳଙ୍କ ଯୋଗୁଁ ପୃଥିବୀ ପୃଷ୍ଠରେ ହଠାତ୍ ଉକ୍ତ ହ୍ରେଞ୍ଜମାନ ପରିବର୍ତ୍ତନ ଦ୍ୱାରା ଯେତେ କ୍ଷତି ହୁଏ ନାହିଁ, ତାହାଠାରୁ ଅଧିକ କ୍ଷତି ହୁଏ ଓଜୋନ୍ ପରିମାଣରେ ହ୍ରାସ ଯୋଗୁଁ । ୧୯୮୦ ସାଲପରି ସୌରକଳଙ୍କ ଯେତେବେଳେ ବୃଦ୍ଧି ପାଏ, ସୂର୍ଯ୍ୟଙ୍କ ଶରୀରରୁ ସୌର ବାୟୁ ଛୁଟ୍ କ୍ଷିପ୍ରଭାବେ ପୃଥିବୀ ଅଡ଼କୁ ମାଡ଼ି ଆସେ । ଏହି ସୌର ବାୟୁରେ ମୁଖ୍ୟତଃ ଶକ୍ତିପୂର୍ଣ୍ଣ କଣିକା ରହିଥାଏ । ଏମାନଙ୍କ ସହିତ ପୃଥିବୀର ଚୁମ୍ବକୀୟ କ୍ଷେତ୍ରର ପ୍ରତିକ୍ରିୟା ଘଟେ । ଫଳରେ କଣିକାଗୁଡ଼ିକ ପୃଥିବୀର ଦୁଇ ମେରୁ ଅଞ୍ଚଳକୁ ବିତାଡ଼ିତ ହୋଇ ସେଠାରେ ଜମା ହୋଇଯାଆନ୍ତି । ଏହାଦ୍ୱାରା ସେଠାରେ ସ୍ୱର୍ଜର ସାନ୍ଦ୍ରତା ବୃଦ୍ଧି ପାଏ ଏବଂ ଏମାନେ ଓଜୋନ୍‌କୁ ଅଧିକ ପରିମାଣରେ ବିଘଟିତ କରିଥାନ୍ତି । ଫଳରେ ଓଜୋନ୍‌ର ପରିମାଣ ଦ୍ରୁତଭାବେ ହ୍ରାସ ପାଏ ।

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ, ଓଜୋନ୍ ହ୍ରାସ ପାଇଁ ସୂର୍ଯ୍ୟଙ୍କ ତୁଳନାରେ ଆଧୁନିକ ଶିଳ୍ପ ଓ ବିଜ୍ଞାନର ଭୂମିକା ନଗଣ୍ୟ । ତଥାପି ଦେଖିବାକୁ ଏମିତି ଏକ ଦୁର୍ଯୋଗ ଆସିପାରେ ଯେ, ସୌରକଳଙ୍କ ଅତ୍ୟଧିକ ସକ୍ରିୟ ଥିବା ସମୟରେ ଆମେ ଭୂପୃଷ୍ଠରେ ଶିଳ୍ପପ୍ରଦୂଷଣ କିମ୍ବା ପରମାଣୁ ବିସ୍ଫୋରଣ ଘଟାଇ ବାୟୁମଣ୍ଡଳୀୟ ଉତ୍ତାପକୁ ବୃଦ୍ଧି କରିଦେଲୁ; ଯାହାଦ୍ୱାରା ଓଜୋନ୍ ପରିମାଣ ମାତ୍ରାଧିକ ଭାବେ ହ୍ରାସ ପାଇବ ଓ ସୂର୍ଯ୍ୟଙ୍କ ଅତିବାଇଗଣୀ ରଶ୍ମି, ତଥା ରଞ୍ଜନରଶ୍ମି ଦ୍ୱାରା ଆମେ ସମସ୍ତେ ଦୁରାରୋଗ୍ୟ ଚର୍ମକର୍କଟ ରୋଗରେ ପୀଡ଼ିତ ହୋଇ ମୃତ୍ୟୁକୁ ଡାକି ଆଣିବା । ଅବଶ୍ୟ ଏହା ସୃଷ୍ଟି ପ୍ରଳୟର ଶେଷ ସ୍ତର ପାଇଁ ପ୍ରଯୁଜ୍ୟ । ସୃଷ୍ଟି-ପ୍ରଳୟର ବିଭିନ୍ନ ବେଳ ମଧ୍ୟରେ ଏହି ପରିବେଶ ମଧ୍ୟ ଅନ୍ୟତମ । ଏଥିପ୍ରତି ଯଥାଶୀଘ୍ର ସତର୍କ ରହିବା ଉଚିତ ହେବ ।

# ଜୀବସତ୍ତା ଓ ପରିବେଶ

ବହୁ ଲୋକଙ୍କ ବ୍ୟକ୍ତିଙ୍କର ମତ ଯେ, ଇତିହାସର ପୁନରାବୃତ୍ତି ଘଟେ । ଏହାର ଏକ କାରଣ ହୋଇପାରେ ଯେ, ବରିଷ୍ଠ ବ୍ୟକ୍ତିମାନଙ୍କର ପୁନର୍ଜନ୍ମ ହୁଏ । ଏଠାରେ ପୁନର୍ଜନ୍ମର ଅର୍ଥ ନୁହେଁ ଯେ, ବରିଷ୍ଠ ବ୍ୟକ୍ତିମାନେ ଥରକୁ ଥର ଜନ୍ମଲାଭ କରନ୍ତି । କିନ୍ତୁ ସେମାନଙ୍କର ଚରିତ୍ର ବାରମ୍ବାର ପରିଦୃଷ୍ଟ ହୋଇଥାଏ । ଏମିତି ଏକ ଚରିତ୍ର ହେଉଛି କାଳିଦାସ । ଏକଦା କାଳିଦାସ ଯେଉଁ ଗଛ ଡାଳରେ ବସିଥିଲେ, ତାର ମୂଳକୁ କୁରାଢ଼ୀରେ ହାଣୁଥିଲେ । ତଥାପି ସେ ଜାଣି ନ ଥିଲେ ଯେ, ଏହା ଏକ ଆତ୍ମଘାତୀ କାର୍ଯ୍ୟ । ଏହି ଦୃଷ୍ଟିରୁ ତାଙ୍କୁ ମହାମୂର୍ଖର ଅବତାର ବୋଲି ଗ୍ରହଣ କରାଯାଇଥିଲା । ସ୍ୱୟଂ ମହାମୂର୍ଖ କାଳିଦାସଙ୍କର ପୁନର୍ଜନ୍ମ ବାରମ୍ବାର ନ ହେଉଥିଲେ ସୁଦ୍ଧା ତାଙ୍କ ଚରିତ୍ର ଆଧୁନିକ ବିଜ୍ଞାନ ଯୁଗରେ ବହୁଳଭାବେ ପୁନଃ ଅବତୀର୍ଣ୍ଣ ହେଉଛି । ଏହି ପ୍ରସଙ୍ଗରେ ଆମର ବର୍ତ୍ତମାନ-ଚରିତ୍ର ବୈଶିଷ୍ଟ୍ୟ ବୁଝିବା ପାଇଁ ଏକ ଉଦାହରଣ ଦିଆଯାଇପାରେ ।

ଲକ୍ଷ୍ୟ କରାଯାଇଛି ଯେ, ୧୯୩୦ ମସିହାରୁ ଇଟାଲୀର ଭେନିସ୍ ସହର ପ୍ରାୟ ଛଅ ଇଞ୍ଚ ଆଡ୍ରିଆଟିକ୍ ସମୁଦ୍ର ଭିତରକୁ ପଶି ଯାଇଛି । ତାର କାରଣ ସବୁ ଜଣା ପଡ଼ିଛି ଯେ, ପ୍ରାୟ ପାଞ୍ଚମାଇଲ ଦୂରସ୍ଥିତ ଇଟାଲୀ ଭୂଖଣ୍ଡରେ ମାର୍ଗେରା ନାମକ ଶିଳ୍ପ କେନ୍ଦ୍ର ପାଇଁ ଭୂଗର୍ଭରୁ ଜଳ ଉତ୍ତୋଳନ କରାଯାଉଛି । ଭୂଗର୍ଭସ୍ଥ ଶିଳାର ରନ୍ଧ୍ରସ୍ତରରୁ ସେକେଣ୍ଡକୁ ଶହେ ଗ୍ୟାଲେନ୍ ଜଳ ନିଷ୍କାସନ କରାଯାଇ କଳକାରଖାନାରେ ବ୍ୟବହୃତ ହେଉଥିବା ଯୋଗୁଁ ଭୂପୃଷ୍ଠର ଭାରସାମ୍ୟ ହରାଉଛି । ଏହା ସତ୍ତ୍ୱେ ଖୋଦ୍ ଭେନିସ୍ ସହରରେ ୧୯୫୩ ସାଲରୁ ଗୋଟିଏ ଜଳକୂପ ଖନନ କରାଯାଇ ସେକେଣ୍ଡକୁ ଦୁଇ ଗ୍ୟାଲେନ ଜଳ ଉତ୍ତୋଳନ କରାଯାଉଛି । ଫଳରେ ଉପସ୍ଥିତ ଅବସ୍ଥା ଶୋଚନୀୟ ହୋଇଯାଉଛି । ଏଥିରୁ ସୂଚିତ ହୁଏ ଯେ,

ବଞ୍ଚନ ସୂତ୍ରରେ ମଣିଷ ନିଜ ବୋକାମୀ ଯୋଗୁଁ କେତେ ଦୂର ଅସୁବିଧା ହୋଇପାରେ ।

ଜୈବୋଧତା ଯୋଗୁଁ ଆମର ବାସସ୍ଥଳ କେବଳ ବିପର୍ଯ୍ୟସ୍ତ ନୁହେଁ, ଆମ ଜୀବନ ଓ ଅସ୍ତିତ୍ୱ ପ୍ରତି ମଧ୍ୟ ଘୋର ବିପଦ ସୃଷ୍ଟି ହୋଇଛି । ଏହି ପ୍ରସଙ୍ଗରେ ଡିଡିଟିର ବ୍ୟବହାର ବିଷୟରେ ଉଲ୍ଲେଖଯୋଗ୍ୟ କରାଯାଇପାରେ । ୧୯୪୮ ମସିହାରେ ଡିଡିଟିର ଆବିଷ୍କାର ପାଇଁ ସୁଇଜରଲ୍ୟାଣ୍ଡର ପଲ୍ ମୁଲର୍‌ଙ୍କୁ ନୋବେଲ ପୁରସ୍କାର ପ୍ରଦାନ କରାଯାଇଥିଲା । ଡିଡିଟିକୁ କୀଟନାଶକ ଔଷଧ ଭାବେ କୃଷୀମାନେ ବହୁଳଭାବେ ବ୍ୟବହାର କରୁଥିଲେ । ଯେଉଁଠିରେ କ୍ଷେତରେ ଫସଲ ଉପରେ ଏହି ଔଷଧ ଛେଞ୍ଚାଯାଉଥିଲା, ଲୋକମାନେ ତାହା ଖାଇ ମରି ଯାଉଥିଲେ । ତେଣୁ ଫସଲ କୀଟମାନଙ୍କ ଦୌରାତ୍ମ୍ୟରୁ ଅବଶ୍ୟ ରକ୍ଷା ପାଇ ଯାଉଥିଲା । କିନ୍ତୁ ଏହାର ଏକ ମାରାତ୍ମକ ଦିଗ ପ୍ରତି ଲୋକେ ସଚେତନ ନଥିଲେ । ଡିଡିଟି ଦ୍ୱାରା ମୃତ କୀଟପତଙ୍ଗକୁ ଯେଉଁ ବଗୁଲା, ଚିଲ, ଶାଗୁଣା ଇତ୍ୟାଦି ପକ୍ଷୀମାନେ ଅଭ୍ୟାସବଶତଃ ଖାଉଥିଲେ, ସେମାନେ ଅକାଳରେ ମରିଗଲେ; କାରଣ ଡିଡିଟି ମୃତ କୀଟର ଶରୀରରେ ନଷ୍ଟ ନ ହୋଇ ରହିଯାଏ । ତେଣୁ ଡିଡିଟିର ବ୍ୟବହାର ଯୋଗୁଁ ଏହି ଶିକାରୀ ପକ୍ଷୀମାନଙ୍କର ସଂଖ୍ୟା ଆଶଙ୍କାଜନକ ଭାବେ ହ୍ରାସ ପାଇଲା । ଉଦାହରଣ ସ୍ୱରୂପ, ଅଲଦାରେ ଶାଗୁଣାଙ୍କ ସଂଖ୍ୟା ପନ୍ଦର ବର୍ଷ ମଧ୍ୟରେ ଏକ-ଚତୁର୍ଥାଂଶକୁ ଖସି ଆସିଲା । ଡିଡିଟି ଭକ୍ଷଣ କରିବା ଯୋଗୁଁ ପକ୍ଷୀମାନଙ୍କର ସ୍ୱାଭାବିକ ହାରମୋନ-ସାମ୍ୟ ପରିବର୍ତ୍ତିତ ହୁଏ ଏବଂ ସେମାନଙ୍କ ଅଣ୍ଡାରେ କ୍ୟାଲସିୟମ-କାର୍ବୋନେଟର ଅଭାବ ଯୋଗୁଁ ଅପରିପକ୍ୱ ଅବସ୍ଥାରେ ଅଣ୍ଡା ନଷ୍ଟ ହୁଏ । ସେମିତି ବାଲ୍‌ଡଇଗଲ ବେଲାଭୂମିର ପେଲିକାନ ପକ୍ଷୀ ଉପରେ ଏହାର କୁପ୍ରଭାବ ପଡ଼ିଥିଲା । ସମ୍ବାଦରୁ ପ୍ରକାଶ ଯେ, ୧୯୭୦ ମସିହାରେ ୫୦୨ ପକ୍ଷୀ-ବସାରେ ମାତ୍ର ଗୋଟିଏ ପେଲିକାନ ବଞ୍ଚିଥିଲା । କିନ୍ତୁ ଡିଡିଟି ନିଷିଦ୍ଧ କରାଯିବା ପରେ ୧୯୭୪ ମସିହାରେ ଏହି ପକ୍ଷୀସଂଖ୍ୟା ୨୫୭କୁ ବୃଦ୍ଧି ପାଇଥିଲା ।

ଏହି ମର୍ମରେ ପ୍ରଶ୍ନ ଉଠେ : ଯଦି ଚିଲ ଶାଗୁଣା ମରିଗଲେ ତେବେ ଆମେ କାହିଁକି ବ୍ୟସ୍ତ ହେବୁ ? ସେମାନେ ଏହି ଧରାପୃଷ୍ଠରୁ ସମୂଳେ ଲୋପ ପାଇଗଲେ ଆମର କ୍ଷତି କ'ଣ ? ଏହି ପ୍ରଶ୍ନର ଉତ୍ତର ପାଇଁ ପରିବେଶ-ବିଜ୍ଞାନ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ବୈଜ୍ଞାନିକମାନେ ଇକୋସିଷ୍ଟମ ବୋଲି ଏକ ଶବ୍ଦ ବ୍ୟବହାର କରିଥାନ୍ତି, ଯାହାର ଅର୍ଥ ହେଉଛି ଯେ, ସବୁପ୍ରକାର ସଜୀବ ଓ ନିର୍ଜୀବଙ୍କ ମଧ୍ୟରେ କ୍ରିୟା ପ୍ରତିକ୍ରିୟା ଅହରହ ଚାଲିଥାଏ ଏବଂ ଏହି ପ୍ରକାରେ ଆଦାନ-ପ୍ରଦାନ ସମତୁଳ ଅବସ୍ଥାରେ ନ ରହିଲେ ସ୍ୱାଭାବିକ ଜୀବନ ଯାତ୍ରା ଓ ସ୍ଥିତିଗତ ପ୍ରତି ବିପତ୍ତି

ଦେଖାଦେବ । ଏହି ପାରସ୍ପରିକ ସମ୍ପର୍କ କାର୍ବନ୍‌ସାଇକଲ୍, ନାଇଟ୍ରୋଜେନ-ସାଇକେଲ ଇତ୍ୟାଦି ବୈଜ୍ଞାନିକ ପ୍ରକ୍ରିୟାଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଏଥି ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ, ଜଳ, ଶାଗୁଣା ମଡ ଗୋଟିଏ ଅଞ୍ଚଳରେ ଲୋପ ପାଇଯାଏ, ତାହାହେଲେ ସେଠାରେ ପାରିବେଶିକ ଭାରସାମ୍ୟ ଅସ୍ଥିର ହୁଏ ।

ଜଙ୍ଗଲ ଦ୍ୱାରା ଅର୍ଥଲାଭ ହାସଲ କରିବାବେଳେ ପାରିବେଶିକ ଭାରସାମ୍ୟ ଉପରେ ଦୃଷ୍ଟି ଦିଆଯାଉନାହିଁ, ତାହା ଏହି ଉକ୍ତିର ଦୃଷ୍ଟାନ୍ତରୁ ଜଣାପଡ଼େ । କିନ୍ତୁ ଏଠାରେ ସ୍ମରଣ କରାଯାଇପାରେ ଯେ, ଏହି ପୃଥିବୀରେ ଜୀବମାନଙ୍କ ଆବିର୍ଭାବ ପୂର୍ବରୁ ପରିବେଶ ପ୍ରଦୂଷଣ ଆରମ୍ଭ ହୋଇସାରିଥିଲା । ଅବଶ୍ୟ ସେତେବେଳେ ପର୍ଯ୍ୟନ୍ତ ଜୀବସଂଖ୍ୟା କମ୍ ଥିବା, ପ୍ରକୃତି ବିଭିନ୍ନ ପ୍ରକାର ମଳ ଓ ଦୂଷିତ ପଦାର୍ଥକୁ ନଷ୍ଟ କରିବାକୁ ସକ୍ଷମ ହେଉଥିଲା । ପରେ ଯେତେବେଳେ ଜନବହୁଳ ଓ ଶିଳ୍ପାଞ୍ଚଳମାନ ଗଢ଼ି ଉଠିଲା, ପ୍ରକୃତି ସ୍ୱାଭାବିକ ପ୍ରକ୍ରିୟାରେ ଏବଂ ପରିବେଶକୁ ନିଜେ ମୁକ୍ତ ଓ ଶୁଦ୍ଧ ରଖିବା ପାଇଁ ଅକ୍ଷମ ହେଲା । ଉଦାହରଣ ସ୍ୱରୂପ, ୧୯୮୦ ମସିହାରେ ଅଷ୍ଟ୍ରେଲିଆର ପାରିପାର୍ଶ୍ୱିକ ଅବସ୍ଥା ସମ୍ପର୍କରେ ଗୋଟିଏ ରିପୋର୍ଟ ପ୍ରକାଶିତ ହୋଇଛି, ସେଥିରେ ସୂଚନା ଦିଆଯାଇଛି ଯେ ୨୮ ପ୍ରକାର ସ୍ତନ୍ୟପାୟୀ ଜନ୍ତୁ ନିଶ୍ଚିହ୍ନ ହୋଇଯାଇଥିବାବେଳେ ଅନ୍ୟ ତିରିଶ ପ୍ରକାର ଜନ୍ତୁଙ୍କର ଅସ୍ତିତ୍ୱ ସଙ୍କଟାପନ୍ନ । ସେହିପରି ସେଠାକାର ଜୀବ-ଜଗତର ଅଠର ପ୍ରକାର ଅଣ-ସାମୁଦ୍ରିକ ମେରୁଦଣ୍ଡୀ ପ୍ରାଣୀ ଲୋପ ପାଇ ଯାଇଥିବାବେଳେ ଷାଠିଏ ପ୍ରକାର ପ୍ରାଣୀ ନିଶ୍ଚିହ୍ନ ହେବାର ସମ୍ଭାବନା ଅଛି । ଭୌଗୋଳିକ ଦୃଷ୍ଟିରୁ ବଡ଼ ନଦୀ, ଜଳାଶୟ ଭୂଗର୍ଭସ୍ଥ ଜଳ-ସମ୍ପଦର ଅସ୍ୱାଭାବିକ ହ୍ରାସ ଯୋଗୁଁ ଶୁଷ୍କ ହୋଇଯାଇ ପାରନ୍ତି ବୋଲି ସି.ଏନ୍.ଏଫ୍.ଏସ୍ ସଂସ୍ଥା ପ୍ରକାଶ କରନ୍ତି । ତେଣୁ ପ୍ରଦୂଷଣ ନିୟନ୍ତ୍ରଣ କ୍ଷେତ୍ରରେ ଜନ-ସହଯୋଗ ଓ ତତ୍ପରତାର ଆବଶ୍ୟକତା ରହିଛି ।

ଆମେ ଯେଉଁ ଉପାୟରେ ପରିବେଶକୁ ଦୂଷିତ କରୁଛେ, ତାହା ତିନି ସ୍ତରରେ ବିଭକ୍ତ କରାଯାଇପାରେ । (୧) କଠିନ ମଇଳା (୨) ତରଳ ମଇଳା (୩) ଗ୍ୟାସୀୟ ମଇଳା । ଜୀବମାନଙ୍କ ଦ୍ୱାରା ତ୍ୟାଗ କରାଯାଉଥିବା ମଇଳା କମ୍ପୋଷ୍ଟ ସାର ହିସାବରେ ବ୍ୟବହାର କରି ଜମିର ଉର୍ବରତା ବଢ଼ାଇବା ସମ୍ଭବ ହେଉଥିଲେ ମଧ୍ୟ ଚାଷୀମାନେ ପରିଶ୍ରମକାତରତା ଯୋଗୁଁ ରାସାୟନିକ ସାର ଉପରେ ନିର୍ଭର କରନ୍ତି । ପୁଣି କଳକାରଖାନାରୁ ନିର୍ଗତ ମଇଳାମାନ ବେପରୁଆଭାବେ ଛାଡ଼ି ଦିଆଯିବା ଯୋଗୁଁ ତାହା ବର୍ଷାରେ ଧୋଇ ହୋଇ ଆସି ନଦୀ ଜଳରେ

ମିଶିଯାଏ । ବେଳେ ବେଳେ ବର୍ଷାଋତୁ ପୂର୍ବରୁ ତାହା ଅନ୍ୟ ଉପାୟରେ ସ୍ୱାସ୍ଥ୍ୟହାନି ଘଟାଏ । ଏହା କେବଳ ଶିଳ୍ପସମ୍ପନ୍ନ ଦେଶ ନୁହେଁ, ଓଡ଼ିଶା ପରି ଏକ ଅନଗ୍ରସର ରାଜ୍ୟରେ ମଧ୍ୟ ଦୁଃଶ୍ଚିନ୍ତାର କାରଣ ହୋଇଥାଏ । ତାଳଚେର ଥର୍ମାଲ ଷ୍ଟେସନର ସୁପରହିଟ ଷ୍ଟ୍ରକଚର ଚିମିନୀରୁ ଗତ କେତେ ବର୍ଷ ହେଲା ପାଉଁଶ ଉଡ଼ିବା ଫଳରେ ଆଖପାଖର ଜନବସତିର ଶାଳକଡ଼ା ସରୁଆ ସାଗ ଘଣ୍ଟା ତଥା ଅନ୍ୟାନ୍ୟ ମାରାତ୍ମକ ରୋଗର ଶିକାର ହେଉଛନ୍ତି ଏବଂ ହଜାର ହଜାର ଏକର ଶସ୍ୟ ଜମି ନଷ୍ଟ ହୋଇଯାଉଛି । ଚିମିନୀରୁ ପାଉଁଶକୁ ରୋକିବା ପାଇଁ ଗୋଟିଏ ପ୍ରକଳ୍ପକୁ କାର୍ଯ୍ୟକାରୀ କରିବାକୁ କେନ୍ଦ୍ର ସରକାର ଗତ ବର୍ଷଠାରୁ ନଅ କୋଟି ଟଙ୍କା ମଞ୍ଜୁର କରିଥିବା ପ୍ରକାଶ । ପୁନଶ୍ଚ ଆଜିକାଲି ଜୁଟ ଓ କାଠ ପରିବର୍ତ୍ତେ କୃତ୍ରିମ ତନ୍ତୁ, ପ୍ଲାଷ୍ଟିକ, ନମଡ଼ା, ରବର, କାଚ ଇତ୍ୟାଦି ପଦାର୍ଥର ବହୁଳ ପ୍ରଚାର ଯୋଗୁଁ ଏବଂ ଏଗୁଡ଼ିକ ନଷ୍ଟ ହୋଇଯିବା ପରେ ଆବର୍ଜନାରୂପେ ଜମା କରାଯାଉଥିବା ଯୋଗୁଁ, ପରିସ୍ଥିତି ଅଧିକ ଶୋଚନୀୟ ହୋଇପଡ଼େ କାରଣ ଏହି ବସ୍ତୁମାନ ରାସାୟନିକ ପ୍ରକ୍ରିୟାର ଊର୍ଦ୍ଧ୍ୱରେ ରହିଥିବା ଯୋଗୁଁ ପରିବେଶର ସାରସାମ୍ୟ ନଷ୍ଟ ହୋଇଯାଏ ।

(୧) **ତରଳ ମଇଳା**—ଉଦାହରଣସ୍ୱରୂପ ଆମ ଦେଶର ପବିତ୍ର ଗଙ୍ଗା ନଦୀକୁ ବିଚାର କରାଯାଇପାରେ । ପ୍ରଦୂଷଣ ସମ୍ପର୍କରେ କରାଯାଇଥିବା ସର୍ଭେ ଅନୁସାରେ ବର୍ତ୍ତମାନ ମିର୍ଜାପୁରରେ ୧୫ ଲକ୍ଷ, କାନପୁରରେ ସ୍ୱରକୋଟି, ବାରାଣସୀରେ କୋଡ଼ିଏ ଲକ୍ଷ ଓ ଏଲାହାବାଦରେ ୫୭୦୦ ଘନ ମିଟର ମଇଳା ପାଣି ଦୈନିକ ଏହି ନଦୀକୁ ଛଡ଼ା ଯାଉଛି । ମିର୍ଜାପୁରର ବାସନ ତିଆରି କାରଖାନାର ମଳ ଛଡ଼ାଯିବା ଦ୍ୱାରା ଗଙ୍ଗାଜଳ ଦୂଷିତ ଓ ବିଷାକ୍ତ ହୋଇଯାଉଛି । ଏହି ନଦୀର ଜଳରେ ବର୍ତ୍ତମାନ ବିଷାକ୍ତ ସିଆନାଇଡ୍, ଲେଡ୍, ଆର୍ସେନିକ, ଜିଙ୍କ, କ୍ରୋମିଅମ୍, ସିଲିନିଅମ୍ ସଲଫେଟ, ସିଲିକେଟ, ଫସ୍ଫରସ ଓ ନାଇଟ୍ରୋଜେନ ପରି ମାରାତ୍ମକ ରାସାୟନିକ ପଦାର୍ଥ ଦେଖିବାକୁ ମିଳେ । ପୁଣି ଜଣାଯାଉଛି ଯେ, ପ୍ରତିବର୍ଷ ଗଙ୍ଗା ନଦୀକୁ ତିନିଶହ ଟନ୍ ଡିଡିଆଇସ୍ ଓ ପନ୍ଦରଶହ ଟନ୍ ଯାଏଁ ଶବ ଭସାଇ ଦିଆଯାଏ । ଫଳରେ ଗଙ୍ଗୋତ୍ରୀ ଠାରୁ କଲିକତା ଯାଏଁ ୨୫୨୭ କିଲୋମିଟର ଦୈର୍ଘ୍ୟ ବିଶିଷ୍ଟ ଏହି ଗଙ୍ଗା ନଦୀର ଜଳ ଉପରେ ନିର୍ଭର କରୁଥିବା ପନ୍ଦର କୋଟି ଲୋକ ଓ ଏକୋଇଶି କୋଟି ପଶୁଙ୍କର ସ୍ୱାସ୍ଥ୍ୟ ବିପନ୍ନ ହୋଇପଡ଼ିଛି । ଯେଉଁ ଗଙ୍ଗାଜଳ ଦିନେ ମରଣ ଆସନ୍ନ ଥିବା ଲୋକଙ୍କ ପାଟିରେ ପକାଇଲେ ମୋକ୍ଷ ଦେଉଥିଲା, ତାହା ବର୍ତ୍ତମାନ ସୁସ୍ଥ ସବଳ ବ୍ୟକ୍ତିଙ୍କର ପାଟିରେ ଦେଲେ ତୁରନ୍ତ ମୋକ୍ଷ ହେଉପାରୁଛି ! ବର୍ତ୍ତମାନ ମୁଖ୍ୟ ଦୁଃଶ୍ଚିନ୍ତାର କାରଣ ହେଉଛି ଯେ, ଯେଉଁ ଗଙ୍ଗାନଦୀ ଦିନେ ଧାର୍ମିକ

ଓ ବୈଜ୍ଞାନିକ ଦୃଷ୍ଟିରୁ ରୋଗ ନିରାକରଣ କରୁଥିଲେ, ତାହା ଅପ୍ରତ ରୋଗ ଜାତ ଓ ବ୍ୟାପ୍ତ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରନ୍ତି ।

ଯେତେବେଳେ ଆମେ ନଦୀକୁ ମଇଳା ଫୋପାଡ଼ି ଦେଉ, ନଦୀ-ଜଳରେ ଥିବା ଅମ୍ଳଜାନ ସହିତ ଏହି ମଇଳା ପଦାର୍ଥର ରାସାୟନିକ ପ୍ରତିକ୍ରିୟା ଘଟେ । ଏହାଦ୍ୱାରା ମଇଳା ପଦାର୍ଥ ଅବଶ୍ୟ ନଷ୍ଟ ହୋଇଯାଏ; କିନ୍ତୁ ତତ୍‌ସହିତ ନଦୀଜଳର ଅମ୍ଳଜାନ ଖର୍ଚ୍ଚ ହୋଇଯାଏ । ଫଳରେ ନଦୀରେ ବସବାସ କରୁଥିବା ଜୀବମାନଙ୍କ ପାଇଁ ଅମ୍ଳଜାନର ଅଭାବ ଘଟେ ଓ ସେମାନେ ସ୍ୱଳ୍ପାୟୁ ହୋଇ ଅକାଳରେ ମୃତ୍ୟୁବରଣ କରନ୍ତି । ପୁଣି ମଇଳାର ପରିମାଣ ଅଧିକ ଥିଲେ, ନଦୀଜଳର ଅମ୍ଳଜାନ ରାସାୟନିକ ପ୍ରକ୍ରିୟା ସମ୍ପୂର୍ଣ୍ଣ କରିବା ପାଇଁ ନିଅଣ୍ଟ ହୁଏ ଏବଂ ମଇଳା ପୁରାପୁରି ଭାବେ ନିର୍ମଳ ହୋଇପାରେ ନାହିଁ । ଫଳରେ ଜଳଜୀବ ପାଇଁ ଏହା ଆହୁରି ଅଧିକ ବିପଦ ସୃଷ୍ଟି କରିଥାଏ । ପଶ୍ଚିମ ଜର୍ମାନୀ ଓ ହଲାଣ୍ଡରେ ପ୍ରବାହିତ ହେଉଥିବା ରାଇନ୍ ନଦୀ ଏହି ବିପଦର ସମ୍ମୁଖୀନ ହେଉଛି । ୧୯୫୦ ସାଲରେ କେତେକେଜଣ ଜାପାନ ପାରଦର ଯୌଗିକ ବସ୍ତୁଦ୍ୱାରା ଦୂଷିତ ନଦୀ ମାଛ ଖାଇ ପ୍ରାଣ ହରାଇଥିଲେ ।

(ଗ) **ଗ୍ୟାସୀୟ ମଇଳା** : ଏଗୁଡ଼ିକ ହେଲେ ମୁଖ୍ୟତଃ ଧୂଆଁ, ସଲଫର୍ ଡାଇ ଅକ୍‌ସାଇଡ୍ ଓ ଫ୍ଲୋରାଇଡ୍ ଏବଂ ଅଙ୍ଗାରକାମ୍ଳଜାନ । ବାୟୁମଣ୍ଡଳକୁ ପରିଷ୍କୃତ ରଖିବା ପାଇଁ ୧୯୬୭ ମସିହାରେ ବ୍ରିଟେନ୍‌ରେ "କ୍ଲିନ୍ ଏୟାର ଆକ୍ଟ" ପ୍ରଣୟନ କରାଯାଇଛି । ଯାହାଦ୍ୱାରା ସେଠାରେ ଭୂପୃଷ୍ଠ ଧୂଆଁର ପରିମାଣ ଶତକଡ଼ା ଚାଳିଶି ଭାଗରୁ କମି ଆସିଛି । କୋଇଲା, ତେଲ ଓ ଗ୍ୟାସ ଜଳାଇଲେ ଅଙ୍ଗାରକାମ୍ଳଜାନ ଉତ୍ପନ୍ନ ହୁଏ । ଏହି ଗ୍ୟାସର ଗୋଟିଏ ଗୁଣ ହେଉଛି ଯେ, ସଲଫର ଡାଇ ଅକ୍‌ସାଇଡ୍ ପରି ଏହା ବର୍ଷା ପାଣିଦ୍ୱାରା ଧୋଇ ହୋଇ ବାୟୁମଣ୍ଡଳରୁ ଚାଲିଯାଏ ନାହିଁ; କିନ୍ତୁ ବାୟୁମଣ୍ଡଳରେ ଜମି ରହେ । ତେଣୁ ଗ୍ରୀନ୍ ହାଉସ୍ ଏଫେକ୍ଟ ଦ୍ୱାରା ପୃଥିବୀର ତାପମାତ୍ରା ବୃଦ୍ଧିପାଏ । ଯଦି ଏହି କାରଣରୁ ପୃଥିବୀର ଉତ୍ତାପ ଦୁଇ ଡିଗ୍ରୀ ଅଧିକା ହୋଇଯାଏ, ତାହାହେଲେ ଉତ୍ତର ଓ ଦକ୍ଷିଣମେରୁର ବରଫ ତରଳି ପୃଥିବୀସାରା ବନ୍ୟା ସୃଷ୍ଟି ହେବ ଓ ପୁରାଣ ବର୍ଣ୍ଣିତ ପ୍ରଳୟ ଦୃଶ୍ୟ ସୃଷ୍ଟି କାଣ ହେବ । ବାୟୁଦ୍ୱାରା ଚତୁର୍ଦ୍ଦିଗକୁ ଉଡ଼ିଯାଉଥିବା ମଇଳାମାନ ଯେଉଁ ଦେଶର କଳକାରଖାନା, ସେଠାରେ ସୀମିତ ନ ରହି ଅନ୍ୟ ଦେଶର ବାୟୁମଣ୍ଡଳକୁ ଦୂଷିତ କରିଥାଏ । ଜଣାଯାଏ ଯେ, ଇଂଲଣ୍ଡର ମିଡ୍‌ଲାଣ୍ଡ ଓ ଜର୍ମାନୀର ରୁହ୍ର ଶିଳ୍ପାଞ୍ଚଳରୁ ନିର୍ଗତ କଠିନ ଓ ଗ୍ୟାସୀୟ ମଇଳାମାନ ବାୟୁ ଯୋଗୁଁ ସୁଦୂର ନରୱେ ଓ ସୁଇଡେନ୍‌ରେ ପହଞ୍ଚିଥାଏ । ତେଣୁ ବ୍ଲାକ୍ ସ୍ନୋ ଓ ଏସିଡ୍ ରେନ୍ ଦ୍ୱାରା ମତ୍ସ୍ୟ ଓ ବନ୍ୟସମ୍ପଦ

ବିପର୍ଯ୍ୟସ୍ତ ହୁଏ । ଯେମିତ ଏଇ ବର୍ଷ ରୁଷିଆର ଚେର୍ଣ୍ଣୋବିଲଠାରେ ଯେଉଁ ପରମାଣବିକ ଦୁର୍ଘଟଣା ଘଟିଥିଲା, ତାର ତେଜସ୍କ୍ରିୟତା ଦୂର ଦେଶର ସୀମା ଅତିକ୍ରମ କରି ଅନ୍ୟାନ୍ୟ ୟୁରୋପୀୟ ଦେଶମାନଙ୍କର ଜୀବନ ପ୍ରତି ଘୋର ବିପଦ ସୃଷ୍ଟି କରିଥିଲା । ତେଣୁ ମାନବ ସମାଜ ବର୍ତ୍ତମାନ ଯେ ତୃତୀୟ ବିଶ୍ୱଯୁଦ୍ଧ ଦ୍ୱାରା ଧ୍ୱଂସପ୍ରାପ୍ତ ହେବ—ତାହା ନୁହେଁ । ଆମେ ପାରିବେଶିକ କାରଣରୁ ବିନା ରକ୍ତପାତରେ, ଆମର ଅଜ୍ଞାତ-ସାରରେ, ନଷ୍ଟ ହୋଇଯିବା ଅସମ୍ଭବ ନୁହେଁ ।

ବାତାବରଣରେ ବିଶୃଙ୍ଖଳା ସୃଷ୍ଟି କରିବାକୁ ମୁଖ୍ୟତଃ ବିଜ୍ଞାନ ଓ ଶିଳ୍ପ ଦାୟୀ ବୋଲି ଏଥିରୁ ପ୍ରମାଣିତ ହୁଏ । କିନ୍ତୁ ତାର ଅର୍ଥ ନୁହେଁ ଯେ, ଆମେ ଶିଳ୍ପୀକରଣରୁ ଜଳାଞ୍ଜଳି ଦେବୁ; କାରଣ ଏହା ଶିରପୀଡ଼ା ଯୋଗୁଁ ଶିରଚ୍ଛେଦନ ଭଳି ଏକ ଅବୋଧ କାର୍ଯ୍ୟ ହେବ । ବିଜ୍ଞାନକୁ ନିନ୍ଦାକରି ଏକତରଫା ଭାବେ ଦୃଢ଼ସହକାରେ ପହଞ୍ଚିବା ପୂର୍ବରୁ ଅନ୍ୟ ଏକ ବିଷୟ ପ୍ରତି ଆମକୁ ଦୃଷ୍ଟି ଦେବାକୁ ପଡ଼ିବ । ମଣିଷ ନିଜ କାର୍ଯ୍ୟକଳାପ ଯୋଗୁଁ ନୂତନ ବା ରୂପାନ୍ତରିତ ଜୀବ ମଧ୍ୟ ସୃଷ୍ଟି କରିଥାଏ । ପ୍ରାୟ ନଅ ହଜାରବର୍ଷ ପୂର୍ବେ, ଯେତେବେଳେ ପ୍ରାକ୍ ଐତିହାସିକ ମଣିଷ ସ୍ଥାୟୀ ବସତି କରି ରହିବା ଶିଖିଲା, ସେ ଅଷ୍ଟ୍ରେଲିଆକୁ ନିଜ ସାଥିରେ ଡିଙ୍ଗୋ କୁକୁର ନେଇଥିଲା । ଏହି କୁକୁର ତତ୍କାଳୀନ ଅଷ୍ଟ୍ରେଲିୟା-ପରିବେଶରେ ବଢ଼ି ଯାଇଥିବା ଥାଇଲସାଇନ୍ କୁକୁରକୁ ନିପାତ କରି ନିଜେ ଆଧିପତ୍ୟ ବିସ୍ତାର କଲା । ଏହାଦ୍ୱାରା ପ୍ରମାଣିତ ହେଉଛି ଯେ, ପ୍ରକୃତି 'ଯୋଗ୍ୟତମର ବିଜୟ' ପ୍ରତି ପ୍ରତିଶ୍ରୁତିବଦ୍ଧ ହୋଇଥିଲେ ସୁଦ୍ଧା, ଏହାକୁ ମଣିଷ କାର୍ଯ୍ୟକାରୀ କରିବାରେ ବେଳେବେଳେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ପୁନଶ୍ଚ ନୂତନ ପରିସ୍ଥିତି ସହିତ ଖାପ ଖୁଆଇ ଚଳିବା ଜୀବ-ଜଗତର ଏକ ବୈଶିଷ୍ଟ୍ୟ । ସେହି ଅନୁସାରେ ଶୀତଳ ଗୃହରେ ପାଳିତ ହେଉଥିବା ମୂଷାମାନଙ୍କର ଲାଞ୍ଜୁଡ଼, କାନ ଇତ୍ୟାଦି ଛୋଟ ହୋଇଯାଏ; ସେମାନଙ୍କର ଲୋମ ମୋଟା ହୁଏ । ସେମିତି ଶିଳ୍ପ ବିପ୍ଳବ ପରେ ଇଂଲଣ୍ଡରେ ଯେତେବେଳେ ଅହର୍ନିଶି ସଲଫର୍ ଧୂଆଁ ନିର୍ଗତ ହେଲା ସେତେବେଳେ ଗଛମାନ କଳା ପଡ଼ିଗଲେ ଏବଂ ପୂର୍ବରୁ ଧଳା ରୂପ ନେଇ ସେଠାରେ ରହୁଥିବା ପତଙ୍ଗମାନଙ୍କର ବର୍ଣ୍ଣ ଆତ୍ମରକ୍ଷା ଦୃଷ୍ଟିରୁ କଳା ପାଲଟିଗଲା । ପୁଣି କିଛି ବର୍ଷ ପୂର୍ବେ ଇଂଲଣ୍ଡର କ୍ଲିନ୍-ଏୟାର-ଆକ୍ଟ ପ୍ରବର୍ତ୍ତିତ ହେବା ପରେ ଏହି ପତଙ୍ଗ-ମାନଙ୍କର ବର୍ଣ୍ଣ ଧଳା ହେବାରେ ଲାଗିଛି । ପ୍ରତ୍ୟେକ ଜୀବର ନୂତନ ପରିବେଶ ସହିତ ଖାପ ଖୁଆଇ ବଞ୍ଚି ରହିବା ପାଇଁ କ୍ଷମତା କିଛି ମାତ୍ରାରେ ରହିଥିବା ଯୋଗୁଁ ଶିଳ୍ପବିପ୍ଳବର କୁଫଳକୁ ପରିବେଶ-ବିଜ୍ଞାନ ମାଧ୍ୟମରେ ନିୟନ୍ତ୍ରଣ କରିବା ସମ୍ଭବପର । ତେଣୁ ସପ୍ତଦଶ ଶତାବ୍ଦୀରେ ଫ୍ରାନ୍ସିସ୍ ବେକନ୍ ଯାହା କହିଥିଲେ (We cannot

command Nature except by obeying her), ତାର, ଯଥାର୍ଥତା ରହିଛି ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି, ଏହି ଧରିତ୍ରୀରେ ଜୀବଜଗତ କପରି ସୃଷ୍ଟି ହେଲା ? ପାନ୍‌ସ୍ପେର୍ମିଆ ମତାନୁଯାୟୀ ବହିର୍ଜଗତରୁ କୌଣସି ଏକ ଉଲ୍‌କାପିଣ୍ଡ କିମ୍ବା ଅନ୍ୟ ଗ୍ରହ-ନକ୍ଷତ୍ରର ବୁଦ୍ଧିମାନ ଜୀବ ଦ୍ୱାରା ଆମ ପୃଥିବୀର ପ୍ରାଥମିକ ଜୀବ ଧରିତ୍ରୀକୁ ଆଣିତ ହେଲା । କିନ୍ତୁ ବହିର୍ଜଗତର ଉତ୍ତାପ, ଚାପ ଓ ଅନ୍ୟାନ୍ୟ କାରଣରୁ ଏହି ମତବାଦ ଗ୍ରହଣୀୟ ହୋଇପାରୁ ନାହିଁ । ଅନ୍ୟ ପକ୍ଷରେ ବହୁ ବୈଜ୍ଞାନିକମାନଙ୍କର ମତ ହେଉଛି ଯେ, ୩୫୦୦ ନିୟୁତ ବର୍ଷ ପୂର୍ବେ ପୃଥିବୀର ବାତାବରଣ ଏପରି ଏକ ସ୍ତରରେ ପହଞ୍ଚିଲା ଯେ, ଏହା ଜୀବନଧାରଣ କରିବାକୁ ସକ୍ଷମ ହେଲା । ତେଣୁ ଜୀବଜଗତର ସୃଷ୍ଟି ଅକସ୍ମାତ୍ ନୁହେଁ—ଏହା ପରିବେଶରେ ଏକ ନିୟମିକ ପ୍ରକ୍ରିୟା ଯୋଗୁଁ ଏକ ନିର୍ଦ୍ଦିଷ୍ଟ ସ୍ତରରେ ସମ୍ଭବ ହୋଇଛି । ଯେତେବେଳେ ସୂର୍ଯ୍ୟ କିରଣ ଦ୍ୱାରା ଫଟୋସିନ୍ଥେସିସ୍ ପ୍ରକ୍ରିୟା ଘଟି ବାତାବରଣରେ ଅମ୍ଳଜାନ ଓ ଓଜନ୍ ଗ୍ୟାସ୍‌ର ମାତ୍ରା ବଢ଼ିବାରେ ଲାଗିଲା, ଓଜନ୍ ଗ୍ୟାସ୍ ସୂର୍ଯ୍ୟର କ୍ଷତିକାରକ ଅଲ୍‌ଟ୍ରାଭାଇଓଲେଟ୍ ରଶ୍ମି ଭୂପୃଷ୍ଠରେ ପହଞ୍ଚି ପାରିଲା ନାହିଁ । ତେଣୁ ଜୀବ ଜଗତର ବ୍ୟାପ୍ତି ଓ ବିଭିନ୍ନତା ବହୁ-ପରିମାଣରେ ହଠାତ୍ ବଢ଼ିଗଲା ।

ବୈଜ୍ଞାନିକମାନେ ଜୀବଜଗତର ମୂଳ ଉପାଦାନ ସବୁ ଡି. ଏନ୍. ଏ. ମଲିକ୍ୟୁଲ୍‌କୁ ଜାଣିପାରିଥିଲେ ସୁଦ୍ଧା, ବିଜ୍ଞାନାଗାରରେ ଜୀବନ-ସୃଷ୍ଟି କରିବାରେ ଅସମର୍ଥ ହୋଇଛନ୍ତି । ବର୍ତ୍ତମାନ ପ୍ରଶ୍ନ ଉଠୁଛି ଯେ, ବହୁ ବର୍ଷ ପୂର୍ବେ, ଯେତେବେଳେ ପୃଥିବୀରେ ଜୀବ ସୃଷ୍ଟି ହେଲା, ସେତେବେଳେ ବାତାବରଣ ଅସ୍ୱାଭାବିକ, ବଜ୍ରପାତ ବାଷ୍ପ ଇତ୍ୟାଦିର ପ୍ରକୋପ ଯୋଗୁଁ ଦୂଷିତ ଓ ବିପଦସଙ୍କୁଳ ହୋଇଥିଲା; ତଥାପି ସେହି ସମୟରେ ପୃଥିବୀରେ ଜୀବନର ସୂତ୍ରପାତ ହୋଇଥିଲା । କିନ୍ତୁ ବର୍ତ୍ତମାନ ପରୀକ୍ଷାଗାରରେ ସୁସ୍ଥ, ନିର୍ମଳ ଓ ଅନୁକୂଳ ପରିବେଶ ମଧ୍ୟରେ ବୈଜ୍ଞାନିକମାନେ ଅଦ୍ୟାବଧି ଜୀବନ ସୃଷ୍ଟି କରିପାରୁ ନ ଥିବା ଆମ ବିଜ୍ଞାନର ଅସମ୍ପୂର୍ଣ୍ଣତା ସୂଚିତ କରୁଛି । ନୂତନ ଜୀବନ ସୃଷ୍ଟି କରିବା ଆମ ପକ୍ଷରେ ଅସମ୍ଭବ ହୋଇଥିବାବେଳେ ଜୀବଜଗତକୁ ସମୂଳେ ନଷ୍ଟ କରିବା ଅନୁଚିତ ଓ ଅନ୍ୟାୟ ।

ପୁଣି କାଳିଦାସ ପ୍ରସଙ୍ଗ । ମହାମୂର୍ଖ କାଳିଦାସ ଠକ ଦ୍ୱାରା ସୁପଣ୍ଡିତା ବିଦ୍ୟାବତୀଙ୍କୁ ଜ୍ଞାନ-ଯୁଦ୍ଧରେ ପରାସ୍ତ କରି ଅଭୂତପୂର୍ବ ବିଜୟ ହାସଲ କରିଥିଲେ । ସେତେବେଳେ ସେ ଆଧୁନିକ ଯୁଗର ବୈଜ୍ଞାନିକ ମଣିଷ ପରି ଉତ୍‌ଫୁଲ୍ଲିତ ନିଶ୍ଚୟ ହୋଇଥିବେ, କିନ୍ତୁ ଏହି ବିଜୟ ଓ ଆନନ୍ଦ ନ୍ୟପରଠାହରଥ ଦୋଷ ଜଣା ପଡ଼ିବା ପରେ କାଳିଦାସ ସେଥର ଦେବୀ ସରସ୍ୱତୀଙ୍କ ଗର୍ଭରୁ ଆଉ ଥର ଜନ୍ମ ହୋଇ ପଣ୍ଡିତ

ହୋଇଥିଲେ, ବର୍ତ୍ତମାନ ଯୁଗର ଲୋକେ ମଧ୍ୟ ପ୍ରକୃତ ଓ ହିତାହିତ ଜ୍ଞାନ ଲାଭ ପାଇଁ ଏପରି ବର-ପ୍ରାପ୍ତ ହେବାକୁ ଚେଷ୍ଟିତ ରହିବା ଆବଶ୍ୟକ । ତାହା ହେଲେ ଆମେ ଯେଉଁ ଗଛରେ ଚଢ଼ିଛେ, ତାର ମୂଳ ହାଣିବୁ ନାହିଁ । ପରିବେଶକୁ ଦୂଷିତ କରି ସୃଷ୍ଟି ଅରଣ୍ୟର ସ୍ୱଚ୍ଛ ବାତାବରଣକୁ ଆଉ ଫେରିପାଇବୁ ନାହିଁ ଏବଂ ଜୀବସତ୍ତା ଲୋପ କରିବାକୁ ଛାଡ଼ି ଦେବୁ ।



# ପରିବେଶ ଓ ସହଯୋଗ

ବେଳେ-ବେଳେ ବସ୍ ଛାଡ଼ିବାରେ ଦଶ ପନ୍ଦର ମିନିଟ୍ ବିଳମ୍ବ ହୋଇଗଲେ ଯାତ୍ରୀମାନେ କଣ୍ଡକ୍ଟର ଓ ଡ୍ରାଇଭର ବିରୁଦ୍ଧରେ ହୋ-ହାଲ୍ଲା କରନ୍ତି । ଫଳରେ ବସ୍‌କର୍ମଚାରୀମାନେ ଗାଡ଼ି ଛାଡ଼ିବା ପାଇଁ ସଚେତନ ଓ ତତ୍ପର ହୁଅନ୍ତି । ପ୍ରକୃତରେ କାର୍ଯ୍ୟହାସଲ କରିବା ପାଇଁ ବ୍ୟକ୍ତିଗତ ଉଦ୍ୟମ ଅପେକ୍ଷା ସମ୍ମିଳିତ ପ୍ରଚେଷ୍ଟା ଅଧିକ ଫଳପ୍ରଦ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ବସଯାତ୍ରୀମାନେ ସାଧାରଣତଃ କିଏ କେଉଁ ଅଞ୍ଚଳରୁ ଆସିଥାନ୍ତି, ତାହା ସହିତ କାହାରି ପ୍ରାୟ ସମ୍ପର୍କ ନ ଥାଏ । ତଥାପି ସେମାନେ ସମସ୍ତେ ଶୀଘ୍ର ବସ୍ ଛାଡ଼ିବା ବିଷୟରେ ଏକମତ ହେବାରୁ ସ୍ୱତଃସ୍ଫୂର୍ତ୍ତ ହୋଇ ମେଳ ବାନ୍ଧନ୍ତି । ଏଥିପାଇଁ ପୂର୍ବରୁ କୌଣସି ଯୋଜନା ବା କାର୍ଯ୍ୟକ୍ରମ ସେମାନଙ୍କର ନ ଥାଏ । ପରିସ୍ଥିତିରୁ ଯାହା କିଛି କାର୍ଯ୍ୟାନୁଷ୍ଠାନର ଉଦ୍‌ଭବ ହୋଇଥାଏ । ବାସ୍ତବିକ୍ ସମଦଶାପନ୍ନ ବ୍ୟକ୍ତିମାନେ ଆଗ୍ରହ ଓ ଉତ୍ସାହର ସହିତ ଏକ ଲକ୍ଷ୍ୟ ନେଇ ସହଜରେ ସମ୍ମିଳିତ ହୋଇଯାନ୍ତି । ଉପରୋକ୍ତ ବସ୍ ଛାଡ଼ିବା ଘଟଣାରେ ଏହି ପ୍ରକାର ସହଯୋଗ କ୍ଷଣିକ ମାତ୍ର ଏବଂ ଲକ୍ଷ୍ୟ ମଧ୍ୟ ତଦନୁସାରେ ନଗଣ୍ୟ । ଯେତେବେଳେ ଏହି ଲକ୍ଷ୍ୟ ମହତ୍ ଓ ଦୀର୍ଘକାଳୀନ ହୁଏ, ସେତେବେଳେ ସେଥିପାଇଁ ଅନୁଷ୍ଠାନିକ ଭିତ୍ତିଭୂମିର ଆବଶ୍ୟକତା ଦେଖାଦିଏ । ମହାଜନଙ୍କର ଚଢ଼ା ସୁଧହାରରୁ ରକ୍ଷା ପାଇବା, ମୁନାଫାଖୋର୍ ବ୍ୟବସାୟୀମାନଙ୍କ ଠକାମିରୁ ବର୍ତ୍ତିବା ଇତ୍ୟାଦି ବିଭିନ୍ନ ଲକ୍ଷ୍ୟ ନେଇ ସମବାୟସଂସ୍ଥାମାନ ବହୁଦିନରୁ ଚାଲି ଆସୁଛି । ଜୀବନର ବିଭିନ୍ନ ଦିଗ ନେଇ ବିଭିନ୍ନ ସମବାୟସମିତିମାନ ବିଭିନ୍ନ ଅଞ୍ଚଳରେ ଦୀର୍ଘଦିନ ଧରି ଉଲ୍ଲେଖନୀୟ ସଫଳତାର ସହିତ କାର୍ଯ୍ୟକ୍ଷମ ରହିଛନ୍ତି ।

କିନ୍ତୁ ବର୍ତ୍ତମାନର ଯାନ୍ତ୍ରିକ ଯୁଗରେ ଯେ ଏବେ ଯେତେବେଳେ ମନୁଷ୍ୟର ସ୍ଥିତି ବିପନ୍ନ, ସେତେବେଳେ ଆମକୁ ନୂତନ ଲକ୍ଷ୍ୟ ନେଇ ସଂଘବଦ୍ଧ ହେବାକୁ ପଡ଼ିବ । ବନ ଜଳ

ସେତେବେଳେ ମଣିଷ ପ୍ରକୃତି ଓ ପରିବେଶର ଅଧୀନରେ ଥିଲା । କିନ୍ତୁ ବର୍ତ୍ତମାନ ଯନ୍ତ୍ର ଓ ବିଜ୍ଞାନ ବଳରେ ମଣିଷ ପ୍ରକୃତିକୁ ନିୟନ୍ତ୍ରଣ କରୁଛି । ବିଭିନ୍ନ ପ୍ରକାର ବୃକ୍ଷ ଓ ବନ୍ୟ ସମ୍ପଦ ଆମେ ବୈଷୟିକ ପ୍ରଗତିର ଦ୍ୱାହି ଦେଇ ନିଜ ସ୍ୱାର୍ଥ ସାଧନ ପାଇଁ ନଷ୍ଟ କରୁଛେ । ଫଳରେ ଆମର ଜୈବ-ପରିବେଶ (ଇକୋସିଷ୍ଟମ୍) ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇ ଏହି ପୃଥିବୀରୁ ଜୀବଜନ୍ତୁ ଲୋପ ପାଇବାର ବିପତ୍ତି ଦେଖା ଦେଉଛି ।

ଗୋଟିଏ ପୁରୁଣା ଲୋକ କଥା । ଥରେ ବନ୍ୟା ହେଲା । ବନ୍ୟାକୁ ବହୁ ଲୋକ ବିପତ୍ତି ବୋଲି ଭାବୁଥିଲେ ସୁଦ୍ଧା ଜଣେ ଜଣେ ଏହାକୁ ଏକ ସୁବର୍ଣ୍ଣ ସୁଯୋଗ ବୋଲି ଅପେକ୍ଷା କରି ରହିଥାନ୍ତି । ବିଶେଷତଃ ତଳମୁଣ୍ଡର ଲୋକେ ଉପର ମୁଣ୍ଡରେ ନଦୀ ବଢି ହେଲେ, ଏଥିରୁ ଫାଇଦା ଉଠାଇ ଥାଆନ୍ତି । ନଦୀ ପାଣିରେ ଉପରମୁଣ୍ଡର ଲୋକଙ୍କର ଯେଉଁ ଧନ ସମ୍ପତ୍ତି ଭାସି ଆସିଥାଏ, ତଳମୁଣ୍ଡର ଲୋକେ ତାକୁ ଉଦ୍ଧାର କରି ନିଜସ୍ୱ କରି ନେଇଥାନ୍ତି । ଏମିତି ଏକ ଅସାମାଜିକ ବୃତ୍ତି ଏକଦା ଜଣୈକ ବାପା-ପୁଅକୁ ଜାବୁଡ଼ି ଧରିଲା । ସେମାନେ ଏମିତି ମନ୍ଦ ଉଦ୍ଦେଶ୍ୟ ନେଇ ବନ୍ୟା ବେଳେ ଗୋଟିଏ ନଦୀ-କୂଳରେ ଅପେକ୍ଷା କରି ବସି ରହିଥିଲେ । ହଠାତ୍ ଦୁହେଁ ଦେଖିଲେ ଯେ ଗୋଟିଏ କମ୍ବଳ ଭାସି ଆସୁଛି । ଆଗକୁ ଶୀତ ଋତୁ ଅଛି । ତେଣୁ ବାପା-ପୁଅଙ୍କ ଲୋଭ ବଢ଼ିଗଲା । ପୁଅ ନଦୀ ଭିତରକୁ ଚଟ୍‌କିନା ଲମ୍ଫମାରି ଡେଇଁ ପଡିଲା ଓ କମ୍ବଳ ଆଡ଼କୁ ପହଁରି ଚାଲିଲା । ଅଳ୍ପ ସମୟ ମଧ୍ୟରେ ପୁଅ କମ୍ବଳଟି ଧରିବା ଦୃଶ୍ୟ ବାପା କୂଳରୁ ଲକ୍ଷ୍ୟ କରି ବେଶ୍ ଖୁସି ହୋଇଗଲା । କିନ୍ତୁ ପୁଅ କମ୍ବଳ ଆଣିବ କ'ଣ ତେଲ ଗଡ଼ଗଡ଼ି ଯାଉଥାଏ, ପୁଅ କୂଳକୁ ବାହୁଡୁ ନ ଥାଏ । ଉକ୍ତ କମ୍ବଳ ସହିତ ତାର ଟଣା ଓଟରା ଅବସ୍ଥା ଲାଗି ରହିଥାଏ । ବାପା ବର୍ତ୍ତମାନ ବ୍ୟସ୍ତ ହେଇପଡ଼ିଲା । ଶେଷରେ ସେ ପୁଅକୁ ଆଉ ଅଧିକ ପରିଶ୍ରମ ନ କରି ଶୀଘ୍ର କୂଳକୁ ଫେରିବା ପାଇଁ ଡାକ ପକାଇଲା । କିନ୍ତୁ ପୁଅ ବାପାର କଥାରେ ଡ଼ିଆ ନ ଦେବା ପରି ଜଣାପଡ଼ୁଥାଏ । କିଛି ସମୟ ପରେ ପୁଅ ରହିରହି ପ୍ରାଣ ଭୟରେ ବାପାକୁ ନଦୀ ଗର୍ଭରୁ ଜଣାଇଲା, "ବାପା, ମୁଁ କମ୍ବଳଟି ଛାଡ଼ି ଦେବା ପାଇଁ ଚେଷ୍ଟା କରି କରି ହାଲିଆ ହୋଇଗଲିଣି ମାତ୍ର କମ୍ବଳ ମତେ ଛାଡ଼ୁ ନାହିଁ । ମୁଁ କରିବି କ'ଣ" ଏଥିରେ ବାପା ପ୍ରମାଦ ଗଣିଲା । ସେ ତତ୍‌କ୍ଷଣାତ୍ ପହଁରି ଯାଇ ଘଟଣାସ୍ଥଳରେ ପହଞ୍ଚି ଦେଖେତ, ସେମାନେ ଯାହାକୁ କମ୍ବଳ ବୋଲି ଭାବୁଥିଲେ ତାହା ପ୍ରକୃତରେ ଥିଲା ଗୋଟିଏ ଜାଠିଆ ଭାଲୁ ।

ପ୍ରସଙ୍ଗ କ୍ରମେ ଏଇ ଲୋକକଥାଟି ଏଠାରେ ଉପସ୍ଥାପନ କରିବା ଉଦ୍ଦେଶ୍ୟ, ବାପପୁଅର ସ୍ୱାର୍ଥପରତା କେବଳ ଜଣାଇବା ନୁହେଁ, ତାହା ଅପେକ୍ଷା ଅଧିକ ସୁଦୂରପ୍ରସାରୀ । ବାପା ପୁଅର ସମାଜବିରୋଧୀ ଅଭିପ୍ରାୟକୁ ଆମେ ଘୃଣା କରୁଁ କାରଣ

ସେମାନେ ସାମାଜିକ ସମ୍ପତ୍ତି ବେଳେ ସ୍ୱୀୟ ସ୍ୱାର୍ଥପରର ବଶବର୍ତ୍ତୀ ହୋଇଛନ୍ତି । ଅବଶ୍ୟ ଆମେ ଖୁସି ଯେ, ସେମାନେ ଏଥିପାଇଁ ଦଣ୍ଡିତ ହୋଇଛନ୍ତି । କିନ୍ତୁ ଦୁର୍ଭାଗ୍ୟର ବିଷୟ ହେଉଛି ଯେ, ଆମେ ଉକ୍ତ ବାପା-ପୁଅଙ୍କ ପରି କେବଳ ସ୍ୱାର୍ଥପର ନୋହୁଁ, ଆମେ ସେମାନଙ୍କ ଠାରୁ ଅଧିକ ବୋକା—ଯେହେତୁ ଆମର ନିଜର ମୂଲ୍ୟବାନ ସମ୍ପତ୍ତି ଲୁଟିଯାଉଥିବା ବେଳେ ଆମେ ଅନ୍ୟମାନଙ୍କର ସାମୂହିକ ଜିନିଷମାନ ଲୁଟିବା ପାଇଁ ଆପ୍ରାଣ ଉଦ୍ୟମ କରୁଛେଁ । ଆମେ ବଡ ଜଙ୍ଗଲରେ ଆମୋଦ ପ୍ରମୋଦ ପାଇଁ ପଶୁ ଶିକାର ସଙ୍ଗେ ସଙ୍ଗେ କାଠ ସରଞ୍ଜାମ ବା ଗୃହ ନିର୍ମାଣ ପାଇଁ ହେଉ କିମ୍ବା ଜଳକାଠ ଖଣା ପାଇଁ ହେଉ, ଅରଣ୍ୟ ସମ୍ପଦକୁ ବିନା ଶୋଚନାରେ ନଷ୍ଟ କରୁଛେଁ । ଏହାଦ୍ୱାରା ଆମେ ନିଜେନିଜର ସ୍ୱାର୍ଥପର ଜଣାପଡେ । ଏହା ପୁଣି ସ୍ପଷ୍ଟ ଯେ, ଆମେ ପ୍ରାକୃତିକ ଭାରସାମ୍ୟ ନଷ୍ଟ କରୁଅଛେଁ, ଯାହା ଫଳରେ ଏହି ପୃଥିବୀରେ ଜୀବଜଗତ ବିପନ୍ନ ହେଉଛି । ପରିଶେଷରେ ଏହା ସମସ୍ତ ପ୍ରକାର ଜୀବଜନ୍ତୁ ସହିତ ଆମ ସଭ୍ୟତାକୁ ମଧ୍ୟ ବିନାଶ କରିଦେବା ଆଶଙ୍କାଜାତ ହେଉଛି । ଏଥିରୁ ପ୍ରମାଣିତ ହୁଏ ଯେ, ଆମେ ପଲ୍ଲୀ ଲୋକକଥାର ବାପା-ପୁଅ ଠାରୁ ଅଧିକ ମାତ୍ରାତ୍ମକ ଭାବେ ସ୍ୱାର୍ଥପର, କାରଣ ଏହି ସ୍ୱାର୍ଥପରତା ମଧ୍ୟରେ ଆମ ଆତ୍ମହତ୍ୟାର ବୀଜ ଲୁକ୍କାୟିତ ଭାବେ ରହିଛି । ତେଣୁ ଉକ୍ତ ଲୋକକଥାର ବାପ-ପୁଅକୁ ଧିକ୍କାର କରିବାର ଅଧିକାର ଆମର ନାହିଁ ।

ଆମ ଅବୋଧତାର ସୁସ୍ପଷ୍ଟ ପ୍ରମାଣ ଆମେ ଭିନ୍ନ ଉଦାହରଣରୁ ଅତି ସହଜରେ ଜାଣିପାରିବା । ଜନବହୁଳ ମାନ୍ଦ୍ରାଜ ସହରରେ ତିନୋଟି ପ୍ରାକୃତିକ ଜଳସ୍ରୋତ ପ୍ରବାହିତ ହେଉଛି । ସେମାନେ ହେଲେ—କୁଅମ୍, ଆଡ଼ାୟର ନଦୀ ଓ ବକିଂହାମ୍ ଝରଣା । ସେମାନଙ୍କ ମଧ୍ୟରେ କୁଅମ୍ ନଦୀ ସହରର ପ୍ରାଣ-ପ୍ରବାହ ବୋଲି କୁହାହେବ । କିନ୍ତୁ ବର୍ତ୍ତମାନ ଏହା ଏକ ନର୍ଦ୍ଦମା-ସ୍ରୋତ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରାୟ ପାଞ୍ଚଶହ ନାଳ ଓ ନର୍ଦ୍ଦମାର ପାଣି ସେହି ନଦୀ ମଧ୍ୟକୁ ପ୍ରତିଦିନ ନିଷ୍କାସିତ କରାଯାଉଛି । ନଦୀର ଉଭୟ ପାର୍ଶ୍ୱରେ ଥିବା ଜନବସତିସମୂହରୁ ଜୀବଜନ୍ତୁଙ୍କର ମଇଳା ନଦୀ ମଧ୍ୟରେ ଅବାଧରେ ମିଶୁଛି । ପୁଣି ବକିଂହାମ୍ ଝରଣା ଦ୍ୱାରା ଅତିରିକ୍ତ ଅଳିଆ ଆବର୍ଜନା କୁଅମ୍ ନଦୀରେ ପ୍ରବାହିତ ହୁଏ ।

କୁଅମ୍‌ର ଉତ୍ପତ୍ତିସ୍ଥଳ ହେଉଛି ଚିଙ୍ଗଲପେଟ୍ ଜିଲ୍ଲାର ସତ୍ରଜନ୍ ଗ୍ରାମ । ଏହା ମାନ୍ଦ୍ରାଜ ନଗରରେ ଭେଷ୍ଟାମ୍ବେଦନ୍ ଠାରେ ପ୍ରବେଶ କରି ଜନବସତି ମଧ୍ୟରେ ଦୀର୍ଘପଥ ପ୍ରବାହିତ ହୋଇଛି ଓ ମାନ୍ଦ୍ରାଜ ଠାରୁ ଛଅ ମାଇଲ ଦୂରରେ ବଙ୍ଗୋପସାଗର ସହିତ ମିଳିତ ହୋଇଛି । ଏହି ସୁଦୀର୍ଘ ନଦୀର ଜଳ ମଣିଷର ପାନୀୟ ପାଇଁ ଉପଯୋଗୀ ହୋଇପାରୁ ନଥିବା ଯୋଗୁଁ ସହରରେ ଉତ୍କଟ ଜଳାଭାବ ଦେଖାଦିଏ—

ଯାହାକି ପାପନାଶକ ଗଙ୍ଗାନଦୀ କୂଳରେ ବସି ତୃଷାର୍ତ୍ତ ହେବା ସହିତ ସମାନ । ଏହି ମଣିଷକୃତ ଅବ୍ୟବସ୍ଥାଗ୍ରସ୍ତ ପରିସ୍ଥିତିର ମୁକାବିଲା କରିବା ପାଇଁ କେନ୍ଦ୍ର ସରକାର ଦୁଇକୋଟି ପଚିଶ ଲକ୍ଷ ଓ ପ୍ରାଦେଶିକ ସରକାର ଏକକୋଟି ଟଙ୍କା ମଞ୍ଜୁର କରିଛନ୍ତି । କିନ୍ତୁ ସବୁଠାରୁ ଉଲ୍ଲେଖନୀୟ ବିଷୟ ହେଉଛି ସେଠାକାର ଜନଜାଗରଣ । ସହରର ଦଶଲକ୍ଷ ବାସିନ୍ଦା ଏହି ଯୋଜନାକୁ ସଫଳ କରିବା ପାଇଁ ପ୍ରକ୍ଷର ଭର ନିଜର ହାର୍ଦ୍ଦିକ ସମର୍ଥନ ଜଣାଇବା ସଙ୍ଗେ ସଙ୍ଗେ ପ୍ରତ୍ୟେକେ ଗୋଟିଏ ଲେଖାଏଁ ଟଙ୍କା ଚାନ୍ଦା ଦେଉଛନ୍ତି । ସେମାନଙ୍କ ଉଦ୍ଦେଶ୍ୟ ହେଉଛି ନଦୀଜଳ ପ୍ରଦୂଷଣର କାରଣମାନ ନିରୂପଣ କରି ତାର ନିରାକରଣ ପାଇଁ ପ୍ରାରମ୍ଭିକ ପଦକ୍ଷେପମାନ ନେବା । ଏହି ପ୍ରକାର ସ୍ୱାର୍ଜିତ ଗୁଣ ଆମ ସମ୍ବିଧାନର ପ୍ରଣେତାମାନେ ଆମଠାରୁ ସବୁବେଳେ ଆଶା କରୁଛନ୍ତି । ସେମାନେ ଜାଣି ସନ୍ତୁଷ୍ଟ ହେଉଥିବେ ଯେ, ଯଦିଓ ଆଜି ଦସ୍ତଖତ-ସମ୍ବନ୍ଧ ରାଜନୈତିକ ବାଦ-ବିସମ୍ବାଦ ଓ ଦଳ-ବଦଳର ଏକ ଜନପ୍ରିୟ ଅସ୍ତ୍ର ହୋଇଥିବାବେଳେ ମାନ୍ଦ୍ରାଜର ଏହି ବାସିନ୍ଦାମାନେ ପ୍ରକୃତ ଓ ପରିବେଶକୁ ନିର୍ମଳ ରଖିବା ପାଇଁ ତାହା ବ୍ୟବହାର କରିଛନ୍ତି ।

ଅବାଞ୍ଛିତ ପ୍ରକୃତିକୁ ବିଭିନ୍ନ ପ୍ରକାର ଅପରିଣାମଦର୍ଶୀ କାର୍ଯ୍ୟକଳାପ ଦ୍ୱାରା ଦୂଷିତ କରିବାର ବିନାଶକାରୀ ପ୍ରବୃତ୍ତିକୁ ପ୍ରତିରୋଧ କରିବା ପାଇଁ ଆମ ଦେଶର ସମ୍ବିଧାନ ପ୍ରଣେତାମାନେ ବହୁପୂର୍ବରୁ ଲିପିବଦ୍ଧ କରିଛନ୍ତି, ପରିବେଶ ସଂରକ୍ଷଣ ଓ ଏହାର ଉନ୍ନତି ଏବଂ ଜଙ୍ଗଲ ଓ ବନ୍ୟଜନ୍ତୁର ସୁରକ୍ଷା ରାଷ୍ଟ୍ରର କର୍ତ୍ତବ୍ୟ । (ଧାରା-୪୮) ପ୍ରାକୃତିକ ପରିବେଶ ଯଥା—ଜଙ୍ଗଲ, ଜମି, ନଦ-ନଦୀ, ବନ୍ୟଜନ୍ତୁର ସୁରକ୍ଷା ତଥା ଉନ୍ନତି ଏବଂ ଜୀବଜଗତ ପ୍ରତି କରୁଣା ପ୍ରଦର୍ଶନ ପ୍ରତ୍ୟେକ ଭାରତୀୟ ନାଗରିକର କର୍ତ୍ତବ୍ୟ (ଧାରା-୫୧ କ) । ପରିବେଶ ସଙ୍କଟ ବିକଶିତ ପରି ବିକାଶଶୀଳ ରାଷ୍ଟ୍ରରେ ଉତ୍କଟ ରୂପ ବର୍ତ୍ତମାନ ନେଇଛି । କେତେ ଶିଳ୍ପୋନ୍ନତ ପାଶ୍ଚାତ୍ୟ ରାଷ୍ଟ୍ରସମୂହରେ ଏହା କେତେ ଦୂର ଭୟଙ୍କର ହୋଇପାରେ, ତାହା ସହଜରେ ଅନୁମେୟ । ଅବଶ୍ୟ ସେହି ବିକାଶିତ ରାଷ୍ଟ୍ରମାନଙ୍କରେ ପରିବେଶ—ସଚେତନ ସମାଜ ହୋଇ ରହିଥିବାରୁ ପରିସ୍ଥିତି ଅଣାୟତ୍ତ ହୋଇ ନାହିଁ । ତଥାପି ଏହା ଯେ ଏକ ଜଟିଳ ବିଶ୍ୱ-ସମସ୍ୟା ସେଥିରେ କୌଣସି ସନ୍ଦେହ ନାହିଁ । ପୁଣି ପରିବେଶ-ସଙ୍କଟ କୌଣସି ରାଜ୍ୟର ରାଜନୈତିକ କିମ୍ବା ଭୌଗୋଳିକ ସୀମା ସରହଦ ମଧ୍ୟରେ ଆବଦ୍ଧ ନ ହୋଇ ବିଶ୍ୱବ୍ୟାପୀ ସଂକ୍ରମିତ ହେବା ଆଶଙ୍କା ଥିବା ଯୋଗୁଁ ଏହି ସମସ୍ୟାର ସମାଧାନ ପାଇଁ ବିଶ୍ୱସ୍ତରରେ ପ୍ରତିକାର ନେବା ଯଥାର୍ଥ ହେବ । ଏଥିପ୍ରତି ଦୃଷ୍ଟି ରଖି ୧୯୮୫ ମସିହା ଜୁନ୍ ୫ ତାରିଖ ଦିନ ବିଶ୍ୱପରିବେଶ ଦିବସ ପୃଥିବୀର ସର୍ବତ୍ର ପାଳିତ ହୋଇଥିଲା । ଆମ ରାଜ୍ୟର ମୁଖ୍ୟମନ୍ତ୍ରୀ ସେହି ପବିତ୍ର ଦିବସରେ ପରିବେଶର ସୁରକ୍ଷା ଓ ସଂରକ୍ଷଣ ନିମିତ୍ତ 'ଉଲ୍ଲେଖନୀୟ କାର୍ଯ୍ୟ

ପଠାଣେ ରାଜ୍ୟର ପ୍ରତ୍ୟେକ ଜିଲ୍ଲାରେ ସର୍ବଶ୍ରେଷ୍ଠ ବ୍ୟକ୍ତି ଓ ସର୍ବୋତ୍କୃଷ୍ଟ ସେଚ୍ଛାସେବୀ ଅନୁଷ୍ଠାନ ପାଇଁ ପ୍ରକୃତି ମିତ୍ର ପୁରସ୍କାର ପ୍ରଦାନ କରିବା ବିଷୟ ଘୋଷଣା କରିଛନ୍ତି। ସବୁଜ-ବାହିନୀ ତଥା ହରିତ୍-ବାହିନୀ ଗଠନ କରି ପରିବେଶର ସୁରକ୍ଷା ପାଇଁ ଯୋଜନା ପ୍ରସ୍ତୁତ କରାଯାଉଛି। ଚିପ୍‌କୋ ଆନ୍ଦୋଳନ ହିମାଳୟର ବକ୍ଷରୁ ଆରମ୍ଭ ହୋଇ ବାଲ୍‌କୋ-ହଟାଓ (ଓଡ଼ିଶା) ଓ ସୁଦୂର କର୍ଣ୍ଣାଟକରେ ଗଣଆନ୍ଦୋଳନରେ ରୂପାନ୍ତରିତ ହୋଇଛି।

ବୃଥମ୍ ନଦୀ—ଯୋଜନା ହେଉ, କିମ୍ବା ପ୍ରକୃତି-ମିତ୍ର ପୁରସ୍କାର ବା ସବୁଜ ବାହିନୀ ଗଠନ ହେଉ, ଏଭଳି ପ୍ରକାର ବିଭିନ୍ନ ଯୋଜନାରୁ ସ୍ପଷ୍ଟ ହେଉଛି ଯେ, ପ୍ରକୃତିର ସୁରକ୍ଷା ପାଇଁ ବ୍ୟକ୍ତିଗତ ପ୍ରଚେଷ୍ଟା ସହିତ ସାମୂହିକ ଉଦ୍ୟମ ଆବଶ୍ୟକ। ତେଣୁ ସମବାୟ ସଂସ୍ଥାମାନ ଏହି ଦାୟିତ୍ୱ ଗ୍ରହଣ କରିବା ପାଇଁ ଉପଯୁକ୍ତ ସମୟ ଆସି ପହଞ୍ଚିଛି। ଏହି ଦୃଷ୍ଟିରୁ ପ୍ରକୃତି-କ୍ଲବ ଗଠନ କରିବା ପାଇଁ ସରକାରୀ ସ୍ତରରେ ପ୍ରାଧାନ୍ୟ ଦିଆଯାଉଛି। ଏହି କ୍ଲବମାନଙ୍କର ସୁଚିନ୍ତିତ କାର୍ଯ୍ୟକ୍ରମ ଲକ୍ଷ୍ୟରେ ଉଲ୍ଲେଖ କରାଗଲା।

୧। ଆକାଶ, ସୂର୍ଯ୍ୟ, ବର୍ଷା ଓ ଗ୍ରହମାନଙ୍କ ବିଷୟରେ ସରଳ ଅଧ୍ୟୟନ।

୨। ସ୍ଥାନୀୟ ପକ୍ଷୀ, ସେମାନଙ୍କର ଜୀବନୀ ଏବଂ ଭୋଜନ ଆଚରଣର ଏକ ସରଳ ପର୍ଯ୍ୟବେକ୍ଷଣ।

୩। ପୋଖରୀ, ଗାଡ଼ିଆ, ନଦୀ, କେନାଲ ଇତ୍ୟାଦିର ଚତୁଃପାର୍ଶ୍ୱରେ ଥିବା ଜୀବ ଜଗତରେ ଏକ ସରଳ ଅଧ୍ୟୟନ।

୪। ବିଦ୍ୟାଳୟ ହତା, ଉଦ୍ୟାନ ଇତ୍ୟାଦିରେ ଥିବା କୀଟମାନଙ୍କର ଜୀବନର ଏକ ସରଳ ପର୍ଯ୍ୟବେକ୍ଷଣ।

୫। ପ୍ରକୃତି କ୍ଲବର ସଦସ୍ୟମାନଙ୍କୁ ସେମାନଙ୍କ ସ୍କୁଲ ହତାମଧ୍ୟରେ ବୃକ୍ଷ ଗଛ ଉତ୍ତୋଳନ କରିବାକୁ ଏବଂ ସେମାନଙ୍କ ଯତ୍ନ ନେବା ପାଇଁ ପ୍ରୋତ୍ସାହନ।

୬। ସଦସ୍ୟମାନଙ୍କୁ ମୃତ୍ତିକା, ବାଲି, ପଥର କିମ୍ବା ପ୍ରକୃତି ମଧ୍ୟରେ ଥିବା ଯେକୌଣସି ଜିନିଷର ନମୁନା ସଂଗ୍ରହ କରିବାକୁ ପ୍ରୋତ୍ସାହିତ କରାଯାଇପାରେ, ଯାହାକି ସେମାନଙ୍କ କୌତୂହଳ ଆକର୍ଷଣ ଓ ବୃଦ୍ଧି କରିବ।

୭ । ପ୍ରକୃତି କ୍ଲବର ସଦସ୍ୟମାନେ ନିକଟସ୍ଥ ନଦୀ, ସମୁଦ୍ର କୂଳ, ହ୍ରଦ, ପର୍ବତ, ପାହାଡ଼, ଉଦ୍ୟାନ, ପ୍ରମୋଦ ବନ, ଜଙ୍ଗଲ ଇତ୍ୟାଦିର ଭୌଗୋଳିକ ଐତିହାସିକ ବିଷୟ ଅଧ୍ୟୟନ ଓ ସୂଚୀକରଣ କରିବା ନିମନ୍ତେ କ୍ଷେତ୍ରଭ୍ରମଣ ସଙ୍ଗଠନ କରିପାରନ୍ତି ।

୮ । ପରିବେଶ ସମ୍ପର୍କୀୟ କ୍ରୀଡ଼ା ପ୍ରତିଯୋଗିତା, ନାଟକ, ଏକାଙ୍କିକା ଆୟୋଜନ ।

୯ । ପ୍ରକୃତି-ସୁରକ୍ଷା ସମ୍ପର୍କୀୟ ପର୍ଯ୍ୟବେକ୍ଷଣ, ମୂଲ୍ୟାଙ୍କନ, ତଥ୍ୟାବଳୀ ପ୍ରକାଶନ ଓ ଅଧ୍ୟୟନ ।

୧୦ । ନଳକୂପ ଓ କୂପ ନିକଟରେ ପାଣିଶୋଷା ଗାତ ନିର୍ମାଣ, କମ୍ପୋଷ୍ଟ ଓ ଆବର୍ଜନା ପାଇଁ ଗାତ ଖନନ, ପାଇଖାନାର ଲୋକପ୍ରିୟତା ଓ ନିର୍ମାଣ ବୃଦ୍ଧି ଦିଗରେ ଚେଷ୍ଟା ।

୧୧ । ପ୍ରାକୃତିକ ସମ୍ପଦ ଧ୍ୱଂସ ସାଧନ କରୁଥିବା ସମସ୍ତ କ୍ରିୟାକଳାପ ଉପରେ ପ୍ରତିବନ୍ଧକ ସୃଷ୍ଟି କରିବା ଲାଗି ଫଳପ୍ରଦ ପ୍ରସ୍ତାବ ଦେବା; ଲୋକଚେତନା ଆଣିବା ପାଇଁ ସମସ୍ତ କାରଣମାନ ସର୍ବସ୍ତରରେ ଜାଣିବା; ପ୍ରଦୂଷଣର ପ୍ରଭାବ, ମୃତ୍ତିକା ଓ ଜଳକୁ ପରିସ୍ଥଳଜ ପ୍ରାଣୀ ଓ ଉଦ୍ଭିଦ ଜୀବନ ପ୍ରତି ବିପଦ ବିଷୟରେ ଶିକ୍ଷା ଚଳାଇବା ଏବଂ ଦାୟିତ୍ୱସମ୍ପନ୍ନ ଭୂମିକା ଗ୍ରହଣ କରିବା ।

୧୨ । ସାଧାରଣ ଜାତୀୟ ସମିତିଗୁଡ଼ିକ ବାର୍ଷିକ ଉତ୍ସବ ପାଳନ କଲାବେଳେ ପ୍ରବନ୍ଧ, ବିତର୍କ, ଚିତ୍ରାଙ୍କନ ପଟର ନକ୍ସା, ସ୍ଲୋଗାନ, ଗୀତ, ନାଟିକା, ନାଟକ, ଔଷଧଶାଳା ଇତ୍ୟାଦି ମାଧ୍ୟମରେ ଜୀବସଂଗ୍ରହ, ବୃକ୍ଷମାନଙ୍କ ଚାରା ଓ ଫୁଲ-ଫଳ ଏବଂ ପକ୍ଷୀମାନଙ୍କ ବିଷୟରେ ବିଭିନ୍ନ ପ୍ରତିଯୋଗିତା ଅନୁଷ୍ଠିତ କରାଇ ପୁରସ୍କାର ଓ ପ୍ରମାଣପତ୍ର ପ୍ରଦାନ ।

ବର୍ତ୍ତମାନ ପାଇଁ ପ୍ରକୃତି କ୍ଲବଗୁଡ଼ିକ ବିଭିନ୍ନ ଶିକ୍ଷା ଅନୁଷ୍ଠାନ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ମୂଳତଃ ସୀମିତ ହୋଇ ରହିଛି । ଲକ୍ଷ୍ୟ ହେଉଛି ଯେ, ଶିକ୍ଷାନୁଷ୍ଠାନମାନ ଭବିଷ୍ୟତ ନାଗରିକଙ୍କୁ ମୁଖ୍ୟତଃ ଗଠନ କରୁଥିବା ଯୋଗୁଁ, ସେମାନେ ଛାତ୍ରମାନଙ୍କୁ ସାଧାରଣ କ୍ଷେତ୍ରରେ ପ୍ରବେଶ କରିବା ପୂର୍ବରୁ ପରିବେଶ-ଶିକ୍ଷା ଦେଇପାରିବେ ।

ଜନ୍ମୁ ଏହି ତତ୍ତ୍ୱମାନ ବିକାଶପ୍ରାପ୍ତ ହୋଇ ସର୍ବସାଧାରଣଙ୍କୁ ପ୍ରଭାବିତ କରିବା ଅପରିହାର୍ଯ୍ୟ । ଏହାର ଉତ୍ତରୋତ୍ତର ଓ ସର୍ବତ୍ର ବ୍ୟାପ୍ତି ଉପରେ ମାନବ-ସଭ୍ୟତାର ଭବିଷ୍ୟତ ନିର୍ଭର କରୁଛି । ଏହି ପ୍ରସଙ୍ଗରେ ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟା ଇନ୍ଦିରାଗାନ୍ଧୀ ୧୯୭୨ ମସିହା ଜୁନ୍ ଚଉଦ ତାରିଖରେ ଜାତିସଂଘ ଆନୁକୂଲ୍ୟରେ, ଷ୍ଟକ୍‌ହୋମ୍ ଠାରେ ଅନୁଷ୍ଠିତ ପୃଥିବୀର ଅଧିବେଶନରେ ଯେଉଁ ଭାଷଣ ଦେଇଥିଲେ, ତାହା ପ୍ରଣିଧାନଯୋଗ୍ୟ ।

"ଏହା ମୋର ଅନୁଭୂତ ଯେ, ଯେଉଁମାନେ ପ୍ରକୃତି ପ୍ରତି ବିମୁଖ, ସେମାନେ ମାନବ ଜାତି ପ୍ରତି ବୀତସ୍ପୃହ ଏବଂ ନିଜେ ନିଜର ଶତ୍ରୁ । ଆଧୁନିକ ମଣିଷ ପ୍ରକୃତି ଓ ଜୀବନ ପଦ୍ଧତି ଏକ ଅଭଙ୍ଗ ଯୋଗସୂତ୍ର ପୁନର୍ସ୍ଥାପନ କରିବା ବିଧେୟ । ସେ ବର୍ଦ୍ଧିଷ୍ଣୁ ପଦାର୍ଥର ଶକ୍ତିକୁ ଉଜ୍ଜୀବିତ କରିବା ପାଇଁ ଶିକ୍ଷା କରୁ ଏବଂ ଆଦିମ କାଳର ମୁନିଋଷିଙ୍କ ପରି ସ୍ୱୀକାର କରୁ ଯେ, ପୃଥିବୀ ଓ ବାୟୁମଣ୍ଡଳରୁ ସେ ଯେତିକ ନେଇ ପାରିବ, ସେତିକ ସେ ପୁଣି ଫେରାଇ ଦେବ । ମୁନିଋଷିମାନେ ପୃଥିବୀ ପ୍ରତି ଯେଉଁ ଶ୍ଲୋକ ଉଚ୍ଚାରଣ କରିଥିଲେ, ତାହା ମୁଁ ଉଦ୍ଧାର କରୁଛି : "What of Thee I dig out, let that quickly grow over· Let me not hit thy vitals of thy heart."

ପରିସ୍ଥିତିର ଗୁରୁତ୍ୱ ଦୃଷ୍ଟିରୁ ସ୍ୱାଧୀନତାପ୍ରାପ୍ତି ପୂର୍ବରୁ ଆମ ଦେଶର କଂଗ୍ରେସ ସଙ୍ଗଠନ ଯେପରି ଗୋଟିଏ କ୍ଷୁଦ୍ରସ୍ତରରୁ ଆରମ୍ଭ ହୋଇ ଶେଷରେ ବିଶାଳ ଜନ-ଆନ୍ଦୋଳନରେ ପରିଣତ ହୋଇଥିଲା, ପ୍ରକୃତି-କ୍ଷୁବ ସେମିତି ପ୍ରକୃତି-ସପବାଦ୍ୟ ଆନ୍ଦୋଳନରେ ରୂପାନ୍ତରିତ ହେବ ବୋଲି ଆଶା କରାଯାଏ ।



# ତ୍ରୁଟି ରହିଥିବା ଆମ ସାଥି

ବିଶ୍ୱ ବ୍ରହ୍ମାଣ୍ଡର କେତୋଟି ଗ୍ରହ ଉପଗ୍ରହରେ ସଭ୍ୟ, ଉନ୍ନତ ଜୀବନ ରହିଥିବା ସମ୍ଭବ ? ଏହାର ଉତ୍ତର ଏକ ଗାଣିତିକ ସୂତ୍ରଦ୍ୱାରା କର୍ଣ୍ଣେଲ ବିଶ୍ୱବିଦ୍ୟାଳୟର ଜ୍ୟୋତିଃ ବିଜ୍ଞାନୀ ଫ୍ରାଙ୍କ୍ ଡ୍ରେକ୍ ପ୍ରକାଶ କରିଛନ୍ତି । ଏହି ସୂତ୍ରକୁ ଅନ୍ତିମ ରୂପ ଦେବା ପୂର୍ବରୁ ସେ ଯେଉଁ କେତୋଟି ବିଷୟ ପ୍ରତି ଦୃଷ୍ଟି ଦେଇଥିଲେ—ତାହା ହେଉଛି (୧) ପ୍ରତି ସେକେଣ୍ଡରେ ଆକାଶଗଙ୍ଗା ବା ଗ୍ୟାଲେକ୍ସିରେ ସୃଷ୍ଟି ହେଉଥିବା ନକ୍ଷତ୍ରର ଭଗ୍ନାଂଶ (୨) ଏହି ନକ୍ଷତ୍ରମାନଙ୍କ ମଧ୍ୟରୁ ଯେଉଁମାନେ ଗ୍ରହମଣ୍ଡଳ ଧାରଣ କରିଛନ୍ତି, ସେମାନଙ୍କ ସଂଖ୍ୟା, (୩) ଉପରୋକ୍ତ ଗ୍ରହମାନଙ୍କ ମଧ୍ୟରୁ ଯେଉଁଥିରେ ଜୀବନ ଥିବା ସମ୍ଭବ, ସେମାନଙ୍କ ସଂଖ୍ୟା (୪) ଉକ୍ତ ଗ୍ରହମାନଙ୍କ ମଧ୍ୟରୁ ଯେଉଁଥିରେ ପ୍ରକୃତରେ ଜୀବ ସୃଷ୍ଟି ହୋଇଛି ଓ ଜୀବ ବିବର୍ତ୍ତନ ପ୍ରକ୍ରିୟା ଚାଲିଛି, ସେମାନଙ୍କ ସଂଖ୍ୟା (୫) ତନ୍ମଧ୍ୟରୁ ଯେଉଁ କେତୋଟିରେ ଉନ୍ନତ ଜୀବନ ଦେଖା ଦେଇଛି, ସେମାନଙ୍କ ସଂଖ୍ୟା (୬) ଉକ୍ତ ଗ୍ରହମାନଙ୍କ ମଧ୍ୟରୁ ଯେଉଁ କେତୋଟିରେ ପ୍ରଯୁକ୍ତି ବିଦ୍ୟା ପୃଥ୍ୱୀ କିମ୍ବା ତା'ଠାରୁ ଅଧିକ ଉନ୍ନତ ସ୍ତରରେ ପହଞ୍ଚିଛି, ସେମାନଙ୍କ ସଂଖ୍ୟା, ଓ ପରିଶେଷରେ (୭) ଶିଳ୍ପୋନ୍ନତ ସମାଜର ହାରାହାରି ଆୟୁଷ ।

ଉପରୋକ୍ତ ସାତୋଟି ଉପାଦାନ ଡ୍ରେକ୍‌ଙ୍କ ସୂତ୍ରର ମୂଳ ଆଧାର । ବର୍ତ୍ତମାନ ଜ୍ୟୋତିଃଶାସ୍ତ୍ର ତଥା ପ୍ରାଣୀ ଓ ଉଦ୍ଭିଦ ବିଜ୍ଞାନ ଏପରି ଏକ ଉନ୍ନତ ତଥା ବିଶ୍ୱାସଯୋଗ୍ୟ ସ୍ତରରେ ପହଞ୍ଚିଲାଣି ଯେ, ଆମେ ପ୍ରଥମ ଛଅଟି ଉପାଦାନ ସଠିକ୍ ଭାବେ ନିରୂପଣ କରିପାରିବା । ସପ୍ତମ ଉପାଦାନ ଅର୍ଥାତ୍ ଶିଳ୍ପୋନ୍ନତ ସଭ୍ୟତାର ହାରାହାରି ଆୟୁଷ ସ୍ଥିର କରିବା ଏକ ଦୁରୂହ ବ୍ୟାପାର । ତଥାପି ତା'ର ଏକ ଅନୁମାନିକ ମୂଲ୍ୟ ଗ୍ରହଣ କରିବାକୁ ହେବ ।

ବିଖ୍ୟାତ ଜ୍ୟୋତିର୍ବିଜ୍ଞାନୀ କାର୍ଲ ସାଗାନ ବାସ୍ତବତା ପ୍ରତି ଦୃଷ୍ଟି ରଖି ଡ୍ରେକ୍‌ଙ୍କ ଗାଣିତିକ ସୂତ୍ରର ବିଭିନ୍ନ ଉପାଦାନମାନଙ୍କ ପାଇଁ ମୂଲ୍ୟ ନିର୍ଦ୍ଧାର୍ଯ୍ୟ କଲେ ଓ ହିସାବ କରି ଜାଣିପାରିଲେ ଯେ, ଆମ ନିହାରିକାରେ ଏକ ନିୟୁତ ଉନ୍ନତ ସଭ୍ୟତା ଥିବା ସମ୍ଭବ । ପୁଣି ସଭ୍ୟମାନଙ୍କ ରହୁଥିବା ନିକଟସ୍ଥ ଗ୍ରହର ଦୂରତ୍ୱ ପୃଥିବୀଠାରୁ ଅନ୍ତତଃ କେତେଶହ ଆଲୋକ ବର୍ଷ ହେବ ବୋଲି ସେ ଦର୍ଶାଇଥିଲେ । ଏହି ଦୂରତ୍ୱ ଏକହଜାର ଆଲୋକ ବର୍ଷ ହୋଇପାରେ ବୋଲି ଡ୍ରେକ୍ ମତ ଦେଇଛନ୍ତି । ତେଣୁ ବହିର୍ଜଗତରେ ଉନ୍ନତ ଜୀବର ସନ୍ଧାନ ପାଇଁ ଆମକୁ ଏହି ଦୂରତ୍ୱ ଅତିକ୍ରମ କରିବାକୁ ପଡ଼ିବ । ଏହି ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ତିନୋଟି ଉପାୟ ବର୍ତ୍ତମାନ ଅନୁଦ୍ଧୃତ ହେଉଛି । ମହାକାଶକୁ ମଣିଷ ଥିବା କିମ୍ବା ନ ଥିବା ଯାନ ପ୍ରେରଣ, ବେତାର ତରଙ୍ଗ, ଲେସର୍ ରଶ୍ମି ।

ଉପରୋକ୍ତ ପଦ୍ଧତିମାନ ଯାହା ହେଉନା କାହିଁକି, ଶହଶହ ଆଲୋକ ବର୍ଷ ଅତିକ୍ରମ କରିବାକୁ ହେଲେ ଆମକୁ ଅଲୋକ-ଗତିରେ ଯିବାକୁ ପଡ଼ିବ; ତେଣୁ ମହାକାଶ ଯାନକୁ ମଧ୍ୟ ଏହି ଉଚ୍ଚତମ ଗତିରେ ଅଗ୍ରସର ହେବାକୁ ପଡ଼ିବ— ଯାହାକି ବାସ୍ତବ କ୍ଷେତ୍ରରେ କେବଳ ବ୍ୟୟସାପେକ୍ଷ ନୁହେଁ, ଆଇନ୍‌ଷ୍ଟାଇନ୍‌ଙ୍କ ସ୍ୱତନ୍ତ୍ର ଆପେକ୍ଷିକ ତତ୍ତ୍ୱ ଅନୁସାରେ ଅସମ୍ଭବ ମଧ୍ୟ ।

ଏହି ପ୍ରସଙ୍ଗରେ ଉଡ଼ନ୍ତା ଥାଳିଆ ବିଷୟ ଉପସ୍ଥାପିତ କରାଯାଇପାରେ । କେତେକ ଲୋକ ବିଶ୍ୱାସ କରନ୍ତି; ବହିର୍ଜଗତରେ ଥିବା ସଭ୍ୟ ଜୀବ ପୃଥିବୀ ସହିତ ସମ୍ପର୍କ ସ୍ଥାପନ କରିବା ପାଇଁ ମହାକାଶଯାନ ଅରକ୍ଷୁଅର ପଠାଉଛି, ଯାହାକି ଦେଖିବାକୁ ସାଧାରଣତଃ ଗୋଲାକାର ଏବଂ ଉଡ଼ନ୍ତା ଥାଳିଆ ନାମରେ ପ୍ରସିଦ୍ଧ । କିନ୍ତୁ ସେଟି (ଏସ୍.ଇ.ଟି. ଆଇ ଅର୍ଥାତ୍ ବହିର୍ଜଗତରେ ବୁଦ୍ଧିର ଅନୁସନ୍ଧାନକାରୀ) ବୈଜ୍ଞାନିକମାନେ ଉଡ଼ନ୍ତା ଥାଳିଆକୁ ଗ୍ରହଣ କରିବାକୁ ନାରାଜ । ସେମାନେ ମତ ଦିଅନ୍ତି ଯେ, ଏହା ଆମ ମତିଭ୍ରମ ଯୋଗୁଁ ହୋଇପାରେ କିମ୍ବା ପୃଥିବୀର ଜଳବାୟୁରେ ଘଟୁଥିବା କୌଣସି ପ୍ରାକୃତିକ ବ୍ୟତିକ୍ରମ ବା ସ୍ଖଳନ ଯୋଗୁଁ ପରିଦୃଷ୍ଟ ହୋଇପାରେ ।

ବହିରାକାଶରେ ଜୀବର ଅନୁସନ୍ଧାନ ପାଇଁ ମହାକାଶଯାନ ପ୍ରେରଣ ଅବାସ୍ତବ ବୋଲି ମନେହେଉଥିବା ଯୋଗୁଁ ଅନ୍ୟ ଉପାୟମାନ ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ତନ୍ମଧ୍ୟରେ ବେତାର ତରଙ୍ଗ ଅନ୍ତର୍ଭୁକ୍ତ । ଏହି ପଦ୍ଧତିରେ ରେଡ଼ିଓ-ଟେଲିସ୍କୋପରୁ ବେତାର ତରଙ୍ଗ ମହାକାଶକୁ ପଠାଇ ତା'ର ପ୍ରତିକ୍ରିୟା ଅନୁଧ୍ୟାନ କରାଯାଏ । ବହୁଦିଗରୁ ଏହା ଏକ ସୁବିଧାଜନକ ଉପାୟ । ପୁଣି ଏହା ଏକ ବ୍ୟୟବହୁଳ

କାର୍ଯ୍ୟକ୍ଷମ ହୋଇ ନ ଥିବା ଯୋଗୁଁ; ବର୍ତ୍ତମାନ ସବୁ ଗ୍ରହରେ ବେଶ୍ ଜନାଦୃତ ହୋଇପାରନ୍ତି । ବୈଜ୍ଞାନିକମାନେ ହିସାବ ଦ୍ୱାରା ଜାଣିପାରିଛନ୍ତି ଯେ, ଦଶ ସେଣ୍ଟିମିଟରରୁ ଆଠ ସେଣ୍ଟିମିଟର ଦୈର୍ଘ୍ୟ ବିଶିଷ୍ଟ ତରଙ୍ଗ ରଡ ରେଡ଼ିଓ ଟେଲିସ୍କୋପର୍ ପଠାଯାଏ, ତା'ହେଲେ କମ୍ ଖର୍ଚ୍ଚରେ କାର୍ଯ୍ୟ ହାସଲ କରିହେବ । ଆମେ ଆଶା କରୁଁ ଯେ, ବହିର୍ଜଗତର ଜୀବମାନେ ବୁଦ୍ଧିମାନ୍ ହୋଇଥିବା ଯୋଗୁଁ,



ସେମାନେ ଆମପରି କାର୍ଯ୍ୟ ହାସଲ କରିବା ବେଳେ ଆର୍ଥିକ ଦିଗ ପ୍ରତି ଅବଶ୍ୟ ଦୃଷ୍ଟି ଦେଉଥିବେ ଏବଂ କମ୍ ଖର୍ଚ୍ଚରେ ହେବ ବୋଲି ଦଶରୁ ଆଠ ସେ.ମି: ଦୈର୍ଘ୍ୟର ରେଡ଼ିଓ ତରଙ୍ଗ ଅବଶ୍ୟ ବ୍ୟବହାର କରୁଥିବେ । ତେଣୁ ସେମାନଙ୍କ ସହିତ ସଂଯୋଗ ସ୍ଥାପନ କରିବାକୁ ହେଲେ ଆମକୁ ଏହି ତରଙ୍ଗ-ଦୈର୍ଘ୍ୟ ବ୍ୟବହାର କରିବାକୁ ପଡ଼ିବ । ସୌଭାଗ୍ୟର ବିଷୟ ହେଉଛି ଯେ, ବର୍ତ୍ତମାନ ପୃଥିବୀର ବହୁ ରେଡ଼ିଓ ଟେଲିସ୍କୋପ ଏହି ତରଙ୍ଗ-ଦୈର୍ଘ୍ୟରେ କାର୍ଯ୍ୟ କରୁଥିବା ଯୋଗୁଁ ବହିର୍ଜଗତର ସଭ୍ୟମାନବମାନେ ଯେଉଁ ସିଗ୍ନାଲ୍ ପଠାଇବେ, ତାହା ଏଠାରେ ଧରିବା ସହଜ ହେବ । ଫଳରେ ସେମାନଙ୍କ ସହିତ ସଂଯୋଗ ସ୍ଥାପନ କରିବା ପାଇଁ ଆମେ ବେଶ୍ ଆଶାବାଦୀ ହୋଇପାରିବା ।

ଏଠାରେ ଉଲ୍ଲେଖ କରିବା ଉଚିତ୍ ହେବ ଯେ, ରେଡ଼ିଓ-ତରଙ୍ଗ ଅପେକ୍ଷା ଲେଜର୍ ରଶ୍ମିର ପ୍ରୟୋଗ ଅଧିକ ଫଳପ୍ରଦ ହୋଇଥିଲେ ସୁଦ୍ଧା, ଏହି ବିଷୟରେ ଆମ ପ୍ରଯୁକ୍ତି ବିଦ୍ୟା ଆଶାନୁରୂପଭାବେ ଉନ୍ନତ ହୋଇ ନ ଥିବା ଯୋଗୁ ବର୍ତ୍ତମାନ ପରିସ୍ଥିତିରେ ଏହାର ସମ୍ପୂର୍ଣ୍ଣ ସୁଯୋଗ ନେଇ ହେଉ ନାହିଁ ।

ଧରିନିଅ ଯେ, ଆମେ ବହିର୍ଜଗତର ସଭ୍ୟମାନଙ୍କ ସହିତ ରେଡ଼ିଓ ତରଙ୍ଗଦ୍ୱାରା ସମ୍ପର୍କ ସ୍ଥାପନ କରିପାରିଲେ । ତାହା ହେଲେ ଆମେ 'କ'ଣ ତା' ସହିତ କଥାବାର୍ତ୍ତା କରିପାରିବା ? ଏଥିପାଇଁ ଉଭୟେ ବୁଝିପାରିବାପରି ଏକ ଭାଷା ବା ମାଧ୍ୟମ ଆବଶ୍ୟକ । ତେବେ ଏହି ଭାଷା କ'ଣ ହୋଇପାରେ ? ପ୍ରଥମତଃ ଆମେ ବ୍ୟବହାର କରୁଥିବା ଭାଷା ସେମାନଙ୍କୁ ଅଜଣା ଥିବ । ଏପରିକି ଆନ୍ତର୍ଜାତିକ ସ୍ତରରେ ବହୁଳଭାବେ ପ୍ରଚଳିତ ଇଂରେଜୀ ଭାଷାର ବିନ୍ଦୁବିସର୍ଗ ମଧ୍ୟ ସେମାନେ ଜାଣି ନ ଥିବେ । ସେ ଯାହାହେଉ, ଅନ୍ୟ ଏକ ବିଷୟ ବିଚାର କରାଯାଇପାରେ । ଆମେ ଭାବିନେବା ଅସଙ୍ଗତ ହେବ ଯେ, ପଦାର୍ଥବିଜ୍ଞାନ, ରସାୟନ ବିଜ୍ଞାନ, ଉଦ୍ଭିଦ ଓ ପ୍ରାଣୀମାନଙ୍କର ଯେଉଁ ନିୟମମାନ ଆମେ ଜାଣିଛେ, ତାହା ସେମାନେ ଅନୁସରଣ କରୁଥିବେ । କାରଣ ଏପରି ବି ହୋଇପାରେ ଯେ, ପ୍ରକୃତର ବୈଜ୍ଞାନିକ ନିୟମମାନ ସାର୍ବଜନୀନ ନୁହେଁ ଏବଂ ବିଭିନ୍ନ ଗ୍ରହରେ ସେଠାକାର ପରିସ୍ଥିତି ଅନୁସାରେ ତାହା ଭିନ୍ନ ଭିନ୍ନ ରୂପ ନେବା ସମ୍ଭବପର । ତେଣୁ ଭାଷା ସମସ୍ୟାର ସମାଧାନ ପାଇଁ ବିଜ୍ଞାନର ନିୟମମାନଙ୍କୁ ମଧ୍ୟ ବିକଳ୍ପ ପନ୍ଥା ଭାବେ ବ୍ୟବହାର କରିହେବ ନାହିଁ । ଏଥିପାଇଁ ଆମକୁ ଅନ୍ୟ ବିକଳ୍ପ ପନ୍ଥା ଅବଲମ୍ବନ କରିବାକୁ ପଡ଼ିବ ।

ଏହି ପ୍ରସଙ୍ଗରେ କୃତ୍ରିମ ବୁଦ୍ଧିମତ୍ତା ବିଷୟରେ ପାରଦର୍ଶିତା ଲାଭ କରିଥିବା ବୈଜ୍ଞାନିକ ମରଭିନ୍ ମିନସ୍କିଙ୍କର ଏକ ପରୀକ୍ଷା ବିଚାର କରାଯାଇପାରେ । ସେ ବିଭିନ୍ନ ବୁଦ୍ଧିମାନ୍ ଜୀବମାନଙ୍କର ଚିନ୍ତନ-ପ୍ରକ୍ରିୟା ଉପରେ ଗବେଷଣା କରି ଜାଣିପାରିଲେ ଯେ, ଗାଣିତିକ ଯୁକ୍ତିଗୁଡ଼ିକ ହିଁ ପୃଥିବୀର ତଥା ପୃଥିବୀ ବାହାରର ସମସ୍ତ ବୁଦ୍ଧିମାନ ଜୀବମାନଙ୍କର ବୋଧଗମ୍ୟ ହେବ । ଆମେ ବ୍ୟବହାର କରୁଥିବା ଗାଣିତିକ ସଂଖ୍ୟା-ମାନଙ୍କ ମଧ୍ୟରେ ବିଭିନ୍ନ ଟେପ ବହିର୍ଜଗତକୁ ପଠାଯାଇପାରିବ । କାର୍ଲ୍ ସାଗାନ ମଧ୍ୟ ମରଭିନ୍ ମିନସ୍କିଙ୍କପରି ମତପୋଷଣ କରି କହିଛନ୍ତି ଯେ, ବହିର୍ଜଗତର ମାନବ ସହିତ କଥାବାର୍ତ୍ତା କରିବା ପାଇଁ ପ୍ରାଥମିକ ଅବସ୍ଥାରେ କେତେକ ମୌଳିକ ସଂଖ୍ୟା (ପ୍ରାଇମ୍ ନମ୍ବର) କିମ୍ବା 'ପାଇ'ପରି କେତେକ ଧ୍ରୁବକ ସଂଖ୍ୟା ବ୍ୟବହାର କରାଯାଇ ପାରିବ ।

ବର୍ତ୍ତମାନ ପୃଥିବୀ ବହିର୍ଜଗତ ସହିତ ସଂଯୋଗ ସ୍ଥାପନ କରିବାକୁ ଉନ୍ନତର ବୈଜ୍ଞାନିକ ଉଦ୍ୟମ କରାଯାଉଛି । ପାଓନିଅର ୧୦ ଓ ୧୧ ମହାକାଶଯାନରେ ସର୍ବପ୍ରଥମେ ୧୯୭୨ ସାଲରେ ଯେଉଁ ଫଳକଟି ପ୍ରେରିତ ହୋଇଥିଲା, ସେଥିରେ ଅନ୍ତର୍ବର୍ତ୍ତୀ କେତେକ ପଲ୍‌ସାରର ମାନଚିତ୍ର ଅଙ୍କାଯାଇ ତନ୍ମଧ୍ୟରେ ପୃଥିବୀର



ଅବସ୍ଥିତି ସୁସ୍ପଷ୍ଟଭାବେ ଦର୍ଶାଇ ଦିଆଯାଇଥିଲା । ଫଳକଟିର ନିମ୍ନ ସ୍ଥଳରେ ସୌରମଣ୍ଡଳର ଚିତ୍ର ଅଙ୍କାଯାଇ ସେଥିରେ ପାଓନିଅର ଯାନର ଗତିପଥ ଚିହ୍ନିତ କରାଯାଇଥିଲା । ଏମିତି କରିବା ପଛରେ ଉଦ୍ଦେଶ୍ୟ ହେଉଛି ଯେ ଯଦି ବହିର୍ଜଗତର ମାନବ ହାତରେ ଏହି ଫଳକଟି ପଡ଼େ, ତା' ହେଲେ ସେ ପୃଥିବୀ ସହିତ ଯୋଗାଯୋଗ କରିବାକୁ ଆବଶ୍ୟକୀୟ ସୂଚନା ଓ ଠିକଣା ପାଇବ ।

ପ୍ୟୁର୍ତ୍ତୋ-ରିକୋଠାରେ ଅବସ୍ଥିତ ଆରେସିବୋ ମାନମନ୍ଦିରରୁ ଏହି ଦିଗରେ ଦ୍ୱିତୀୟ ଚେଷ୍ଟା ୧୯୭୪ ସାଲ ନଭେମ୍ବର ୧୬ ତାରିଖରେ ଆରମ୍ଭ କରାଯାଇଥିଲା । ସେଠାକାର ରେଡ଼ିଓ ଟେଲିସ୍କୋପରୁ ନିର୍ଦ୍ଦିଷ୍ଟ ବେତାରତରଙ୍ଗ ଦ୍ୱାରା କେତେକ ଦୁଇ ସଂଖ୍ୟାଭିତ୍ତିକ ସଂଖ୍ୟା (ବାଇନାରୀ ନମ୍ବର) ଏମ୍-୧୩ ନାମକ ନକ୍ଷତ୍ରପୁଞ୍ଜକୁ ପଠାଗଲା । ସାର୍ଦ୍ଧ ପଚିଶ ହଜାର ବର୍ଷ ପରେ ଏହା ଲକ୍ଷ୍ୟ ସ୍ଥଳରେ ପହଞ୍ଚିବ ବୋଲି ଆଶା କରାଯାଏ । ଯଦି ବହିର୍ଜଗତରେ କୌଣସି ବୁଦ୍ଧିମାନ ଜୀବ ପ୍ରକୃତରେ ଥାଏ,

ତା'ହେଲେ ସେ ଏହି ବାଇନାରି ସଙ୍ଖ୍ୟାମାନଙ୍କୁ ନିଜ ବୁଦ୍ଧି ବଳରେ ଉପଯୁକ୍ତ କ୍ରମରେ ସଜାଇବାକୁ ସକ୍ଷମ ହେବ ଏବଂ ସେଥିରୁ କେତେକ ଉଲ୍ଲେଖନୀୟ ଚିହ୍ନ ବା ଚିତ୍ର ସୃଷ୍ଟି ହେବ—ଯଥା, ଉଦ୍‌ଜାନ, ଅଙ୍ଗାରକ, ଯବକ୍ଷାରଜାନ, ଅମ୍ଳଜାନ, ଫସ୍‌ଫରସର ପରମାଣୁ କ୍ରମାଙ୍କ (ଆଟୋମିକ ନମ୍ବର), ଶର୍କରା ଓ ଡି.ଏନ୍.ଏ ନ୍ୟୁକ୍ଲିଓଟାଇଡ୍‌ର ଅଥବା କ୍ଷାରକର ସଙ୍କେତ (ଫର୍ମୁଲା ଅଫ୍ ବେସ୍) ଡି.ଏନ୍.ଏରେ ଥିବା ନ୍ୟୁକ୍ଲିଓଟାଇଡ୍‌ର ସଂଖ୍ୟା ଓ ତା'ର ଡବଲ ହେଲିକ୍ସ, ମଣିଷର ଚିତ୍ର, ପୃଥିବୀର ଜନସଂଖ୍ୟା, ସୌରମଣ୍ଡଳ ଓ ତନ୍ମଧ୍ୟରେ ସ୍ପଷ୍ଟଭାବେ ଉଲ୍ଲେଖ କରାଯାଇଥିବା ପୃଥିବୀର ଚିତ୍ର ଏବଂ ଆରସିବୋ ଦୂରବୀକ୍ଷଣଯନ୍ତ୍ର କେତେକ ବିବରଣୀ । ଏହାଦ୍ୱାରା ପୃଥିବୀ ଓ ମଣିଷ ସମ୍ପର୍କରେ ଏକ ସ୍ଥୂଳ ଧାରଣାକୁ ବହିର୍ଜଗତର ବୁଦ୍ଧିମାନ ଜୀବମାନେ ପାଇପାରିବେ ।

ପ୍ରକାଶଥାଉକି ସେଟି-ସମର୍ଥକମାନେ ଏହି ରେଡ଼ିଓ-ଟେଲିସ୍କୋପ୍ ଯୋଜନାର ସଫଳତା ପାଇଁ ଆଗ୍ରହର ସହିତ ଅପେକ୍ଷା କରିଛନ୍ତି କାରଣ ସେମାନେ ଅନୁସରଣ କରୁଥିବା ପଦ୍ଧତି ଠିକ୍ ଏହି ଧରଣର । ଅବଶ୍ୟ ବେଳେବେଳେ ଏହା ଭୁଲ ଆଶା ଓ ଉତ୍ସାହ ଉଦ୍ରେକ କରିଥାଏ । ଏମିତି ଏକ ଘଟଣା ୧୯୬୭ ସାଲରେ ଘଟିଥିଲା । ଯେତେବେଳେ ମହାକାଶରୁ ଆସୁଥିବା ସେହି ରେଡ଼ିଓ ସିଗ୍‌ନାଲଟି ହଠାତ୍ ଆବିଷ୍କୃତ ହୋଇଥିଲା, ତାକୁ ପର୍ଯ୍ୟବେକ୍ଷକମାନେ ପ୍ରଥମେ ପ୍ରଥମେ ଭାବିଥିଲେ ଯେ, କୌଣସି ବହିର୍ଜଗତର ସଭ୍ୟତା ଦ୍ୱାରା ତାହା ପ୍ରେରିତ ହୋଇଛି । କିନ୍ତୁ ପରେ ପ୍ରକୃତ ସତ୍ୟଟି ବୈଜ୍ଞାନିକମାନେ ଜାଣିପାରିଲେ—ଉକ୍ତ ରେଡ଼ିଓ ସିଗ୍‌ନାଲର ଉତ୍ସ ହେଉଛି ଖୁବ୍ ଜୋରରେ ଘୂରୁଥିବା ଗୋଟିଏ ନିଉଟ୍ରନ ନକ୍ଷତ୍ର ବା ପଲ୍‌ସାର । ତେଣୁ ବହିର୍ଜଗତ ସଭ୍ୟତା ସମ୍ପର୍କରେ ଯେତେବେଳେ ସେହି ଆଶାର ଉଦ୍ରେକ ହୋଇଥିଲା, ତାହା କ୍ରମେ କ୍ରମେ ମଉଳିଗଲା ।

ନାସା ସଂସ୍ଥାର ଭଏଜର ୧ ଓ ୨ ମହାକାଶ ଯାନଦ୍ୱାରା ୧୯୭୭ ସାଲରେ ପୃଥିବୀ ବାହାରେ ଥିବା ତଥାକଥିତ ସଭ୍ୟତାକୁ ଠାବ କରିବା ପାଇଁ ଏକ ଅଭିନବ ଚେଷ୍ଟା କରାଯାଇଥିଲା । ସେଥିରେ ପଠାଯାଇଥିବା ରେକର୍ଡ଼ଟିରେ ପୃଥିବୀର ବିଭିନ୍ନ ସଭ୍ୟତାର ଆକର୍ଷଣୀୟ ବିଷୟମାନ ଲିପିବଦ୍ଧ କରାଯାଇଥିଲା । ଯଥା—ଷ୍ଟ୍ରାଭିନସ୍କି, ବାକ୍, ବେଥୋଭେନ ଓ ମୋଜାର୍ଟଙ୍କ ସଙ୍ଗୀତ; ଲୁଇସ୍ ଆର୍ମଷ୍ଟ୍ରଙ୍ଗ, ଚକ୍‌ବେରି ଓ ଭାରତର କେଶର ବାଇକେରକାରଙ୍କ ଗୀତ ଏବଂ ପ୍ରାଚୀନ ଚୀନ୍‌ର ଗୋଟିଏ ଲଳିତ ସୁର । ଏହାଛଡ଼ା କେତେକ ଛବିର ଚିତ୍ର ସମେତ ପୃଥିବୀର ବିଭିନ୍ନ ଦେଶର ପ୍ରତିନିଧିମୂଳକ କିଛି ମଙ୍ଗଳକଥା ସନ୍ଦେଶ, ଯଥା— "ତମେ ଖାଇସାରିଲଣି କି"

( ଚୀନ୍ ), "ସମ୍ଭବତଃ ତମେ ଜାଣିଛ ଯେ, ମୋ ଦେଶ ଅତିଦୂର ପଶ୍ଚିମ ଉପକୂଳରେ ଅବସ୍ଥିତ" (ନାଇଜେରିଆ)—ସେଥିରେ ମଧ୍ୟ ଅନ୍ତର୍ଭୁକ୍ତ କରାଯାଇଥିଲା । ଏହା କରିବା ପଛରେ ଆୟୋଜକମାନଙ୍କ ମୂଳ ଉଦ୍ଦେଶ୍ୟ ହେଉଛି ଯେ, ଯଦି ବହିର୍ଜଗତର ସଭ୍ୟ ଜୀବ ନିଜ ବୃଦ୍ଧି ଓ ପ୍ରଯୁକ୍ତି-କୌଶଳ ପ୍ରୟୋଗ କରି ଏହି ରେକର୍ଡ଼ଟିକୁ କାର୍ଯ୍ୟକ୍ଷମ କରାଇପାରିବ, ତା'ହେଲେ ଆମ ସହିତ ଯୋଗାଯୋଗ ସ୍ଥାପନ କରିବା ପାଇଁ ଆଗ୍ରହୀ ହେବ ।

ବୈଜ୍ଞାନିକମାନଙ୍କ ବିଭିନ୍ନ କୌଶଳ ସତ୍ତ୍ୱେ ବର୍ତ୍ତମାନସୁଦ୍ଧା ମହାକାଶରେ କୌଣସି ଉନ୍ନତ ଜୀବ ଧରାପଡ଼ି ନାହାନ୍ତି । ତଥାପି ସେମାନଙ୍କ ଚିନ୍ତାଧାରା ଉନ୍ନତ ଜୀବର ସମ୍ଭାବନା ଦ୍ୱାରା ବେଳେବେଳେ ପରିପୁଷ୍ଟ ହୋଇଥିବା ଜଣାଯାଏ । ଏହି ପ୍ରସଙ୍ଗରେ ନୋବେଲ ପୁରସ୍କାର ବିଜୟୀ ଆଣବିକ ଜୀବବିଜ୍ଞାନବିତ୍ ଫ୍ରାନସିସ୍ କ୍ରିକ୍‌ଙ୍କ "ଡାଇରେକ୍ଟେଡ଼ ପାନସ୍ପେରମିଆ" ମତବାଦ ପ୍ରତି ଦୃଷ୍ଟି ଦିଆଯାଇପାରେ । ତାଙ୍କ ମତରେ ବହିର୍ଜଗତରେ ଆମ ନିହାରିକାର କୌଣସି ଏକ ନକ୍ଷତ୍ରକୁ କେନ୍ଦ୍ର କରି ଘୂରୁଥିବା ଗ୍ରହରେ ଏକ ଅତ୍ୟୁନ୍ନତ ସଭ୍ୟ ଜୀବ ବହୁବର୍ଷ ପୂର୍ବରୁ ବସବାସ କରୁଥିଲେ । କୌଣସି ମହାଜାଗତିକ କାରଣରୁ କିମ୍ବା ଦୁର୍ଘଟଣାରୁ ହେଉ, ଅଥବା ନିଜ ଦୋଷରୁ ହେଉ; ଦୈବାତ୍ ସେ ରହୁଥିବା ଗ୍ରହ ପ୍ରତି ଏମିତ ଏକ ସଙ୍କଟ ଆସି ପହଞ୍ଚିଲା ଯେ, ସେ ତା'ର ଅସ୍ତିତ୍ୱ ବିପନ୍ନ ବୋଲି ଭାବିଲା । ନିଜକୁ ବଞ୍ଚାଇ ରଖିବା ପାଇଁ ସେ ଅନ୍ୟ କୌଣସି ଉପାୟ ପାଇଲା ନାହିଁ । ଏହି ସଙ୍କଟ ବେଳେ ସେ ସ୍ଥିର କଲା ଯେ, ସେ ନିଜେ ବଞ୍ଚି ନ ରହିପାରିଲେ ମଧ୍ୟ ବିଶ୍ୱବ୍ରହ୍ମାଣ୍ଡରେ ଅନ୍ୟ ଯେଉଁ ଗ୍ରହରେ ଜୀବ-ଉପଯୋଗୀ ପରିବେଶ ରହିଛି, ସେଠାକୁ ଜୀବନର ମୂଳ ଉପାଦାନ ପଠାଇଦେବା ଉଚିତ ହେବ । ସେ ବୈଜ୍ଞାନିକ କୌଶଳ ତଥା ପ୍ରଯୁକ୍ତି ବିଦ୍ୟାରେ ପାରଙ୍ଗମ ହୋଇଥିବା ଯୋଗୁଁ ଗାର୍ଢ଼ ମହାକାଶ ଯାତ୍ରା ସମ୍ପର୍କରେ ପାରଦର୍ଶିତା ହାସଲ କରିଥିଲେ । ତେଣୁ ବିଭିନ୍ନ ସତର୍କତାମୂଳକ ବ୍ୟବସ୍ଥା ଥିବା ମହାକାଶଯାନରେ ଜନନଶକ୍ତି ରହିତ ଏକକୋଷୀ ଜୀବ ତାର ବାସସ୍ଥଳୀରୁ ମହାଶୂନ୍ୟକୁ ପଠାଇଲେ । ମହାକାଶରେ ଘୂରି ବୁଲୁଥିବାବେଳେ ଏହି ଜୀବାଣୁ ପୃଥିବୀ ପୃଷ୍ଠରେ ଦୈବାତ୍ ପହଞ୍ଚିଲେ । କିନ୍ତୁ ସେତେବେଳେ ପୃଥିବୀର ବାତାବରଣରେ ଅମ୍ଳଜାନ ନଥିଲା । ତଥାପି ଉକ୍ତ ଜୀବାଣୁ ଏଠାରେ ବଞ୍ଚିରହି ବିକଶିତ ହେବା ପାଇଁ ବିଶେଷ ଅସୁବିଧା ହୋଇ ନ ଥିଲା । କାରଣ ବିନା ଅମ୍ଳଜାନରେ ବଞ୍ଚିବା କ୍ଷମତା ତା' ପାଖରେ ଥିଲା ।

ପ୍ରକାଶଥାଉ କି, ଏଠାରେ ଉଲ୍ଲେଖ କରାଯାଇଥିବା ବହିଃ ଜଗତରେ ପରିସ୍ଥିତି ବା ଦୁର୍ଘଟଣା ଜୀବନକୁ ଅନ୍ୟତ୍ର ସ୍ଥାନାନ୍ତରିତ କରିବାର କାରଣ ବୋଲି ଦର୍ଶାଇଛି । ଏହି କାରଣ ସମ୍ପୂର୍ଣ୍ଣ କିମ୍ବା ଏକମାତ୍ର ହୋଇ ନ ପାରେ ।

ବଂଶରକ୍ଷା ତଥା ବଂଶବୃଦ୍ଧି ଜୀବମାନଙ୍କର ପ୍ରବୃତ୍ତିର ଏକ ଅନ୍ତର୍ନିହିତ ଓ ମହତ୍ ଉପାଦାନ ହୋଇଥିବା ଯୋଗୁଁ ସାଧାରଣ ସ୍ୱାଭାବିକ ପରିସ୍ଥିତିରେ ମଧ୍ୟ ବହିର୍ଜଗତର ମାନବ ଏଠାକୁ ଅଣୁଜୀବ ପଠାଇପାରିଥାଏ ।

କ୍ରିକ୍‌ଙ୍କ ଏହି ମତବାଦର ଅନ୍ୟତମ ସହଯୋଗୀ ଥିଲେ ଓରେ୍‌ଲ । ଏହି ତତ୍ତ୍ୱରେ ହାଲଡେନ୍ (୧୯୫୪) ମଧ୍ୟ ବିଶ୍ୱାସ ରଖିଥିଲେ । ଅବଶ୍ୟ ପ୍ରଥମେ ପ୍ରଥମେ (୧୯୬୦) ଜ୍ୟୋତିଃ ବିଜ୍ଞାନୀ କାର୍ଲ୍‌ସାଗାନ ଏହାକୁ ଏକ ଅସମ୍ଭବ ଓ ଅବାସ୍ତବ ତତ୍ତ୍ୱ-କହି ପ୍ରତ୍ୟାଖ୍ୟାନ କରିଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ଯେତେବେଳେ ମଣିଷ ମହାକାଶ ବିଜ୍ଞାନରେ ଯଥେଷ୍ଟ ଅଗ୍ରଗତି ହାସଲ କରି ଚନ୍ଦ୍ରପୃଷ୍ଠରେ ଅବତରଣ କଲା (୧୯୬୯), କାର୍ଲ୍‌ସାଗନ ନିଜର ମତ ପରିବର୍ତ୍ତନ କଲେ । ଏପରିକି ନିଜ ସମ୍ପାଦନାରେ ପ୍ରକାଶ ପାଉଥିବା "ଇକାରସ" ନାମକ ଏକ ପତ୍ରିକାରେ ସେ ୧୯୮୧ ସାଲରେ ଏହି କ୍ରିକ୍ ଓର୍ଗେଲ ତଥ୍ୟ ପ୍ରକାଶ କଲେ ।

ବୈଜ୍ଞାନିକ କଳ୍ପକାହାଣୀ ପରି ମନେହେଉଥିବା କ୍ରିକ୍‌ଙ୍କ ତଥ୍ୟକୁ କେତେକ କାରଣରୁ ବାସ୍ତବ ବୋଲି ଗ୍ରହଣ କରାଯାଇଛି । ଉଦାହରଣ ସ୍ୱରୂପ, କେତେକ ବୈଜ୍ଞାନିକ ମତ ଦିଅନ୍ତି ଯେ, ସୃଷ୍ଟି ସମୟରେ ପୃଥିବୀର ଉତ୍ତାପ ଅତ୍ୟଧିକ ଥିଲା । ତେଣୁ ଗ୍ୟାସ୍ ଅଣୁଗୁଡିକ ଖୁବ୍ ଜୋର୍‌ରେ ଗତି କରି ପୃଥିବୀର ବାୟୁମଣ୍ଡଳରୁ ଖସି ଚାଲିଯାଉଥିଲେ । ପୁଣି ସେତେବେଳେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଦୁର୍ବଳ ଥିବା ଯୋଗୁଁ ଏହି ପଳାତକ ଗ୍ୟାସ ଅଣୁଗୁଡ଼ିକୁ ବାୟୁମଣ୍ଡଳ ମଧ୍ୟରେ ବାନ୍ଧିରଖିବା ସମ୍ଭବପର ହୋଇପାରୁ ନ ଥିଲା । ଏହି ପରିସ୍ଥିତିରେ ଆଣବିକ ଉଦ୍‌ଜାନ ପରି ଏକ ହାଲୁକା ଗ୍ୟାସ୍ ପୃଥିବୀ ଛାଡି ଚାଲିଯାଇଥିବା ଖୁବ୍ ସମ୍ଭବ । ପୃଥିବୀର ବାୟୁମଣ୍ଡଳରେ ସେତେବେଳେ ଉଦ୍‌ଜାନର ଅଭାବ ଯୋଗୁଁ ମିଥେନ, ଆମୋନିଆ ପରି କେତେକ ଜୈବିକ ବସ୍ତୁ ଏଠାରେ ସୃଷ୍ଟି ହୋଇପାରି ନ ଥିବ । ଏହାର ପରିଣତି ଅତି ଗୁରୁତର, କାରଣ ଏହି ବସ୍ତୁମାନ ଜୀବନ ପାଇଁ ଅପରିହାର୍ଯ୍ୟ ହୋଇଥିବା ଯୋଗୁଁ ଏମାନଙ୍କର ଅନୁପସ୍ଥିତିରେ ପୃଥିବୀରେ ପ୍ରଥମେ ଜୀବସୃଷ୍ଟି ହୋଇଥିବା ସମ୍ଭବ ନୁହେଁ । ଯେତେଦୂର ସମ୍ଭବ, ପୃଥିବୀଠାରୁ ବହୁଗୁଣରେ ସ୍ଥିର ଏବଂ ଅପେକ୍ଷାକୃତ ଶୀତଳ ଗ୍ରହରେ ଜୀବନ ପ୍ରଥମେ ସୂତ୍ରପାତ ହୋଇଛି ଏବଂ କ୍ରିକ୍ କହିବା ପରି ସେଠାରୁ ପୃଥିବୀକୁ ମହାକାଶଯାନ ଦ୍ୱାରା ଜୀବନ ସ୍ଥାନାନ୍ତରିତ ହୋଇଛି ।

ଏତଦ୍‌ବ୍ୟତୀତ କ୍ରିକ୍‌ଙ୍କ ମତକୁ ସମର୍ଥନ କରିବା ପାଇଁ ଅନ୍ୟ ଏକ କାରଣ ମଧ୍ୟ ଅଛି । ଆମେ ଜାଣୁ ଯେ, ପୃଥିବୀର ଜୀବମାନଙ୍କ ମଧ୍ୟରେ ବହୁ ବିଭିନ୍ନତା ଦୃଷ୍ଟିଗୋଚର ହେଉଥିବା ସତ୍ତ୍ୱେ ସେମାନଙ୍କ ମଧ୍ୟରେ ମୌଳିକ ସ୍ତରରେ ସମାନତା ବା ଅଭିନ୍ନତା

ରହିଛି । ଜଣାଯାଏ ଯେ, ପୃଥିବୀର ବିଭିନ୍ନ ଜୀବର ଶରୀରରେ ବହୁପ୍ରକାର ନ୍ୟୁକ୍ଲିଓ-ଟାଇଡ୍ ଓ କୋଡ଼ନ ପ୍ରକାର ଆମିନୋ ଏସିଡ୍ ଥାଏ । ଏହାର ଫଳ ସ୍ୱରୂପ ବହୁସଂଖ୍ୟକ (୧୦୦,୦୦୦,୦୦୦) ଜେନେଟିକ୍ କୋଡ୍ ସମ୍ଭବପର । କିନ୍ତୁ ବାସ୍ତବ କ୍ଷେତ୍ରରେ ଏତେ ପ୍ରକାର ଜେନେଟିକ୍ କୋଡ୍ ପୃଥିବୀରେ ନାହିଁ । ପ୍ରକୃତରେ ଏଠାକାର ସମସ୍ତ ଜୀବ (ମାଇଟୋକୋଣ୍ଡ୍ରିଆ ବ୍ୟତୀତ) କେବଳ ଗୋଟିଏ ମାତ୍ର ଜେନେଟିକ୍ କୋଡ୍ ବର୍ତ୍ତମାନ ବ୍ୟବହାର କରୁଛନ୍ତି । ଏଥିରୁ ଅନୁମାନ କରାଯାଉଛି ଯେ, ବହିର୍ଜଗତରୁ ଆସିଥିବା ଏକକୋଷୀ ଜୀବାଣୁର ଶରୀରରେ ଥିବା ଏକମାତ୍ର ଜେନେଟିକ୍ କୋଡ୍ ଟି ବର୍ତ୍ତମାନ ପ୍ରଚଳିତ ଅଛି । ଯଦି ଏହା ନ ହୋଇ ପୃଥିବୀରେ ସର୍ବପ୍ରଥମେ ଜୀବନର ସୃଷ୍ଟି ହୋଇଥା'ନ୍ତା, ତାହାହେଲେ ଓ୍ୱାଙ୍କ ମତ ଅନୁସାରେ ଦଶକୋଟି ସଂଖ୍ୟକ ଜେନେଟିକ୍ କୋଡ଼ ଅଜକାଳିର ଜୀବଜନ୍ତୁଙ୍କଠାରେ କିମ୍ବା ପୃଥିବୀରେ ସମ୍ଭୂତ ହୋଇଥିବା ଜୀବାଣୁଠାରେ ପରିଦୃଷ୍ଟ ହୋଇଥା'ନ୍ତା । ଏହି କାରଣରୁ ମନେହୁଏ ଯେ, ଆମେ ବହିରାଗତ ।

ଆଜି ପୁଣି ଆମେ ବହିର୍ଜଗତର ଜୀବକୁ ଦେଖି ନାହୁଁ । ସେମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିନାହୁଁ । ବୈଜ୍ଞାନିକ ସ୍ତରରେ ଆମର ବହୁ ଚେଷ୍ଟା ଓ କୌଶଳ ବର୍ତ୍ତମାନ ପର୍ଯ୍ୟନ୍ତ ଫଳପ୍ରସୂ ହୋଇ ନାହିଁ । ପୁଣି ଆମ ବୈଜ୍ଞାନିକ ପ୍ରଚେଷ୍ଟାମାନ ସଫଳ ହେବ କି ନାହିଁ—ତାହା ଜାଣିବା ପାଇଁ ଆମକୁ ହଜାର ହଜାର ବର୍ଷ ଅପେକ୍ଷା କରିବାକୁ ପଡ଼ିବ । ତଥାପି ଆମେ ବର୍ତ୍ତମାନଠାରୁ ବହିର୍ଜଗତରେ ସଭ୍ୟମାନବ ଅଛି ବୋଲି ଭାବନେଇ ଭେଟେନକ ରଙ୍ଗୀନ କଳ୍ପନା କରିସାରିଲେଣି । ବିଭିନ୍ନ ଫଳକଦ୍ୱାରା ଆମର ଆକାର, ପ୍ରକାର ଓ ରୂପ ସମ୍ପର୍କରେ ସୂଚନା ଆମେ ମହାକାଶ-ଯାନଦ୍ୱାରା ପ୍ରେରଣ କରିସାରିଲେଣି । ଆମର ଏହିପ୍ରକାର ଗତିବିଧିକୁ କେହିକେହି ଉନ୍ମାଦ ଚିନ୍ତାଧାରା ବୋଲି କହିପାରନ୍ତି । ଅନ୍ୟ କେହିକେହି ମଧ୍ୟ ଆମକୁ ଦୋଷ ଦେଇପାରନ୍ତି ଯେ, ଆମେ କଣ ନ ଦେଖିଣୁ ଲଙ୍ଗଳା ହୋଇଯାଉଛେ । ତେବେ ଏହା କେବଳ ବର୍ତ୍ତମାନ ନୁହେଁ ବହୁବର୍ଷ ପୂର୍ବେ ମଧ୍ୟ ଆମେ ଏହି ପ୍ରକାର ଉଦାମ ବ୍ୟବହାର ଦେଖାଇଛେ ।

୧୮୭୭ ମସିହାରେ ଯେତେବେଳେ ଇଟାଲୀସ୍ଥ ଜ୍ୟୋତିର୍ବିଦ ଜିଓଭାନ ସିପାରେଲି ମଙ୍ଗଳ ଗ୍ରହର ପୃଷ୍ଠଭାଗରେ ଦେଖାଯାଉ ନ ଥିବା କେତେକ ଗାରକୁ କେନାଲ ବୋଲି ଆଖ୍ୟା ଦେଲେ, ସେତେବେଳେ ଜନସାଧାରଣଙ୍କ ମନରେ ଅପର୍ଯ୍ୟାପ୍ତ ଆନନ୍ଦର ଢେଉ ଖେଳିଗଲା । କେତେ ମତବ୍ୟକ୍ତ କଲେ ଯେ, ପୃଥିବୀ ବାହାରେ ମଧ୍ୟ ସଭ୍ୟତା ରହିଛି ଏବଂ ସେଠାକାର ବାସିନ୍ଦାମାନେ ଆମଠାରୁ ଉନ୍ନତ । ସେମାନେ ସ୍ୱପବାସ ତଥା

ଜଳଯୋଗାଣ ପାଇଁ ସୁଚିନ୍ତିତ କେନାଲ-ବ୍ୟବସ୍ଥା କାର୍ଯ୍ୟକାରୀ କରିଛନ୍ତି । ପ୍ଲୁଟୋ ଗ୍ରହର ଆବିଷ୍କାରକ ଜ୍ୟୋତିର୍ବିଜ୍ଞାନୀ ପର୍ସିଭାଲ ଲୋଏଲ୍ ଏହି କେନାଲ ବ୍ୟବସ୍ଥା ସମ୍ପର୍କରେ ଅନୁକୂଳ ମତ ଦେବା ପରେ ସାଧାରଣ ଲୋକେ ବହିର୍ଜଗତର ଜୀବ ଅତ୍ୟନ୍ତ ବୁଦ୍ଧିମାନ୍ ବୋଲି ବିନା ଦ୍ୱିଧାରେ ଗ୍ରହଣ କଲେ । ବିଶ୍ୱବ୍ରହ୍ମାଣ୍ଡର ଅସୀମତା ମଧ୍ୟରେ ଆମେ ଯେତେ ନଗଣ୍ୟ ହେଲେ ମଧ୍ୟ ଏକାକୀ ନୋହୁଁ ବୋଲି ଜାଣିବା ପରେ ଆମେ ବେଶ୍ ଆଶ୍ୱସ୍ତ ଓ ସନ୍ତୁଷ୍ଟ ହେଲୁ ।

ମଙ୍ଗଳ ଗ୍ରହର ତଥାକଥିତ ବାସିନ୍ଦାମାନେ ଆମକୁ ଏହି ପ୍ରକାର କେବଳ ଆନନ୍ଦ ଦେଇ ନ ଥିଲେ, ଆମକୁ ଆତଙ୍କିତ ମଧ୍ୟ କରିଥିଲେ । ଓରସେନ ଓ୍ୱେଲେସ ନାମକ ଜଣେ ପ୍ରଯୋଜକ ବ୍ରିଟିଶ ରେଡ଼ିଓରେ ଏଚ୍.ଜି ଓ୍ୱେଲସଙ୍କ "ଦ ଓ୍ୱାର ଅଫ୍ ଦ ଓ୍ୱାର୍ଲଡ଼ସ"ର ବେତାର ସଂସ୍କରଣ ୧୯୩୮ ସାଲରେ ଯେତେବେଳେ ପ୍ରସାରିତ କଲେ, ଏହା ଅଭୂତପୂର୍ବ ପରିସ୍ଥିତି ସୃଷ୍ଟି କଲା । ଲୋକମାନେ ସେତେବେଳେ ସାତଙ୍କିତ ହୋଇ ଭାବିଲେ ଯେ, ମଙ୍ଗଳ ଗ୍ରହରେ ରହୁଥିବା ଉନ୍ନତ ଜୀବମାନେ ପୃଥିବୀ ଉପରେ ଅତର୍କିତ ଭାବେ ଯୁଦ୍ଧ ଘୋଷଣା କରିଦେଇଛନ୍ତି ଏବଂ ସେମାନେ ଆକ୍ରମଣ ଇଂଲଣ୍ଡଠାରୁ ଆରମ୍ଭ କରିବା ପରେ ଆମେରିକା ଆଡ଼କୁ ଅଗ୍ରସର ହେଉଛନ୍ତି । ସେତେବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରାରମ୍ଭିକ ପର୍ଯ୍ୟାୟ । ତେଣୁ ତତ୍କାଳୀନ ବିସ୍ଫୋରକ ପରିସ୍ଥିତିରେ ବେତାରଦ୍ୱାରା ପ୍ରସାରିତ ହୋଇଥିବା କାଳ୍ପନିକ କାହାଣୀ ମଧ୍ୟ ବାସ୍ତବ ବୋଲି ପ୍ରତୀତ ହେଲା ଓ ମଙ୍ଗଳଗ୍ରହବାସୀଙ୍କ ଆକ୍ରମଣ ସତ ବୋଲି ଆମେରିକାରେ ସହଜ ଗ୍ରହଣ କରାଯାଇଥିଲା ।

ଏଥିରୁ ଅନୁମାନ କରିହୁଏ ଯେ, ବହିର୍ଜଗତରେ ଜୀବମାନଙ୍କର ଯଦି ସନ୍ଧାନ ମିଳେ, ତାହାହେଲେ ଆମ ମୂଲ୍ୟବୋଧ ହୁଏତ ସେମାନଙ୍କ ଦ୍ୱାରା ପ୍ରଭାବିତ ହେବ । ଅବଶ୍ୟ ଏହା ହେବା ସ୍ୱାଭାବିକ—ଯେମିତିକି ଆମ ଦୈନନ୍ଦିନ ଜୀବନରେ ଆମ ପଡ଼ୋଶୀ ସହିତ ସମ୍ପର୍କ ଅନୁସାରେ ଆମେ ମୂଲ୍ୟବୋଧ ସ୍ଥିର କରିଥାଉ । ଯଦି ଏହି ପଡ଼ୋଶୀ ସମ୍ପର୍କ ଉତ୍ତମସମ୍ପର୍କ ହୋଇଥାଏ, ତା'ହେଲେ ଆମ ଅନୁଭୂତି ଅଧିକ ନିବିଡ଼ ଓ ଆନ୍ତରିକ ହୋଇଥାଏ ।

ପୃଥିବୀ ସହିତ ବହିର୍ଜଗତର ଜୀବର ସମ୍ପର୍କ ହୁଏତ ଉତ୍ତମସମ୍ପର୍କ ନ ହୋଇପାରେ; ତଥାପି ଏହା ଯଦି ସମାନ ଜେନେଟିକ୍ କୋଡ୍ ଉପରେ ପର୍ଯ୍ୟବସିତ ହୁଏ, ତାହାହେଲେ ମଧ୍ୟ ଆମ ମଧ୍ୟରେ ସମ୍ପର୍କ ଖୁବ୍ ଶକ୍ତିଶାଳୀ ହେବ । ଏପରିକି ଆମ ଦୈନନ୍ଦିନ ଜୀବନ ମଧ୍ୟ ବିଶେଷଭାବେ ପ୍ରଭାବିତ ହେବ । ଅବଶ୍ୟ ଏଇ ବିଷୟରେ

ଅନ୍ବେଷଣ କରିବା ପୂର୍ବରୁ ଆମକୁ ନିଶ୍ଚିତ ହେବାକୁ ପଡ଼ିବ, ପୃଥିବୀ ବାହାରେ ଜୀବନ ଅଛି କି ?

ବହୁତ ବର୍ଷ ପୂର୍ବେ ଗୋଟିଏ ପ୍ରତିଷ୍ଠିତ ସମ୍ବାଦପତ୍ରର ପ୍ରକାଶକ ଜଣେ ବିଖ୍ୟାତ ଜ୍ୟୋତିର୍ବିଜ୍ଞାନୀଙ୍କ ପାଖକୁ ତାରବାର୍ତ୍ତାରେ ଜଣାଇଥିଲେ, "ମଙ୍ଗଳ ଗ୍ରହରେ ଜୀବ ଅଛି କି ନାହିଁ—ସେହି ବିଷୟରେ ପାଞ୍ଚଶହ ଶବ୍ଦ ସମ୍ବଳିତ ଗୋଟିଏ ରିପୋର୍ଟ ତାରଦ୍ୱାରା ପଠାନ୍ତୁ।" ଏହାର ଉତ୍ତରରେ ଜ୍ୟୋତିର୍ବିଜ୍ଞାନୀ ଜଣାଇଲେ, "ନୋ ବଡ଼ି ନୋଜ୍ (କେହି ଜାଣନ୍ତି ନାହିଁ)..." କିନ୍ତୁ "ନୋ ବଡ଼ି ନୋଜ୍" ବୋଲି ଦୁଇଟି ଶବ୍ଦ ଲେଖିଦେଲେ ଚଳିବ ନାହିଁ; କାରଣ ସମ୍ବାଦ ପତ୍ରର ପ୍ରକାଶକ ପାଞ୍ଚଶହ ଶବ୍ଦ ବିଶିଷ୍ଟ ରିପୋର୍ଟ ଲେଖିବାକୁ ନିର୍ଦ୍ଦେଶ ଦେଇଥିଲେ । ତେଣୁ ଜ୍ୟୋତିର୍ବିଜ୍ଞାନୀ ମହାଶୟ ୨୫୦ ଥର "ନୋ ବଡ଼ି ନୋଜ୍" ବୋଲି ଲେଖି ପଠାଇଦେଲେ ।

ପ୍ରକୃତରେ କହିବାକୁ ଗଲେ, ଉକ୍ତ ଜ୍ୟୋତିର୍ବିଜ୍ଞାନୀ ଜଣକ ମଙ୍ଗଳ ଗ୍ରହ ସମ୍ପର୍କରେ ବହୁ ବର୍ଷ ପୂର୍ବେ ଯେଉଁ ଉତ୍ତର ଦେଇଥିଲେ, ତାହା ବର୍ତ୍ତମାନ ପାଇଁ ଏବଂ ମଙ୍ଗଳ ସମେତ ସବୁ ଗ୍ରହ ପାଇଁ ମଧ୍ୟ ପ୍ରଯୁଜ୍ୟ । ବାସ୍ତବତଃ ବହିର୍ଜଗତରେ ଲୁଚି ରହିଥିବା ଅନ୍ୟ ସୃଷ୍ଟି ସମ୍ପର୍କରେ ଆମର ଅଜ୍ଞତା ପୂର୍ବବତ୍ ରହିଛି । ବହିରାକାଶରେ ଜୀବ ବିଷୟରେ ନିର୍ଭରଯୋଗ୍ୟ ତଥ୍ୟ ନ ପାଇବା ପର୍ଯ୍ୟନ୍ତ ଆମର ଏକ ଜନ୍ମସ୍ଥାନ ପୃଥିବୀ, ନା ନାହିଁ—ତା'ର ଉତ୍ତର ଦେଇ ହେବ ନାହିଁ ।



# ପରୀକଥାର ବୈଜ୍ଞାନିକତା

ଯଦି ଗୋଟିଏ ରେଫ୍ରିଜରେଟର, ଏମିତକି ଖଣ୍ଡେ ବ୍ରସ୍, ଆମ ନଜରରେ ପଡ଼େ, ତାହାହେଲେ ଏସବୁ ବିଜ୍ଞାନର ପ୍ରତ୍ୟକ୍ଷ ଅବଦାନ ବୋଲି ଆମ ମନରେ ତୁରନ୍ତ ଧାରଣା ସୃଷ୍ଟି ହୁଏ । ସେମିତି ଅଣୁବୀକ୍ଷଣ, ଦୂରବୀକ୍ଷଣ ଯନ୍ତ୍ରପରି ସରଞ୍ଜାମମାନ ବୈଜ୍ଞାନିକ ଯନ୍ତ୍ରପାତି ବୋଲି ସର୍ବସାଧାରଣ ନିଃସନ୍ଦେହରେ କହିଥାନ୍ତି । କିନ୍ତୁ କୌଣସି ଗଳ୍ପକୁ କେହି ଗୋଟିଏ ବୈଜ୍ଞାନିକ ଯନ୍ତ୍ର, କୌଶଳ କିମ୍ବା କୃତି ବୋଲି ସାଧାରଣତଃ ମାନିବେ ନାହିଁ ! ପୁଣି ଯଦି ଏଇ ଗଳ୍ପଟି ବାସ୍ତବଧର୍ମୀ ନ ହୋଇ ପରୀକଥା ବା ବୁଢ଼ୀ ଅସୁରୁଣୀ ଗଳ୍ପ ପରି ସମ୍ପୂର୍ଣ୍ଣ କପୋଳକଳ୍ପିତ ହୋଇଥିବ, ତାହାହେଲେ ତାକୁ ବିଜ୍ଞାନ-ସମ୍ପର୍କିତ ବୋଲି କହିବା ପରିବର୍ତ୍ତେ ବିଜ୍ଞାନର ପରିପନ୍ଥୀ ବୋଲି ସାଧାରଣ ଲୋକେ ମତବ୍ୟକ୍ତ କରିବେ ।

ଏଇ ପ୍ରକାରେ ସର୍ବସାଧାରଣରେ ଘୃଣା-ଭାବ କିମ୍ବା ଆଗ୍ରହର ଅଭାବ ଯୋଗୁଁ ବୁଢ଼ୀ ଅସୁରୁଣୀ ଗପ କିମ୍ବା ପରୀକଥାଟିଏ ଲେଖିବା ପାଇଁ ପ୍ରାୟତଃ କେହି ଆଗଭର ହେଉ ନାହାନ୍ତି । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏହା ବିଶେଷଭାବେ ପ୍ରଯୁଜ୍ୟ । ଦିନ ଥିଲା, ଯେତେବେଳେ କି ଏଇ କାହାଣୀମାନ ଆବାଳ-ବୃଦ୍ଧବନିତା ପାଠକର ଆନନ୍ଦିତ କରୁଥିଲେ । ପାଶ୍ଚାତ୍ୟ ସାହିତ୍ୟରେ ଇଶପଙ୍କ ଗଳ୍ପ, ଆମ ଦେଶର ବୌଦ୍ଧ ଜାତକ ଗଳ୍ପ, ପଞ୍ଚତନ୍ତ୍ର, ହିତୋପଦେଶ, ବେତାଳ ପଞ୍ଚବିଂଶତି, ବତ୍ରିଶ ସିଂହାସନ, କଥା ସରିତ ସାଗର ପ୍ରଭୃତି ଏହାର ପ୍ରକୃଷ୍ଟ ଦୃଷ୍ଟାନ୍ତ । ଯଦି ପୁସ୍ତକମାନ ଅତି ଲୋକପ୍ରିୟ ହୋଇଥିଲା ଏବଂ ଅଦ୍ୟାବଧି ଅମର ହୋଇ ରହିଛି, ତାର ପଛରେ ମୂଳ କାରଣ ହେଉଛି ସେଥିରେ ଗ୍ରଥିତ ହୋଇଥିବା ଅସୁମାରି କାହାଣୀମାଳା । କିନ୍ତୁ ବର୍ତ୍ତମାନ ଏଇ କାହାଣୀମାନଙ୍କ ପ୍ରତି ଯେଉଁ ଅନାଦର-ଭାବ ସୃଷ୍ଟି ହୋଇଛି, ତାର କାରଣ ପ୍ରଣିଧାନଯୋଗ୍ୟ । ପୁଣି ଏଇ ଘୃଣାଭାବ କେତେଦୂର ବିଜ୍ଞାନସମ୍ମତ ଏବଂ ବାସ୍ତବ କ୍ଷେତ୍ରରେ ଉପକାରୀ, ତାହା ବିଚାର୍ଯ୍ୟ ।

ଯୁକ୍ତରାଷ୍ଟ୍ର ଆମେରିକାରେ ଟାଇମ୍ ନାମକ ଏକ ପ୍ରଖ୍ୟାତ ସାପ୍ତାହିକ ପତ୍ରିକା ପ୍ରକାଶିତ ହେଉଛି । ଉକ୍ତ ପତ୍ରିକା ତରଫରୁ ଅନ୍ତର୍ଜାତୀୟସ୍ତରରେ ପ୍ରତିବର୍ଷ ଶ୍ରେଷ୍ଠ ବ୍ୟକ୍ତିଭାବେ ଜଣଙ୍କୁ ମନୋନୀତ କରାଯାଇଥାଏ । କିନ୍ତୁ ୧୯୮୨ ମସିହାରେ ଶ୍ରେଷ୍ଠ ବ୍ୟକ୍ତିଭାବେ କୌଣସି ବ୍ୟକ୍ତିଙ୍କୁ ବଛା ନ ଯାଇ ଗୋଟିଏ ଯନ୍ତ୍ରକୁ ଏହି ଦୁର୍ଲଭ ସମ୍ମାନ ପ୍ରଦାନ କରାଯାଇଥିଲା । ଏହି ଯନ୍ତ୍ରଟିର ନାମ ହେଉଛି କମ୍ପ୍ୟୁଟର । ଏହି ସମ୍ପର୍କରେ ମତାମତ ଦେବାକୁ ଯାଇ ଟାଇମ୍ ପତ୍ରିକା ତାଙ୍କର ୧୯୮୩ ମସିହାର ଜାନୁଆରୀ ମାସର ଏକ ସଂସ୍କରଣର ସମ୍ପାଦକୀୟରେ ଉଲ୍ଲେଖ କରିଛନ୍ତି, "କୌଣସି ବର୍ଷ ଏମିତି ଉଲ୍ଲେଖନୀୟ ପରିସ୍ଥିତିର ଉଦ୍ଭବ ହୁଏ ଯେ, ଯେଉଁଥିପାଇଁ କୌଣସି ବ୍ୟକ୍ତିବିଶେଷଙ୍କ ପରିବର୍ତ୍ତେ କୌଣସି ଏକ ପ୍ରକ୍ରିୟା ଶକ୍ତିଶାଳୀ ଭୂମିକା ଗ୍ରହଣ କରିଥାଏ । ପୁଣି ବେଳେ ବେଳେ ଏହି ପ୍ରକ୍ରିୟା ଏପରି ସର୍ବଶକ୍ତିମାନ୍ ହୋଇଉଠେ ଯେ, ଏହା ଅନ୍ୟାନ୍ୟ ବହୁ ପ୍ରକ୍ରିୟାକୁ ପରିବର୍ତ୍ତନ କରିବାକୁ ସକ୍ଷମ ଥିବା ବିଷୟ ସମାଜର ପ୍ରତ୍ୟେକ ସ୍ତରରେ ଲୋକେ ସ୍ୱୀକାର କରିଥାନ୍ତି । ଏହି ଦୃଷ୍ଟିରୁ ବିଶ୍ୱସ୍ତରରେ ଘଟିଥିବା ବିଭିନ୍ନ ଘଟଣାର ଉତ୍ଥାନ ପତନ ପ୍ରତି ଲକ୍ଷ୍ୟ ରଖି ଟାଇମ୍ ପତ୍ରିକା ୧୯୮୨ ସାଲ ପାଇଁ କମ୍ପ୍ୟୁଟରକୁ ବର୍ଷର ଶ୍ରେଷ୍ଠ ବ୍ୟକ୍ତିଭାବେ ବିବେଚିତ କରିଛି । ଏଥିରେ ମଣିଷର ସ୍ଥାନ ଯନ୍ତ୍ରଦ୍ୱାରା ଅଧିକୃତ ହେଉଥିବା ବିଷୟ ସୁସ୍ପଷ୍ଟ ।

ବାସ୍ତବିକ୍ କମ୍ପ୍ୟୁଟରର ପ୍ରଭାବ ବର୍ତ୍ତମାନ ଏତେଦୂର ବ୍ୟାପିଗଲାଣି ଯେ, ତାର ସୀମା ଓ ଭବିଷ୍ୟତ ରୂପରେଖ ନିର୍ଣ୍ଣୟ କରିବା ଅସମ୍ଭବ ହୋଇପଡ଼ୁଛି । ଏହା ଡାକ୍ତରମାନଙ୍କପରି ରୋଗ ଚିହ୍ନିପାରେ; ଚେସ୍ ପରି ଜଟିଳ ଖେଳମାନ ଅନାୟାସରେ ଖେଳିପାରେ ଇତ୍ୟାଦି । କିନ୍ତୁ ଟେଡ୍ ବୋଗୋସିଅନ୍ ଓ ଡବ୍ଲ୍ୟୁ. ଜି. ବି. ଏଚ୍. ବୋଷ୍ଟନ ଗୋଟିଏ ରିପୋର୍ଟରେ ଉଲ୍ଲେଖ କରିଛନ୍ତି ଯେ, କମ୍ପ୍ୟୁଟର ଦ୍ୱାରା କବିତାର ସୃଜନା ଓ ଚିନ୍ତାପ୍ରକାଶ କରିବା ଅଦ୍ୟାବଧି ଦୁରୂହ ବ୍ୟାପାର ହୋଇ ରହିଛି । ଏପରିକି ମୌଳିକ କବିତା ତ ଲେଖିବା ଦୂରର କଥା; କବିତାଟିଏ ଅନୁବାଦ କରିବା ମଧ୍ୟ କମ୍ପ୍ୟୁଟରର କ୍ଷମତାର ବହୁ ଊର୍ଦ୍ଧ୍ୱରେ । (ରିଡର୍ସ ଡାଇଜେଷ୍ଟ ଫେବୃଆରୀ ସଂଖ୍ୟା, ୧୯୮୭) । କିନ୍ତୁ ମାନସିକ ସ୍ତରରେ ଆମର କାର୍ଯ୍ୟକ ଚେତନାକୁ ଆମେ ଯେପରି କ୍ରମାଗତଭାବେ ଅଧିକ ବାସ୍ତବଧର୍ମୀ ଓ ଯନ୍ତ୍ର ସଭ୍ୟତାର ଅନୁକୂଳ କରିବା ପାଇଁ ବଦ୍ଧପରିକର, ସେଥିରୁ ଅନୁମିତ ହୁଏ ଯେ, ଆମର ମନୋବୃତ୍ତି ଠିକ୍ ମାର୍ଗରେ ପରିଚାଳିତ ହେଉ ନାହିଁ । ଏହି ପ୍ରକାରେ ତଥାକଥିତ ବୈଜ୍ଞାନିକ ଚିନ୍ତାଧାରାର ପ୍ରଭାବ ଯୋଗୁଁ ଆମେ ଆମର ମାନସିକ ପ୍ରକ୍ରିୟାକୁ ଯନ୍ତ୍ରବତ୍ ପରିଚାଳିତ କରିବାକୁ ଚେଷ୍ଟିତ ଥିବା କାରଣରୁ ତାର ପରିଣାମ କ'ଣ ହୋଇପାରେ, ସେଥିପ୍ରତି ଦୃଷ୍ଟିଦେବା ବାଞ୍ଛନୀୟ ।

କବିତା ହେଉ ବା ଗଳ୍ପ ହେଉ ଯେକୌଣସି ସାହିତ୍ୟିକ କୃତି ପଛରେ ଏକ ଅଖଣ୍ଡ ସ୍ୱ ଆତ୍ମା ଲୁକ୍କାୟିତ ଭାବେ ରହିଥାଏ, ଯାହାକି କମ୍ପ୍ୟୁଟରପରି ଯାନ୍ତ୍ରିକ କୌଶଳ ମାଧ୍ୟମରେ ଧରାପଡ଼େ ନାହିଁ । ବିଜ୍ଞାନର ଜାଲ ମଧ୍ୟରେ ଛନ୍ଦି ନ ହେଲେ ସୁଦ୍ଧା ତାହା ଯେ ବିଜ୍ଞାନ ପରି ମଣିଷକୁ ଉପକୃତ କରିଥାଏ, ତାର ଦୃଷ୍ଟାନ୍ତ ବହୁକ୍ଷେତ୍ରରେ ମିଳିଥାଏ ।

ଆମ ମସ୍ତିଷ୍କର ଉଭୟ ବାମ ଓ ଦକ୍ଷିଣ ଭାଗରେ ଏକା ପ୍ରକାରର ସ୍ନାୟୁ ଓ କୋଷ ରହିଥିଲେ ସୁଦ୍ଧା ସେମାନଙ୍କ କାର୍ଯ୍ୟ କରିବା ପ୍ରଣାଳୀ ଓ ଦକ୍ଷତାରେ ଭିନ୍ନତା ଉଲ୍ଲେଖନୀୟ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ପଲ୍ ବ୍ରୋକା ଓ କାର୍ଲ ଓ୍ୱାରନିକ୍ ନାମକ ଦୁଇଜଣ ସ୍ନାୟୁତତ୍ତ୍ୱ ଏହି ବିଷୟରେ ପ୍ରଥମ ସୂଚନା ଦେଇଥିଲେ । ମସ୍ତିଷ୍କର ବାମ ଭାଗରେ ଆହତ ହୋଇଥିବା ବ୍ୟକ୍ତିମାନେ ସେମାନଙ୍କ ବାକ୍‌ଶକ୍ତି ଓ ଭାଷାର ବ୍ୟବହାର ଠିକ୍‌ଭାବେ କରିପାରନ୍ତି ନାହିଁ; କିନ୍ତୁ ଜ୍ୟାମିତିକ ଓ ଦୈଶିକ ( ସ୍ଥାନ ସମ୍ପର୍କୀୟ ) ପ୍ରଶ୍ନମାନ ପୂର୍ବପରି ନିର୍ଭୁଲଭାବେ ସମାଧାନ କରି ପାରନ୍ତି । ଠିକ୍ ସେମିତି ଦୁର୍ଘଟଣା କିମ୍ବା ଅନ୍ୟ କୌଣସି କାରଣରୁ ଯେଉଁ ବ୍ୟକ୍ତିର ମସ୍ତିଷ୍କର ଦକ୍ଷିଣଭାଗ କ୍ଷତିଗ୍ରସ୍ତ ହୋଇଥାଏ, ସେ ଦୃଷ୍ଟିର ତୀକ୍ଷ୍ଣତା ଓ ପ୍ରତ୍ୟକ୍ଷୀକରଣ ବହୁଗୁଣରେ ହରାଏ । ତାହାର ସେ ଜ୍ୟାମିତିକ ଓ ସ୍ଥାନ ସମ୍ପର୍କୀୟ ସମସ୍ୟାମାନ ସମାଧାନ କରିବାବେଳେ ଭୁଲ୍ କରିପକାଏ । ଅବଶ୍ୟ ତାର ବାକ୍‌ଶକ୍ତି ଓ ଭାଷାଜ୍ଞାନ ଅପରିବର୍ତ୍ତିତ ରହୁଥିବା ବିଷୟ ଜନ୍. ଏଚ୍. ଜ୍ୟାକସନ୍‌ଙ୍କ ମନୋବୈଜ୍ଞାନିକ-ପରୀକ୍ଷାଦ୍ୱାରା ଜଣାଯାଏ । ଏଥିରୁ ପ୍ରତୀତ ହୁଏ ଯେ ଆମ ମସ୍ତିଷ୍କର ବାମ ଭାଗ ଭାଷା, ବାକ୍‌ସ୍ଫୁରଣ, ଯୁକ୍ତିତର୍କ ଜ୍ଞାନ ବିଷୟରେ ନିପୁଣ ହୋଇଥିବା ବେଳେ ଦକ୍ଷିଣଭାଗ ଦର୍ଶନେନ୍ଦ୍ରିୟ ଦ୍ୱାରା ଅନୁଭୂତ ତଥା ଅଦ୍ଭୁତ ଜ୍ଞାନ ଓ ଧାରଣା, ଜ୍ୟାମିତିକ ପଦ୍ଧତି ଓ ତଦ୍ୱାରା ବାହ୍ୟ ଆକାର ନିରୂପଣ, ସୃଜନଶୀଳତା ଓ ହଠାତ ବୋଧ (ବେଳେ ବେଳେ ଅବାସ୍ତବ) ଚିନ୍ତାକ୍ଷେତ୍ରରେ ପାରଦର୍ଶୀ । ତେଣୁ ବାମ ଓ ଡାହାଣ ଭାଗ, ପ୍ରତ୍ୟେକେ ନିଜ ନିଜ କ୍ଷେତ୍ରରେ ଜଣେ ଜଣେ ସ୍ପେସିଆଲିଷ୍ଟ ପରି କାର୍ଯ୍ୟ କରିଥାନ୍ତି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ମସ୍ତିଷ୍କର ଉକ୍ତ ଦୁଇ ଗୋଲାର୍ଦ୍ଧ ମଧ୍ୟରେ ଉପଯୁକ୍ତ ସଂଯୋଜନା ପାଇଁ ମସ୍ତିଷ୍କ-ଗୋଲାର୍ଦ୍ଧ-ସଂଯୋଜକ (କୋର୍ପସ୍ କୋଲୋସମ୍) ନାମକ ଏକ ଅଂଶ ରହିଛି, ଯେଉଁଥିରେ ଦୁଇଶହ ନିୟୁତ କୋଷ ପରିଦୃଷ୍ଟ ହୁଏ । ବାମ ଗୋଲାର୍ଦ୍ଧର ଖବର ବାମରେ ପହଞ୍ଚାଇ ଆମ ମସ୍ତିଷ୍କର ଉଭୟ ପାର୍ଶ୍ୱ ମଧ୍ୟରେ ଭାରସାମ୍ୟ ରକ୍ଷା କରିବା ଏମାନଙ୍କ କାମ । ଏଥିରୁ ମନରେ ଧାରଣା ଜନ୍ମେ ଯେ, ଯଦି ମସ୍ତିଷ୍କର ଏହି ସଂଯୋଜକକୁ ନଷ୍ଟକରି ଦିଆଯିବ, ତାହାହେଲେ ଆମେ ମାନସିକ

ସ୍ୱରସାମ୍ୟ ହରାଇ ବାତୁଳ ହୋଇଯିବା; କିନ୍ତୁ ଚିକିତ୍ସକମାନେ ଯେତେବେଳେ ଅପସ୍ମାର ରୋଗୀର ଉକ୍ତ ସଂଯୋଜକ ରଜ୍ଜୁକାଷ୍ଠ ସ୍ନାୟୁମାନ ଛେଦନ କରି ଦେଖିଛନ୍ତି ଯେ ସେମାନଙ୍କ ମାନସିକ ଅବସ୍ଥା ଖରାପ ହେବା ପରିବର୍ତ୍ତେ, ସେମାନେ ସାଧାରଣ ବ୍ୟକ୍ତିପରି ସୁସ୍ଥ ସବଳ ରହୁଛନ୍ତି । ଅବଶ୍ୟ ଏହି ପ୍ରକାର ବିଭକ୍ତ-ମସ୍ତିଷ୍କ-ବିଶିଷ୍ଟ ବ୍ୟକ୍ତିମାନଙ୍କଠାରେ କେତେକ ବିଚ୍ୟୁତି ଦେଖାଦେଇଥାଏ । ନୋବେଲ ପୁରସ୍କାର ବିଜେତା ସ୍ନାୟୁବିତ୍ ରୋଜର ସ୍ପେରି ଗୋଟିଏ ସାଧାରଣ ପରୀକ୍ଷାଦ୍ୱାରା ଏହା ଦର୍ଶାଇବାରେ ସକ୍ଷମ ହୋଇଛନ୍ତି । ଯଦି କୌଣସି ବିଭକ୍ତ-ମସ୍ତିଷ୍କ-ବିଶିଷ୍ଟ ବ୍ୟକ୍ତିର ଆଖିକୁ ଅନ୍ଧପଟୁଳିରେ ବାନ୍ଧି ଦିଆଯାଇ ତାର ଡାହାଣ ହାତରେ ଗୋଟିଏ ବସ୍ତୁ ( ଧରାଯାଉ ଆତଫଳଟିଏ ) ରଖାଯାଏ, ତାହାହେଲେ ତାର ଚର୍ମରେ ଥିବା ସମ୍ବେଦନାବହ ସ୍ନାୟୁତନ୍ତୁମାନ ବିଦ୍ୟୁତ୍ ରାସାୟନିକ ତରଙ୍ଗ ମସ୍ତିଷ୍କର ବାମ ଭାଗରେ ପହଞ୍ଚାନ୍ତି । ମସ୍ତିଷ୍କର ବାମ ଭାଗ ଭାଷା ବର୍ଣ୍ଣନା ତଥା ବାକ୍ସ୍ଫୁରଣରେ ଅଧିକ ଉପଯୁକ୍ତ ହୋଇଥିବା ଯୋଗୁଁ ଲୋକଟି ଆତଫଳର ବର୍ଣ୍ଣନା ପ୍ରାଞ୍ଜଳଭାବେ କରିବାରେ ସକ୍ଷମ ହୁଏ । କିନ୍ତୁ ଏହି ଆତଫଳଟି ଯଦି ତାର ବାମ ହାତରେ ରଖି ଦିଆଯାଏ, ତାହା-ହେଲେ ମସ୍ତିଷ୍କର ଡାହାଣ ଭାଗକୁ ବିଦ୍ୟୁତ୍ରାସାୟନିକ ତରଙ୍ଗ ପ୍ରେରିତ ହେବା ଯୋଗୁଁ ସେ ଆତଫଳଟି ଭାଷାରେ ବର୍ଣ୍ଣନା କରିବାକୁ ଅକ୍ଷମ ହୁଏ; କିନ୍ତୁ କମଳା, ଲେମ୍ବୁ, ଆତଫଳ ଇତ୍ୟାଦି ବହୁ ଫଳମୂଳ ଥିବା ଗୋଟିଏ କୁଣ୍ଡିରୁ ଯଦି ତାକୁ ସେ ହାତରେ ଧରିଥିବା ଫଳଟିଏ ଚାହିଁ ବାହାର କରିବାକୁ କୁହାଯାଏ, ତାହାହେଲେ ସେ ତାର ଅନ୍ଧପଟୁଳି ନ ଖୋଲିଲେ ସୁଦ୍ଧା ଅତି ଆଶ୍ଚର୍ଯ୍ୟଜନକଭାବେ ଅନାୟାସରେ ଆତଫଳଟିଏ ବାଛିବାରେ ସକ୍ଷମ ହୋଇଥାଏ ।

ଉପରୋକ୍ତ ବିଶ୍ଲେଷଣରୁ ସ୍ପଷ୍ଟ ଜଣାଯାଏ ଯେ ଆମ ମସ୍ତିଷ୍କକୁ ଦୁଇଟି କୋଠରିରେ ବିଭକ୍ତ କରିବା ପଛରେ ଯଥେଷ୍ଟ କାରଣ ରହିଛି । ଆମ ମସ୍ତିଷ୍କର ବାମ ଭାଗ ବାସ୍ତବଧର୍ମୀ ଗପ ଲେଖିବା ପାଇଁ ପ୍ରେରଣା ଯୋଗାଉଥିବା ବେଳେ ଡାହାଣଭାଗ ପରୀ କଥାପରି ଅବାସ୍ତବ କାଳ୍ପନିକ ଗପ ସୃଷ୍ଟି କରେ ଏବଂ ତାକୁ ବିଭିନ୍ନ ରଙ୍ଗରେ ରଞ୍ଜିତ କରି ରଙ୍ଗୀନ ଆଲୋକ-ଚିତ୍ରପରି ମନନେତ୍ର ତଥା ବିଶ୍ୱାସଯୋଗ୍ୟ କରିବାକୁ ଚେଷ୍ଟା କରିଥାଏ । ଏଠାରେ ଲକ୍ଷ୍ୟ କରିବା କଥା ଯେ, ଯଦି ଆମେ ମସ୍ତିଷ୍କର ଗୋଟିଏ ଭାଗକୁ ପ୍ରାଧାନ୍ୟ ଦେଇ ଅନ୍ୟ ଭାଗଟି ପ୍ରତି ଅବହେଳା ପ୍ରଦର୍ଶନ କରୁଁ, ତାହାହେଲେ ଆମର ମାନସିକ ସ୍ୱରସାମ୍ୟ ସଙ୍କଟଜନକ ପରିସ୍ଥିତିର ସମ୍ମୁଖୀନ ହେବ । ଏହାଦ୍ୱାରା ମସ୍ତିଷ୍କ-ଗୋଲାର୍ଦ୍ଧର ସଂଯୋଜକ ( କୋର୍ପସ୍ କାଲୋସମ୍ ) ହାର୍ଦ୍ଦିକ ସମନ୍ୱୟ ରକ୍ଷା କରିବାକୁ ଯାଇ ଅଧିକ ଉପଯୋଗୀ ଷଡ଼ଯନ୍ତ୍ର ହେବ ! ପରିଶେଷରେ ଏମିତି ଏକ ଉଦ୍ଭଟ ଓ ବିଷମ ପରିସ୍ଥିତିର ଉଦ୍ଭବ ହୋଇପାରେ ଯେ, ଆମେ କେଉଁ ଭାଗଟି

ଅବହେଳିତ ରଖୁ, ତାହା ସ୍ୱଳ୍ପ ବ୍ୟବହାର କିମ୍ବା ଅନ୍ୟ ବ୍ୟବହାର ଯୋଗୁଁ ନିଷ୍କ୍ରିୟ ହୋଇ ବିବର୍ତ୍ତିନ ପ୍ରକ୍ରିୟା ଫଳରେ ପ୍ରାଥମିକ ସ୍ତରରେ ପକ୍ଷାଘାତ ହୋଇ କାଳକ୍ରମେ ସମ୍ପୂର୍ଣ୍ଣଭାବେ ଅବକ୍ଷୟପ୍ରାପ୍ତ ହୋଇଯିବ । ବର୍ତ୍ତମାନ ଯେ ଏମିତି ଏକ ସମସ୍ୟା ଆମ ଆଗରେ ଦେଖାଦେଇଛି, ତାହା ବହୁ ଚିନ୍ତାଶୀଳ ବ୍ୟକ୍ତିଙ୍କ ମନ୍ତବ୍ୟରୁ ସୂଚିତ ହୁଏ ।

"ଫେବଲ୍‌ସ୍ ଅଣ୍ଡ ଫାଣ୍ଟିସିସ୍ ଫର୍ ଯଡ଼ାଲ୍‌ଟ୍ସ"ର ଅନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କଥାକାର ମନୋଜ ଦାସ ଏହି ସମସ୍ୟା ଉପରେ ମନ୍ତବ୍ୟ ଦେଇଛନ୍ତି, "ବ୍ରେନ୍‌ର ଦକ୍ଷିଣ ଅଂଶ କଳ୍ପନା ବିଳାସ, ସ୍ୱବୋଧୀପଣ, କାହାଣୀ ଉପଭୋଗ ଓ ସୃଜନର କ୍ଷେତ୍ର । ବାମ ଅଂଶ ଯୁକ୍ତି, ପ୍ରୟୋଗବାଦୀ ଚିନ୍ତା ଓ ବାସ୍ତବତାର ଅନୁଶୀଳନ କ୍ଷେତ୍ର । ଆଧୁନିକ ମଣିଷ ତା ବ୍ରେନ୍‌ର ବାମ ଭାଗକୁ ଅତ୍ୟଧିକ ବ୍ୟବହାରରେ ଲଗାଉଛି; ଅଥଚ ଦକ୍ଷିଣ ଦିଗକୁ ଯଥେଷ୍ଟ କାର୍ଯ୍ୟକାରୀ କରୁ ନାହିଁ । ଆଧୁନିକ ସାହିତ୍ୟ ହିସାବରେ ସେ ଯାହା ପଢ଼େ, ସେଥିରେ ବୋଧହୁଏ ଦକ୍ଷିଣ ଭାଗକୁ ଉଦ୍ଦୀପ୍ତ କରିବା ଗୁଣ ବିଶେଷ ନ ଥାଏ । ପ୍ରାଚୀନ ଗତ ଧର୍ମ କାହାଣୀ (ଫେବଲ୍‌ସ୍) ଅଶ୍ୱର୍ଯ୍ୟ ଭାବରେ କାମଦିଏ; ରୋଗୀର ଦୁର୍ବଳ ମାନସିକ ଭାରସାମ୍ୟ ଫେରାଇ ଆଣେ । ଭିନ୍ନ ଭିନ୍ନ ରୋଗ ବା ରୋଗର ଲକ୍ଷଣ ସକାଶେ ଭିନ୍ନ ଭିନ୍ନ ଔଷଧ ନିରୂପିତ ହୋଇଥିବା ସ୍ଥଳରେ ଭିନ୍ନ ଭିନ୍ନ ମାନସିକ ବିକଳତାର ଲକ୍ଷଣରେ ପ୍ରୟୋଗ ନିମନ୍ତେ ଭିନ୍ନ ଭିନ୍ନ କାହାଣୀ ନିରୂପଣ କରିଦେଇ ହେବ ।" (ଟେଲେ ଟେଟନ୍ତି, ୨୫ । ୧ । ୮୩) ।

ବଂଶ ଶତାବ୍ଦୀର ବରିଷ୍ଠ ମନୋବୈଜ୍ଞାନିକ ଡକ୍ଟର ବୋସରକ୍ ପେସେସ୍ ଚିକିତ୍ସକ୍ ଏହି ବିଷୟର ଗୁରୁତ୍ୱ ଉପଲବ୍ଧି କରି ରୋଗୀକୁ ଚିକିତ୍ସା କରିବା କ୍ଷେତ୍ରରେ ଅଭିନବ ପ୍ରଣାଳୀ ଅବଲମ୍ବନ କରୁଛନ୍ତି । ତାଙ୍କର ମତ ହେଉଛି ଯେ ଅଜଡ଼ାଳ ରୋଗରୁ ନିସ୍କୃତି ପାଇବାକୁ ହେଲେ ବିଭିନ୍ନ ଡାକ୍ତରୀ ଔଷଧର ବ୍ୟବହାର ଅପେକ୍ଷା ମନସ୍ତାତ୍ତ୍ୱିକ ଉପାୟ କିମ୍ବା କୌଶଳରେ ଚିକିତ୍ସିତ ହେବା ଅଧିକ ଉପାଦେୟ । ବିଶେଷତଃ ଆମ ମସ୍ତିଷ୍କର ଦକ୍ଷିଣ ଭାଗକୁ ଅଧିକ ସକ୍ରିୟ କରି ପାରିଲେ ବହୁ ରୋଗ ଆରୋଗ୍ୟ ହୋଇଯିବ ବୋଲି ସେ ଅନୁମାନ କରି, ରୋଗୀମାନଙ୍କୁ ଔଷଧ ପରିବର୍ତ୍ତେ ବିଭିନ୍ନ ପ୍ରକାରର ଗପ ଶୁଣାଉଛନ୍ତି । ସବୁଠାରୁ ଉଲ୍ଲେଖନୀୟ ବିଷୟ ହେଉଛି ଯେ, ଏହି ଔଷଧ ଗୁଣସମ୍ପନ୍ନ ଗପମାନ ବାସ୍ତବଧର୍ମୀ ଗଳ୍ପ ନୁହେଁ । ଏଗୁଡ଼ିକ ହେଉଛି ଆମମାନେ ଉପଯୁକ୍ତ ପୁରୁଣାକାଳିଆ ଜାତକାଣି ଶିଶୁଙ୍କ ଗପ; ମଣିଷପରି କଥାକହୁଥିବା ବାଘ ଭାଲୁ ଇତ୍ୟାଦି ପଶୁପକ୍ଷୀର କାହାଣୀ ଯାହାକି ଆମ ଦେଶର ସୁପ୍ରତିଷ୍ଠିତ ବିଷ୍ଣୁଶର୍ମାଙ୍କ କାହାଣୀମାଳା ପଞ୍ଚତନ୍ତ୍ର ଇତ୍ୟାଦିରେ ଦେଖିବାକୁ ମିଳେ ।

ଏହି ପରିପ୍ରେକ୍ଷୀରେ ପଞ୍ଚତନ୍ତ୍ର ଗଳ୍ପମାଳାର ପୃଷ୍ଠଭୂମି ସମ୍ପର୍କରେ ଅବତାରଣା କରିବା ଯୁକ୍ତିଯୁକ୍ତ ମନେହୁଏ । ମହିଳାରୂପ୍ୟ ନାମରେ ଗୋଟିଏ ରାଜ୍ୟ ଥିଲା, ଯାହାର ରାଜା ଥିଲେ ଅମରଶକ୍ତି । ତାଙ୍କର ତିନୋଟି ପୁତ୍ର ଥାଆନ୍ତି, ସେହିମାନେ ମାଙ୍କଡ଼ାମି ଗୁଣରେ ସର୍ବଶ୍ରେଷ୍ଠ । ସେମାନଙ୍କୁ ଶିକ୍ଷିତ ତଥା ଭଦ୍ର କରିବାକୁ ରାଜ୍ୟରେ କାହାର ସାଧ୍ୟ ନଥାଏ । ଏମିତି ଏକ ସଙ୍କଟଜନକ ମୁହୂର୍ତ୍ତରେ ବିଷ୍ଣୁ ଶର୍ମା ନାମକ ଜଣେ ପଣ୍ଡିତ ଏହି ଅସମ୍ଭବ କାର୍ଯ୍ୟର ଦାୟିତ୍ୱ ବହନ କରିବାକୁ ଆଗେଇ ଆସିଲେ । ସେ ରାଜପୁତ୍ରମାନଙ୍କୁ ଯାଦୁକଟାଠାରୁ ଆରମ୍ଭ କରି କୂଟନୀତି ଓ ଦର୍ଶନଶାସ୍ତ୍ର ପର୍ଯ୍ୟନ୍ତ ବହୁଳ ବିଷୟମାନ କାହାଣୀମାନଙ୍କ ଦ୍ୱାରା ଶିକ୍ଷାଦାନ କଲେ, ଯାହାକି ଏକ ଅଭିନବ ଉପାୟ ଥିଲା । ଏହି ଶିକ୍ଷାଦାନ ପରେ ରାଜା ଅମର ଶକ୍ତିଙ୍କର ସନ୍ତାନମାନେ ଭଦ୍ର ଓ ଉତ୍ତମ ବ୍ୟକ୍ତି ହୋଇପାରିଥିଲେ ଓ ପରେ ରାଜ୍ୟର ସୁଶାସକ ଭାବେ ପ୍ରତିଷ୍ଠିତ ହୋଇ-ପାରିଲେ । ଏହା ପ୍ରତିଷେଧକ-ଚିକିତ୍ସା ପ୍ରଣାଳୀର ଏକ ନମୁନାମାତ୍ର । ତେଣୁ ଏହି ତଥାକଥିତ ଅବାସ୍ତବ କାହାଣୀମାନ ଅଣ-ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠିତ ନୁହେଁ । ବାସ୍ତବିକ କମ୍ପ୍ୟୁଟର ଦ୍ୱାରା ସାହିତ୍ୟର ଯେଉଁ ଅଗ୍ରାହ୍ୟ ଧରି ହୁଏ ନାହିଁ, ତାହା ଯେ ଲେଖକ ବିଜ୍ଞାନର ଜୀବନରକ୍ଷା ଦାୟିତ୍ୱ ବିନା ଯନ୍ତ୍ରଣାରେ ତୁଲାଇପାରେ, ତାହା ତାତ୍ପର୍ଯ୍ୟପୂର୍ଣ୍ଣ । ତେଣୁ ବିଜ୍ଞାନ ଦ୍ୱାରା ଭାବପ୍ରାପ୍ତ ଓ ଉତ୍ସାହିତ ଆଜିକାଲିର ତଥାକଥିତ ବାସ୍ତବବାଦୀ ଶିକ୍ଷିତ ଓ ଅତ୍ୟାଧୁନିକ ଯୁବକ ଯୁବତୀମାନେ ଉକ୍ତ ପଶୁପକ୍ଷୀ କିମ୍ବା ମଣିଷକାହାଣୀମାନଙ୍କର ଗୁରୁତ୍ୱ ଠିକ୍ ଭାବେ ବୁଝି ନ ପାରି ସେଗୁଡ଼ିକ ଅତି ହାସ୍ୟାସ୍ପଦ ଓ ପିଲାଳିଆ କଳ୍ପନା ବୋଲି କହି ଉଡ଼ାଇ ଦେବା ଯୁକ୍ତିସଙ୍ଗତ ନୁହେଁ । ସେମାନେ ମନେ ରଖିବା ଉଚିତ ଯେ, ବହୁ ବିଶିଷ୍ଟ ବୈଜ୍ଞାନିକ ବିଜ୍ଞାନକୁ ଲୋକପ୍ରିୟ କରିବାକୁ ଯେଉଁ ସାଇନ୍ସ ଫିକ୍ସନ୍ ଲେଖିଥାନ୍ତି, ତାହା ଏହି ପରି କାହାଣୀମାନଙ୍କ ପରି ବହୁତରରୁ ଅବାସ୍ତବ । ଏହାର ଅର୍ଥ ନୁହେଁ ଯେ ଏଇସବୁ ଫିକ୍ସନ ଅଣବୈଜ୍ଞାନିକ । ଏଥିରେ ମଧ୍ୟ ଯୁକ୍ତିଯୁକ୍ତତା ଏକ ଅଲଗା ରୂପରେ ଅନ୍ତର୍ନିହିତ ହୋଇ ରହିଥାଏ । ପୁଣି ବିଜ୍ଞାନ ଯେତେ ଆଜି ଅପରିହାର୍ଯ୍ୟ ହୋଇପଡ଼ୁଛି, ତାର କାରଣ ହେଉଛି ଏହାର ସର୍ବସାଧାରଣଙ୍କ କ୍ଷେତ୍ରରେ ପ୍ରୟୋଜନୀୟତା ଓ ବ୍ୟାବହାରିକତା । ଆତ୍ମା ରପ ମଧ୍ୟ ବିଜ୍ଞାନର ଏହି ଗୁଣ ଅଦ୍ଭୁତ କରିଥିବା ଦେଶସ୍ଥ ନିକଟ ଅତୀତରେ ଘଟିଥିବା ଗୋଟିଏ ଘଟଣାରୁ ଜଣାପଡ଼େ । ଘଟଣାଟି ୟୁ.ଏନ୍. ସମ୍ବାଦ ସଂସ୍ଥାଦ୍ୱାରା ଗତବର୍ଷ ପରିବେଷିତ ହୋଇଥିଲା । ଜାପାନର ପଞ୍ଚାବନ ବର୍ଷ ବୟସ୍କା ତୋବାୟସିଙ୍କ ଜୀବନରେ ଏହା ଘଟିଥିଲା । ଏକଦା ବୃଦ୍ଧା ତୋବାୟସି ଜାନେଶି ୨୦ ସନ୍ଧ୍ୟା ଭର ତାଙ୍କ ଗାଁ ନିକଟସ୍ଥ ଜଙ୍ଗଲରୁ ଫେରିବା ବାଟରେ ଗୋଟିଏ ବଡ଼ ମାଇ ଭାଲୁର ହାବୁଡ଼ରେ ପଡ଼ିଲେ । ସେ ଉଦ୍ଭ୍ରାନ୍ତ ଅବସ୍ଥାରେ ପ୍ରାଣରକ୍ଷା ପାଇଁ ଧାଇଁବାରେ ବ୍ୟସ୍ତ । କିନ୍ତୁ ଭାଲୁ ତାଙ୍କ ପିଛା ଛାଡ଼ୁ ନାହିଁ । ବୃଦ୍ଧା ଜୀବନ ବଞ୍ଚିବାର ଆଶା ପ୍ରାୟ ଛାଡ଼ି

ଦେଇଥିବା ବେଳେ, ପିଲାଦିନେ ଶୁଣିଥିବା ଗୋଟିଏ ଗଳ୍ପ ହଠାତ୍ ତାଙ୍କର ମନେ ପଡ଼ିଗଲା, ଯେଉଁଥିରେ ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଇଥିଲା ଯେ, ଭାଲୁ ଜୀଅନ୍ତା ମଣିଷ ଖାଏ; କିନ୍ତୁ ଶବକୁ କେବେ ଛୁଏଁ ନାହିଁ । କୋବାୟସି ଆଉ ଅଧିକ ନ ଧାଇଁ ତୁରନ୍ତ ମଲାମଣିଷ ପରି ମୁହଁମାଡ଼ି ଭୂଇଁ ଉପରେ ପଡ଼ି ରହିଲେ ଓ ମୃତ ହୋଇଥିବାର ଅଭିନୟ କଲେ । ଭାଲୁ ବୃଦ୍ଧଙ୍କୁ ଶୁଙ୍ଘି ଶୁଙ୍ଘି ଚାଲିଗଲା । ଆଉ ଆକ୍ରମଣ କଲା ନ ଥିଲା । ଏହି ଉପାୟରେ ବୃଦ୍ଧ ଜଣକ ନିଶ୍ଚେଷ୍ଟବତ୍ ଭାଲୁ ମୁହଁରୁ ଉଦ୍ଧାର ପାଇଥିଲେ । ଆଈମା ଗପର ବାସ୍ତବ କ୍ଷେତ୍ରରେ ଉପଯୋଗିତା ସମସ୍ତେ ସେତେବେଳେ ଉପଲବ୍ଧି କରି ପାରିଲେ । ଏଥିରୁ ଜଣାଯାଏ ଯେ, ଗପ ମାଧ୍ୟମରେ ସତ୍ୟମାନ ଆମ ମନ ମଧ୍ୟରେ ଗର୍ଭଧନ ଭଳି ସାଇତା ହୋଇ ରହିଥାଏ ଏବଂ ଆମେ ବିପଦ୍‌ବେଳେ ତାହା ସ୍ମରଣ କରିପାରୁଁ ।

ଏହି ଘଟଣାର ଅନୁଶୀଳନରୁ ହୁଏତ ଗଳ୍ପଦ୍ୱାରା ଉଦ୍ଧାର ହୋଇଥିବାଙ୍କ ମନୋଚିକିତ୍ସା ବିଷୟରେ ସୂଚନା ମିଳୁ ନାହିଁ । କିନ୍ତୁ ଏହା ସ୍ପଷ୍ଟ ଭାବେ ଜଣାଏ ଯେ, ଆଈମା ଗପକୁ ବୃଦ୍ଧ କୋବାୟସି ପିଲାଳିଆ କିମ୍ବା ଉଦ୍ଭଟ କଳ୍ପନା ବୋଲି ମନେକରୁ ନ ଥିବା ଯୋଗୁଁ ମୃତ୍ୟୁ ଦ୍ୱାରରୁ ଫେରି ଆସିଲେ ।

ତଥାକଥିତ ଅସାର ଓ ଅବାସ୍ତବ ଗଳ୍ପର ପାଠକମାନେ ଏହି ପ୍ରକାରେ ବିଭିନ୍ନ ଦିଗରୁ ଉପକୃତ ହେଉଥିବାବେଳେ, ଗଳ୍ପସ୍ରଷ୍ଟାମାନଙ୍କ ପ୍ରତି ଗଳ୍ପର ଅବଦାନ ବିଷୟରେ ଆଲୋଚନା କରାଯାଇପାରେ । ୧୯।୩।୮୩ ତାରିଖରେ ଷ୍ଟେଟ୍ସମ୍ୟାନ୍ ସମ୍ବାଦପତ୍ରର ସମ୍ପାଦକୀୟରେ ଏକ କୌତୂହଳ୍ୟକର ବିଷୟ ଉତ୍ଥାପିତ କରାଯାଇଥିଲା । ଇଆନ୍ ଫ୍ଲେମିଙ୍ଗ୍ ଭିଏନାରେ କୂଟନୀତିଜ୍ଞଭାବେ କାର୍ଯ୍ୟନିର୍ବାହ କରୁଥିବାବେଳେ ଏକ ମାନସିକ ବ୍ୟାଧିର ଚିକିତ୍ସା ପାଇଁ ଜଣେକ ଅଷ୍ଟ୍ରେଲୀୟ ମନୋଚିକିତ୍ସକଙ୍କ ଦ୍ୱାରସ୍ଥ ହୋଇଥିଲେ । ସେତେବେଳେ ଫ୍ଲେମିଙ୍ଗଙ୍କୁ ପରାମର୍ଶ ଦିଆଗଲା ଯେ, ସେ ଯଦି ତାଙ୍କ ମନ ମଧ୍ୟରେ ଜମାଟ ବାନ୍ଧିଥିବା ଉତ୍ତେଜନାରୁ ରକ୍ଷାପାଇବାକୁ ଇଚ୍ଛା କରୁଛନ୍ତି, ତାହାହେଲେ ତାଙ୍କୁ ପଳାୟନବାଦୀ ଗଳ୍ପ ଓ ଉପନ୍ୟାସମାନ ରଚନା କରିବାକୁ ପଡ଼ିବ । ମନୋଚିକିତ୍ସକଙ୍କ ପରାମର୍ଶ ଅନୁଯାୟୀ ସେ କୌଣସି ଔଷଧ ବ୍ୟବହାର କରିବା ପରିବର୍ତ୍ତେ ଜେମସ୍ ବଣ୍ଡ୍ ନାମରେ ୦୦୭ ଚରିତ୍ର ସୃଷ୍ଟି କରି ବିଶିଷ୍ଟ ରହସ୍ୟ-ରଚନାମାନଙ୍କର ଲେଖକଭାବେ ବିଶ୍ୱବିଖ୍ୟାତ ହୋଇପାରିଥିଲେ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଇଆନ୍ ଫ୍ଲେମିଙ୍ଗ୍ ଏହା କରି ନ ଥିଲେ ଫାଶୀ ଖୁଣ୍ଟରେ ଚଢ଼ିଥାନ୍ତେ କିମ୍ବା କୌଣସି ପାଗଳ-ହାସପାତାଳରେ ଜୀବନ ବିତାଇଥାନ୍ତେ ବୋଲି ଉକ୍ତ ଡାକ୍ତର ସେତେବେଳେ ତାଙ୍କୁ ସାବଧାନ କରାଇ ଦେଇଥିଲେ ।

ତେଣୁ ଗପ ଯେ କେବଳ ତାର ପାଠକମାନଙ୍କୁ ତଯାଇଥାଏ, ତାହା ନୁହେଁ, ସେ ତାର ଲେଖକମାନଙ୍କୁ ମଧ୍ୟ ନୂତନ ଜୀବନ ଦାନ କରିଥାଏ । ଉଭୟ ପାଠକ ଓ ଲେଖକଙ୍କ ପାଇଁ ଗଳ୍ପ ଯେମିତ ତାର ବନ୍ଧୁତ୍ୱର ସ୍ୱୀକୃତ ହସ୍ତ ପ୍ରସାରିତ କରି-ପାରିଛି—ତାହା ଉଲ୍ଲେଖଯୋଗ୍ୟ । ଏଇ ଗପ ବାସ୍ତବଧର୍ମୀ ହୋଇ ଆମ ମସ୍ତିଷ୍କର ବାମସ୍ତରରୁ ଯଦ ଉଦ୍ଭବ ହେଲା, ତାହାହେଲେ ଆମେ ଅବଶ୍ୟ ଖୁସି ହେବୁ । କିନ୍ତୁ ଏହା ଯଦ ମସ୍ତିଷ୍କର ଡାହାଣ ସ୍ତରରୁ ଜାତ ହୋଇ ଆମମା ଗପପଣ କଳ୍ପନା-ପ୍ରଧାନ ହୋଇଗଲା, ତାହାହେଲେ ମଧ୍ୟ ଆମେ କଦାପି ଦୁଃଖିତ ହେବୁ ନାହିଁ; କାରଣ ପକ୍ଷୀ କଥା ଦ୍ୱାରା ମଧ୍ୟ ଆମର ବ୍ୟକ୍ତିଗତ ତଥା ସାମାଜିକ ଜୀବନ ଉନ୍ନତ ହୋଇପାରୁଛି । ପ୍ରକୃତରେ କହିବାକୁ ଗଲେ; ଗପକୁ ବାସ୍ତବଧର୍ମୀ ଓ କଳ୍ପନାଧର୍ମୀ—ଏମିତ ଦୁଇ ସ୍ତରରେ ବର୍ଗୀକରଣ କରିବାରେ ବିଶେଷ ଯଥାର୍ଥତା ନାହିଁ । ଯଥାର୍ଥତା ଏଇ ଦୃଷ୍ଟିରୁ ନାହିଁ ଯେ, ବିଲେଇ ଯଦ ଠିକ୍ ମୂଷା ଧରୁଛି, ତାହାହେଲେ ବିଲେଇର ରଙ୍ଗ କଳା କି ଧଳା, ତାର ଉପରେ ଦୀର୍ଘ ଆଲୋଚନା କରି ମୁଣ୍ଡ ଖରାପ କରିବାକୁ ବୁଦ୍ଧିମନ୍ତ ଲୋକ ପସନ୍ଦ କରିବେ ନାହିଁ ।



# ଜଳର ଜୀବନ ରୂପ ଧାରଣ

୧୯୮୮ ସାଲ ମାର୍ଚ୍ଚ ମାସରେ ସୂଚନା ବିଜ୍ଞାନର ଜନୈକ ପଦାଧିକାରୀ ଶ୍ରୀଯୁକ୍ତ ପ୍ରଶାନ୍ତ ପାଣ୍ଡେୟଙ୍କର ଶୁଭପରିଣୟ ରୁଦ୍ରପୁରର ଗ୍ରାଜୋଟ ନିକଟସ୍ଥ ନୂଆଗଡ଼ ଠାରେ ଅନୁଷ୍ଠିତ ହୋଇଥିଲା । ଶ୍ୱଶୁରାଳୟକୁ ଯିବାବେଳେ ତାଙ୍କ ସ୍ତ୍ରୀ ଯୌତୁକସ୍ୱରୂପେ ସ୍କୁଟର, ରଙ୍ଗୀନ୍ ଟେଲିଭିଜନ ସେଟ୍ ଇତ୍ୟାଦି ଅଜଣାଳିର ସାମଗ୍ରୀ ସାଥିରେ ନେଇଥିବ ବୋଲି ଆମେ ସ୍ୱଠାନ୍ତୁ କହିଦେବା । ଏହାଛଡ଼ା ବ୍ରିଫ୍‌କେଶ୍‌ରେ ନଗଦ ଟଙ୍କା ଏବଂ ମୂଲ୍ୟବାନ ଗହଣାପତ୍ର ମଧ୍ୟ ଶ୍ରୀମାନ୍ ପାଣ୍ଡେୟଙ୍କ ପରି ଏକ ପଦାଧିକାରୀଙ୍କୁ କନ୍ୟା ପକ୍ଷରୁ ଦିଆଯାଇଥିବ ବୋଲି ସାଧାରଣ ଲୋକେ ବିଶ୍ୱାସ କରୁଥିବେ । କିନ୍ତୁ ପ୍ରକୃତରେ ଏହି ବିବାହ ଅବସରରେ ଏକ ଅଜବ ଧରଣର ଯୌତୁକ ଦିଆଯାଇଥିଲା । କନ୍ୟାଟି ଟିଭି, ସ୍କୁଟର, ନଗଦ ଟଙ୍କା ବା ସୁନାର ଅଳଙ୍କାର ନେଇ ନ ଥିଲା । ତେବେ ଏହିସବୁ ପଦାର୍ଥ ଠାରୁ ଅଧିକ ମୂଲ୍ୟବାନ ଜିନିଷଟିଏ ସେ ସାଥିରେ ନେଇଥିଲା । ତାହା ହେଉଛି ପାଣି ରଖାଯାଇଥିବା ଦୁଇଟି ଟିଣ ।

ପ୍ରକୃତ ଉତ୍ସ ହେଉଛି ଯେ, ବରଟିର ଘର ଗୁଜୁରାଟର ସୌରାଷ୍ଟ୍ର ଅଞ୍ଚଳରେ । ସେଠାରେ ମରୁଡ଼ି ଲାଗି ରହୁଥିଲା । ଜଳାଭାବରୁ ଲୋକଙ୍କର ଜୀବନ ଦୁର୍ବିସହ ହୋଇଯାଉଥିଲା । ତେଣୁ ବରପିତା ଯେତେବେଳେ ପୁଅର ବିବାହ ସ୍ଥିର କଲେ, ସେତେବେଳେ ସମ୍ବନ୍ଧୀଙ୍କୁ କହିଲେ ଯେ, ତାଙ୍କୁ କିଛି ଯୌତୁକ ଦରକାର ନାହିଁ । କେବଳ ବର୍ଷା ଋତୁ ଆସିବାଯାଏ ଦୈନିକ ଦୁଇଟିଣ ଲେଖାଏଁ ପାଣିଦ୍ୱକଳ ତାଙ୍କ ଘରେ ପହଞ୍ଚାଇଦେଲେ ଯଥେଷ୍ଟ । ଏହି ଯୌତୁକ ଅସ୍ୱାଭାବିକ ହୋଇଥିଲେ ମଧ୍ୟ କନ୍ୟାପକ୍ଷ ଏଥିରେ ରାଜିହୋଇ ଦୈନିକ ବରଘରକୁ ପାଣିଭାର ପଠାଉଥିଲେ !

ଏହି ଘଟଣାଟି ଆଗରୁ ଅସ୍ୱାଭାବିକ ଜଣାପଡ଼େ । କିନ୍ତୁ ଏହା ଜନୈକ ବ୍ୟକ୍ତିକୁ କେନ୍ଦ୍ରକରି ଘଟିଥିବା ଯୋଗୁ ଆମେ ସାମୂହିକ ସ୍ତରରେ ଏଥିପ୍ରତି ଗୁରୁତ୍ୱ ଦେବାକୁ ପଶ୍ଚାତ୍ପଦ ହେଉ । ତେବେ ଇତିହାସର ପୃଷ୍ଠା ଓଲଟାଇଲେ ଜଳ ପାଇଁ ଯେଉଁ ବ୍ୟଗ୍ରତା ପ୍ରକାଶ ପାଇବାର ନମୁନା ରହିଛି, ତାହା ଆମ ଦୃଷ୍ଟି ଆକର୍ଷଣ କରେ ।

ଷ୍ଟ୍ରାଣ୍ଡ୍ ମ୍ୟାଗାଜିନ୍ ନାମକ ଗୋଟିଏ ବ୍ରିଟିଶ୍ ପତ୍ରିକାର ୧୯୦୧ ମସିହା ନଭେମ୍ବର ସଂଖ୍ୟାରେ 'ସାମରିକ ନୂତନତା' ଶୀର୍ଷକ ଏକ ଲେଖା ପ୍ରକାଶ ପାଇଥିଲା । ସେତେବେଳେ ଇଂଲଣ୍ଡ ଦକ୍ଷିଣ ଆଫ୍ରିକା ବିରୁଦ୍ଧରେ ଯୁଦ୍ଧରତ ଥିଲା । ଏହାକୁ ଆଖି ଆଗରେ ରଖି ଜେମ୍ସ ସ୍ମିଥ୍ ନାମକ ଜଣେ ବ୍ୟକ୍ତି ଏକ ନୂତନଧରଣର ଟୋପି ବ୍ୟବହାର କରିବା ପାଇଁ ଉକ୍ତ ପତ୍ରିକା ମାଧ୍ୟମରେ ପରାମର୍ଶ ଦେଇଥିଲେ । ଏହି ଟୋପିର ନାଁ ରଖିଥିଲେ 'ରିଜର୍‌ଭଏର ହ୍ୟାଟ୍' ବା 'ପାଣି ରଖୁଥିବା ଟୋପି' । ଟୋପିଟି ଛତା ପରି ତଳକୁ ଗଡ଼ାଣିଆ ନ ହୋଇ ଛାତ ପରି ଉପରକୁ ଟେକା ହୋଇ ରହୁଥିଲା, ଯାହା ଫଳରେ ତାର ଉପରେ ଯଦି ବର୍ଷାପାଣି ପଡ଼େ, ତେବେ ତାହା ତଳକୁ ଖସି ନଷ୍ଟ ହେବାର ସମ୍ଭାବନା ନ ଥିଲା; ଟୋପି ଉପରେ ତାହା ଜମା ହୋଇ ରହୁଥିଲା ।

ଏମିତି ଗୋଟିଏ ଟୋପି ମୁଣ୍ଡାଇ ଜଣେ ଯାଉଥିବାବେଳେ ଯଦି ବର୍ଷା ହୁଏ, ତାହାହେଲେ ବର୍ଷାପାଣି ତା ଟୋପିରେ ରହିବ । ଏହାଦ୍ୱାରା ତା ମୁଣ୍ଡକୁ ଖରା ଲାଗିଲେ ମଧ୍ୟ ସେ ଚିନ୍ତିତ ହେବ ନାହିଁ; କାରଣ ଜଳସ୍ପର୍ଶରେ ତା ମୁଣ୍ଡ ଥଣ୍ଡା ରହିବ । ପୁଣି ଜେମ୍ସ ସ୍ମିଥ୍ ଏହି ଟୋପିରେ ଅଙ୍ଗାରର ଗୋଟିଏ ବଲୟ ଖଞ୍ଜିଥିବା ଯୋଗୁଁ, ସେଥିରେ ଜମା ହୋଇଥିବା ପାଣି ଛଣି ହୋଇ, ଦମ୍ନରେ ବୋତଲ ପରି ଥିବା ଗୋଟିଏ ଜାଗାରେ ସଞ୍ଚିତ ହେବ । ଯେତେବେଳେ ଟୋପିଧାରୀକୁ ଶୋଷ ହେବ, ସେ ଏଇ ବିଶୋଧିତ ପାଣି ପିଇ ତୃଷା ମେଣ୍ଟାଇବ । ଦକ୍ଷିଣ ଆଫ୍ରିକାର ଉଷ୍ଣ ଜଳବାୟୁରେ ଯୁଦ୍ଧ

କରୁଥିବା ସୈନିକମାନେ ଏହି ଟୋପି ବ୍ୟବହାର କରି ସେତେବେଳେ ଜଳକଷ୍ଟରୁ ରକ୍ଷା ପାଉଥିଲେ ।

ଯାହା ଜଣାଯାଏ, ଜେମ୍‌ସ ଗ୍ଲଚ୍‌ଙ୍କ ପାଣିମାଠିଆ ପରି ଏହି ଟୋପିର ବହୁଳ ପ୍ରସାର ହୋଇପାରି ନ ଥିଲା । କିନ୍ତୁ ଏହି ଟୋପି ସେତେ ଅନାଦରଣୀୟ ହେଉ ନା କାହିଁକି, ଯୁଦ୍ଧ ସମୟରେ ପାନୀୟଜଳ କେତେଦୂର ମହତ୍ତ୍ୱପୂର୍ଣ୍ଣ, ତାହା ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ । ଏହି ଦୃଷ୍ଟିକୋଣରୁ ଜେମ୍‌ସ ଗ୍ଲଚ୍‌ଙ୍କ ଟୋପିର ବର୍ତ୍ତମାନ ଐତିହାସିକ ମୂଲ୍ୟବୋଧ ରହିଛି ।

ପ୍ରକୃତରେ ଉପରୋକ୍ତ ଘଟଣାବଳୀ ଯେମିତି ମରୁଭୂମି ଦେଖାଦେଉଛି ଓ ପାନୀୟ ଜଳ-ଯୋଗାଣ ସମସ୍ୟା ଯେମିତି ଉତ୍କଟ ରୂପ ନେଉଛି, ଆମେ ବାଧ୍ୟହୋଇ ସ୍ୱୀକାର କରୁଛୁ ଯେ, ଜଳର ଅନ୍ୟ ନାମ ଜୀବନ । ଜୀବନ ତୁଳନାରେ ସୁନା, ହୀରା, ନୀଳା ଯେମିତି ତୁଚ୍ଛ, ଜଳ ନିକଟରେ ମଧ୍ୟ ଏମାନଙ୍କର ମୂଲ୍ୟ ସେମିତି ନଗଣ୍ୟ । ଦୁଃଖର ବିଷୟ ଯେ, ଆମେ ଏହି ସତ୍ୟଟି ଉପଲବ୍‌ଧି କରିପାରୁ ନାହୁଁ । କେବଳ ଅଶିକ୍ଷିତ, ଅନୁନ୍ନତ ସମାଜ ନୁହେଁ; ଅତି ଉନ୍ନତ ଓ ସୁଶିକ୍ଷିତ ସମାଜରେ ମଧ୍ୟ ଜଳରୁ ଜୀବନର ମର୍ଯ୍ୟାଦା ଦିଆଯାଉ ନାହିଁ । ଆମେ ଏହି ପ୍ରସଙ୍ଗରେ ଦିଲ୍ଲୀ ନଗରୀ ପ୍ରତି ଦୃଷ୍ଟିଦେବା । ସମସ୍ତେ ଧରି ନିଅନ୍ତୁ ଯେ, ଭାରତର ମସ୍ତିଷ୍କ ହେଉଛି ରାଜଧାନୀ ଦିଲ୍ଲୀ ଏବଂ ସେଠାରେ ସଚେତନ ଓ ଜାଗ୍ରତ ନାଗରିକଙ୍କ ସଂଖ୍ୟା ଶତକଡ଼ା ପ୍ରାୟ ଶହେହିସାବ । ତଥାପି ସେଠାରେ ଜଳଯୋଗାଣ ସମସ୍ୟା କିପରି ଉଦ୍‌ବେଗର କାରଣ ହୋଇପାରେ, ତାହା ନିମ୍ନ ଦୃଷ୍ଟାନ୍ତରୁ ବୁଝି ହେବ ।

୨୮ । ୧୦ । ୧୯୮୮ ତାରି୦ରେ ଦିଲ୍ଲୀ ପ୍ରଶାସନର ମୁଖ୍ୟ କାର୍ଯ୍ୟନିର୍ବାହୀ ଅଧିକାରୀ ଶ୍ରୀ ଜଗ ପରବେଶ ଚନ୍ଦ୍ର ବହୁଳ ସମ୍ବାଦପତ୍ରରେ ଗୋଟିଏ ବିଜ୍ଞାପନ ପ୍ରକାଶ କରିଥିଲେ । ଏଥିରେ ଦଶଲକ୍ଷ ପଚିଶ ହଜାର ଟଙ୍କାର ପୁରସ୍କାର ଘୋଷଣା କରାଯାଇଥିଲା । ଏହା ପଛରେ ମୁଖ୍ୟ କାରଣ ଥିଲା ଜଳ ସମ୍ପଦର ସୁରକ୍ଷା । ବିଜ୍ଞାପନ ମହାଶୟ ଅତି ଉଦ୍‌ବେଗର ସହିତ ଜଣାଇଥିଲେ ଯେ, ଦିଲ୍ଲୀ ନଗରୀରେ ଆଠ ହଜାରଟି ହାଇଡ୍ରେଣ୍ଟ ଦ୍ୱାରା ସର୍ବସାଧାରଣଙ୍କୁ ପିଇବା ପାଣି ଯୋଗାଇ ଦିଆଯାଉଛି । କିନ୍ତୁ ଦେଖାଯାଉଛି ଯେ, ଲୋକମାନେ ଏହି ପାଇପ୍‌ଗୁଡ଼ିକ ବ୍ୟବହାର କରିବା ପରେ ଖୋଲି ଦେଇ ଚାଲିଯାଉଛନ୍ତି କିମ୍ବା ଖଳ ପ୍ରକୃତିର ଲୋକମାନେ ପାଇପ୍‌ମୁଣ୍ଡ ଚୋରିକରି ନେଇ ଯାଉଛନ୍ତି । ଏହାଦ୍ୱାରା ଦୈନିକ କୋଡ଼ିଏଲକ୍ଷ ଗ୍ୟାଲନ ପାନୀୟଜଳ ନଷ୍ଟ ହୋଇ-ଯାଉଛନ୍ତି । ତେଣୁ ଦିଲ୍ଲୀ ପ୍ରଶାସକ ଏହି ପ୍ରକାର ଅସହନୀୟ ଅପଚୟ ରୋକିବାକୁ ଏକ

ନୂତନ ପ୍ରକାର ପାଇପ୍‌ମୁଣ୍ଡ ଉଦ୍‌ଭାବନ କରିବା ପାଇଁ ଆହ୍ୱାନ କରିଥିଲେ । ଏହାର ଗୁଣ ସମ୍ପର୍କରେ ସେ ପୂର୍ବ ସୂଚନା ଦେଇଥିଲେ ।

(୧) ଏହା ଶକ୍ତ ଏବଂ ଦୀର୍ଘସ୍ଥାୟୀ ହେବା ଆବଶ୍ୟକ । ପୁଣି ସେଥିରେ କଳଙ୍କି ଲାଗିବ ନାହିଁ । ଏତଦ୍‌ବ୍ୟତୀତ ଏହା ସୁଲଭ ଦରରେ ନିର୍ମିତ ହେବା ଆବଶ୍ୟକ ।

(୨) ସର୍ବସାଧାରଣ ଏହାକୁ ସହଜରେ ବ୍ୟବହାର କରି ପାରିବେ ।

(୩) ଅବ୍ୟବହୃତ ଅବସ୍ଥାରେ ଥିବାବେଳେ, ସେଥିରୁ ଟୋପାଏ ସୁଦ୍ଧା ପାଣି ଯେପରି ଲିକ୍ ହୋଇ ନଷ୍ଟ ହୋଇ ନ ଯାଏ ।

(୪) ପୁଣି ଦୁର୍ବୃତ୍ତମାନେ ସହଜରେ କିମ୍ବା ଶୀଘ୍ର ଏହାକୁ ପାଇପ୍‌ରୁ ଖୋଲି ନେଇଯାଇ ପାରିବେ ନାହିଁ ।

(୫) ଯଦି ଏହା କୈାଣସି ଭଙ୍ଗିବ କିମ୍ବା ବ୍ୟବହାରକାରୀର ଦାୟିତ୍ୱହୀନତା ଯୋଗୁଁ ଖୋଲି ହୋଇ ରହିଗଲା, ତାହାହେଲେ ସେଥିରେ ଏପରି କିଛି ଅନ୍ତର୍ନିହିତ କୌଶଳ କିମ୍ବା ସ୍ୱଳ୍ପ ଖର୍ଚ୍ଚ ରହିଥିବା ଆବଶ୍ୟକ, ଯାହାକି ତତ୍‌କ୍ଷଣାତ୍ କାର୍ଯ୍ୟକ୍ଷମ ହୋଇପାରିବ ଓ ପାଇପ୍‌ରୁ ଜଳ ନିର୍ଗତ ହେବା ପାଇଁ କୌଣସି ସୁଯୋଗ ଦେବ ନାହିଁ ।

ଉକ୍ତ ପ୍ରଶାସକ ଏହି ଯେଉଁ ବିଜ୍ଞାପନ ଦେଇଛନ୍ତି, ତାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଅସମ୍ଭବ ପରି ମନେ ହେଉଥିବା ଗୋଟିଏ ବିଚିତ୍ର ପାଇପ୍‌ମୁଣ୍ଡ ଉଦ୍‌ଭାବନ । ଏହା ବିଭିନ୍ନ ଗବେଷକ ତଥା ପ୍ରଯୁକ୍ତିବିଦ୍ୟା-ବିଶାରଦଙ୍କ ପାଇଁ ଏକ ଆହ୍ୱାନ । ପ୍ରକୃତରେ ବୈଜ୍ଞାନିକମାନେ ନୂତନ ପ୍ରୟୋଗ ଓ ଯାନ୍ତ୍ରିକ କୌଶଳମାନ ସୃଷ୍ଟି କରିପାରନ୍ତି, ଯାହାକି ଯାଦୁବିଦ୍ୟାଠାରୁ ଅଧିକ ଚମତ୍କୃତ ହୋଇଥାଏ । ତେଣୁ ଏହି ପ୍ରକାର ପାଇପ୍‌ମୁଣ୍ଡ ଉଦ୍‌ଭାବନ କରିବା ହୁଏତ ଅସମ୍ଭବ ହୋଇ ନ ପାରେ । ତେବେ ଜଳସମ୍ପଦର ସୁରକ୍ଷା ପାଇଁ ଏହାଠାରୁ ଆହୁରି ଅଧିକ ଉପାଦେୟ ହେବ—ଲୋକମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିବା । ଏଥିପାଇଁ କେବଳ ଅଶିକ୍ଷିତ ନୁହନ୍ତି, ତଥାକଥିତ ଶିକ୍ଷିତମାନଙ୍କୁ ମଧ୍ୟ ଉଚିତ ପରାମର୍ଶ ଦିଆଯିବା ଆବଶ୍ୟକ ।

ୈ

ଜ ସାଧାରଣତଃ ବିଭିନ୍ନ ସହରକୁ ଜଳଯୋଗାଣ ଜଳଭଣ୍ଡାରରୁ କରାଯାଇଥାଏ । ବାହ ପ୍ରଣାଳୀ ବହୁ ପୁରାତନ ଯୁଗରୁ ପ୍ରଚଳିତ ହୋଇ ଆସୁଛି । ଅତୀତରେ ଏହାର ସ୍ୱାଭ ଅତି ମାତ୍ରାରେ ସିଂହଳରେ କରାଯାଇଥିଲା । ଏକଦା ସେଠାକାର ଜଣେ

ଧିଜା ମନ୍ତବ୍ୟ ଦେଇଥିଲେ, "ଶ୍ରୀଲଙ୍କା ପରି ଗୋଟିଏ ଦେଶରେ ବିନ୍ଦୁଏ ବର୍ଷାପାଣି ମଣିଷର ବ୍ୟବହାରରେ ନ ଲଗି ସମୁଦ୍ରକୁ ଛାଡ଼ିଦେବା ଅନୁଚିତ ।" ଐତିହାସିକମାନେ ଏହି ଉକ୍ତିର ସତ୍ୟତା ବାସ୍ତବ କ୍ଷେତ୍ରରେ ଦେଖିପାଉଛନ୍ତି । ସେଠାକାର ରାଜା ବା ପସ୍ସ ୬୫ରୁ ୧୦୯ ଖ୍ରୀଷ୍ଟାବ୍ଦ ମଧ୍ୟରେ ୧୨ଟି ପୁଷ୍କରିଣୀ ଓ ୧୨ଟି କେନାଲ ଏବଂ ରାଜା ମହାସେନା ୨୭୪ରୁ ୩୦୧ ସାଲ ମଧ୍ୟରେ ୪୬୭୦ ଏକର ବିସ୍ତୃତ ମିନେରି ସମେତ ୧୬ଟି ପୋଖରୀ ନିର୍ମାଣ କରିଥିବା ବିଷୟ ଜଣାପଡ଼େ । ରାଜା ଧାତୁସେନା (୪୬୦-୪୭୮)ଙ୍କ ଶାସନକାଳରେ ୪୦ ଫୁଟ ଚଉଡ଼ା ଓ ୫୪ ମାଇଲ ଲମ୍ବା ଗୋଟିଏ କେନାଲ ଦ୍ୱାରା ତତ୍କାଳୀନ ରାଜଧାନୀ ଅନୁରାଧାପୁରକୁ ଜଳଯୋଗାଣ କରାଯାଉଥିଲା । ଏହାପରେ ପ୍ରଥମ ପରାକ୍ରମ ବାହୁ ନାମକ ରାଜାଙ୍କ ରାଜତ୍ୱକାଳରେ ଜଳସେଚନ ପ୍ରତି ସର୍ବାଧିକ ଧ୍ୟାନ ଦିଆଯାଇଥିଲା । ୧୧୫୩ରୁ ୧୧୮୬ ସାଲ ମଧ୍ୟରେ ସେ ୨୬୦ଟି ପୁଷ୍କରିଣୀ ଓ ୫୩୪ଟି କେନାଲ ନୂତନ ଭାବେ ନିର୍ମାଣ କରିଥିଲେ; ଏତଦ୍‌ବ୍ୟତୀତ ୨୩୦୦ଟି ପୋଖରୀ ଓ ୩୬୨୧ଟି କେନାଲର ପୁନଃନିର୍ମାଣ ଏବଂ ଆବଶ୍ୟକୀୟ ମରାମତି ମଧ୍ୟ କରିଥିଲେ ।

ଶ୍ରୀଲଙ୍କାରେ ବହୁଳସଂଖ୍ୟାରେ ଏହି ଯେଉଁ ଜଳ-ଯୋଜନାମାନ କାର୍ଯ୍ୟକାରୀ ହୋଇପାରିଥିଲା, ଏହାର ମୂଳ କାରଣ ଥିଲା ପ୍ରଜାମାନଙ୍କର ଅକୁଣ୍ଠ ସହଯୋଗ । ଫସଲ ଅମଳ ହୋଇସାରିବା ପରେ କୃଷକ ଓ ଶ୍ରମିକମାନେ ଘରେ ଅଳସୁଆ ଭାବେ ବସି ନ ରହି ବିଭିନ୍ନ ଜଳଭଣ୍ଡାରର ନିର୍ମାଣ ଓ ପୁନରୁଦ୍ଧାର କାର୍ଯ୍ୟରେ ସ୍ୱତଃସ୍ଫୂର୍ତ୍ତ ଭାବେ ଲାଗିପଡ଼ୁଥିଲେ ଏବଂ ଏହା ଏକ ମହତ ରାଜକାର୍ଯ୍ୟ ବୋଲି ମନେ କରୁଥିଲେ । ପ୍ରକୃତରେ ଶ୍ରୀଲଙ୍କାର ଅସହଯୋଗୀ ଜଳବାୟୁରେ ନଦୀବନ୍ଧ ଯୋଜନାର ପ୍ରୟୋଜନୀୟତା ଅତ୍ୟନ୍ତ ଜରୁରୀ । ବିଶେଷତଃ ଏହି ଦ୍ୱୀପର ଦକ୍ଷିଣ-ପୂର୍ବାଂଶ ଅଞ୍ଚଳରେ ବୃଷ୍ଟିପାତ ନଗଣ୍ୟ ହୋଇଥିବା ଯୋଗୁ ଫସଲ ଉତ୍ପାଦନ ପାଇଁ ଜଳଭଣ୍ଡାର ନିର୍ମାଣ କରିବା ଅପରିହାର୍ଯ୍ୟ ଥିଲା ।

କିନ୍ତୁ ଅତୀତର ଏହି ମହତ୍ତ୍ୱପୂର୍ଣ୍ଣ ଜଳପ୍ରକଳ୍ପଗୁଡ଼ିକ ବର୍ତ୍ତମାନ ପ୍ରାୟ ଧ୍ୱଂସପ୍ରାପ୍ତ ଅବସ୍ଥାରେ ଲୋକଲୋଚନର ଅଗୋଚରରେ ରହିଛି । ୧୮୪୮ ମସିହାରେ ସାର୍ ଜେମ୍ସ ଏମେରସନ ଟେନାଣ୍ଟ ନାମକ ଜଣେ ବ୍ରିଟିଶ ଲେଖକ ଓ ଭ୍ରମଣକାରୀଙ୍କ ଦୁଃସାହସିକ ଅଭିଯାନ ଯୋଗୁ ପଦାର୍ଥ ନାମକ ବିଶାଳ ପୋଖରୀର ଧ୍ୱଂସାବଶେଷ ଯେତେବେଳେ ଘଞ୍ଚ ଜଙ୍ଗଲ ମଧ୍ୟରେ ଆବିଷ୍କୃତ ହେଲା, ସେତେବେଳେ ଲୋକମାନେ ପୁରାତନ ସିଂହଳୀ ଶାସକମାନଙ୍କର ଅଦ୍‌ଭୁତ ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ ସମ୍ପର୍କରେ ପ୍ରକୃତ ପରିଚୟ ପାଇଲେ । ବାସ୍ତବିକ ଏହି ଚିରସ୍ମରଣୀୟ ରାଜାମାନଙ୍କ କେତେକ

ଐତିହାସିକ ଭକ୍ତିନଗର-ନଙ୍ଗଲ୍ ବୋଲି ଆଖ୍ୟା ଦେଇଛନ୍ତି । ସୌଭାଗ୍ୟବଶତଃ ଏହି ସଂହୁଳୀଠସ୍ତୀ ରୂଜାମାନେ ଅନେକ ଆଧୁନିକ ଶାସକଯାନଙ୍କର ପଥପ୍ରଦର୍ଶକ ହୋଇ ରହିଛନ୍ତି । ଏହି ପ୍ରସଙ୍ଗରେ ଭାରତର ପ୍ରଧାନମନ୍ତ୍ରୀ ସ୍ୱର୍ଗତ ନେହେରୁଙ୍କ କଥାସୂତ୍ରରେ ବୁଝାଯାଇପାରେ କାରଣ ସେ ବୃହତ୍ ନଦୀ-ଜଳ-ପ୍ରକଳ୍ପକୁ ଏହି ଯୁଗର ମନ୍ଦିର ବୋଲି ଆଖ୍ୟା ଦେଇଥିଲେ ।

ଆମେ ବର୍ତ୍ତମାନ ଆମ ରାଜ୍ୟର ହୀରାକୁଦ ନଦୀବନ୍ଧ ପରି ଏକ ବହୁମୁଖୀ ଯୋଜନା ପ୍ରତି ଦୃଷ୍ଟି ଦେବା ଓ ଏହା ମନ୍ଦିର ପରି କେତେଦୂର ଆମର ମଙ୍ଗଳକାମନା କରୁଛି, ତାହା ଆଲୋଚନା କରିବା । ଏହି ବନ୍ଧର ଦୈର୍ଘ୍ୟ ୩୬୫୧ ମିଟର ଓ ଉଚ୍ଚତା ପ୍ରାୟ ୬୦ ମିଟର । ଏହି ବିଶାଳକାୟ ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇଥିବା ହୀରାକୁଦ, ଟିକରପଡ଼ା ଓ ନରାଜ ବନ୍ଧ ଦ୍ୱାରା ୧.୫ ଲକ୍ଷ ହେକ୍ଟର ଜମିରେ ଜଳସେଚନ କରାଯାଉଛି ଏବଂ ୧୬୦ ମେଗାୱାଟ ବିଦ୍ୟୁତ୍‌ଶକ୍ତି ଉତ୍ପାଦିତ ହେଉଛି । ହୀରାକୁଦଠାରେ ନିର୍ମିତ ଆଲୁମିନିୟମ୍ କାରଖାନା, ବ୍ରଜରାଜନଗରର କାଗଜକଳ, ରାଜଗାଙ୍ଗପୁରର ସିମେଣ୍ଟ ଓ ରାଉରକେଲାସ୍ଥିତ ଇସ୍ପାତ କାରଖାନାକୁ ଏହା ବିଦ୍ୟୁତ୍‌ଶକ୍ତି ଯୋଗାଉଛି । ମହାନଦୀ ଉପତ୍ୟକାକୁ ବନୀକରଣ କରାଯାଇ ମୃତ୍ତିକା-କ୍ଷୟ ରୋକାଯାଇ ପାରିଛି । ଏତଦ୍‌ବ୍ୟତୀତ ବନ୍ୟା ନିୟନ୍ତ୍ରଣ ସମେତ ମତ୍ସ୍ୟଚାଷ ଓ ଜଳପଥରେ ଗମନାଗମନ ତଥା ପରିବହନ ଏହାଦ୍ୱାରା ସମ୍ଭବ ହୋଇପାରିଛି । ଓଡ଼ିଶା ପରି ଏକ ଅନଗ୍ରସର ରାଜ୍ୟରେ ବିପୁଳ ପ୍ରାକୃତିକ ସମ୍ପଦର ଯଥାଯଥ ବିନିଯୋଗ ପାଇଁ ଏହି ବହୁମୁଖୀ ନଦୀ-ଯୋଜନା ଅତ୍ୟନ୍ତ ସହାୟକ ।

ଭାରତର ଏହି ବୃହତ୍ ଜଳ-ପ୍ରକଳ୍ପଟି ଆମ ରାଜ୍ୟରେ ଥିବା ଯୋଗୁ ଆମେ ଗର୍ବିତ ଏବଂ ଭବିଷ୍ୟତର ଉଜ୍ଜ୍ୱଳ ସ୍ୱପ୍ନରେ ବିଭୋର ମଧ୍ୟ । ମନେ ମନେ ମଧ୍ୟ ଭାବୁ ଯେ, ଏମିତି ଆଉ କେତୋଟି ଯୋଜନା ଓଡ଼ିଶାରେ ଥିଲେ, ଧନଧାନ୍ୟରେ ରାଜ୍ୟ ପୂର୍ଣ୍ଣ ହୋଇଯାଆନ୍ତା । କିନ୍ତୁ ନିକଟ ଅତୀତରେ ରାଜ୍ୟ ବିଜ୍ଞାନ ଓ ପରିବେଶ ପରିଷଦ ତରଫରୁ ଆୟୋଜିତ ହୋଇଥିବା ଏକ ଆଲୋଚନା-ଚକ୍ରରେ ଏହାର ବିରୁଦ୍ଧରେ କେତେଜଣ ବିଶେଷଜ୍ଞ ମତ ପ୍ରକାଶ କରିଥିଲେ । ଜଣାଯାଏ ଯେ, ଇବ୍ ନଦୀର ଜଳ ହୀରାକୁଦ ଜଳଭଣ୍ଡାରରେ ପ୍ରବେଶ କରି ଅଲକାଲାଇନ ସ୍ଥିତି ସୃଷ୍ଟି କରୁଥିବା ଯୋଗୁ ବନ୍ଧରେ ଫାଟ ଦେଖା ଦେଇଛି, ଯାହାକି ଦିନେ କଟକ ସହର ପ୍ରତି ବିପଦର କାରଣ ହୋଇପାରେ । ଏତଦ୍‌ବ୍ୟତୀତ ହୀରାକୁଦ ଜଳଭଣ୍ଡାର ନିର୍ମିତ ହେବା ପରେ ପାଟଣାଗଡ଼, ଟିଟିଲାଗଡ଼ ଓ ପଦ୍ମପୁର ସବ୍‌ଡିଭିଜନରେ ବର୍ଷାପାତ ଆଉ ପୂର୍ବପରି ନିର୍ଭରଯୋଗ୍ୟ ହୋଇପାରୁ ନାହିଁ । ଫଳରେ ସେଠାରେ ବନ୍ୟା ଓ ମରୁଡ଼ିର ପ୍ରକୋପ ବୃଦ୍ଧି ପାଇଲାଣି ।

ଏହି ଆଲୋଚନା-ଚକ୍ର ରେ ଅଂଶ ଗ୍ରହଣ କରିଥିବା ଅଷ୍ଟ୍ରୋନମୀ ବିଭାଗର ଜଣେ ପ୍ରଫେସର ମତ ବ୍ୟକ୍ତ କରିଥିଲେ ଯେ, ହୀରାକୁଦ ବନ୍ଧର ଅନୁମାନ ୧୦୭ ବର୍ଗ-କିଲୋମିଟର ବ୍ୟାପୀ ଏକ ବିଶାଳ ପରିମିତ ଭୂସ୍ଥଳ ଅଧିକାର କରିଥିବା ଯୋଗୁ, ଏହାକୁ ଏକ ମନୁଷ୍ୟକୃତ ହ୍ରଦ ବୋଲି ବିବେଚନା କରାଯାଇପାରେ । ତେଣୁ ଖରା ଦିନେ ଜଳଭଣ୍ଡାରର ନିକଟରେ ପ୍ରଚୁର ପରିମାଣର ଜଳୀୟବାଷ୍ପ ସୃଷ୍ଟି ହୋଇଥାଏ । ଏହି ବାଷ୍ପ ସନ୍ନିକଟବର୍ତ୍ତୀ ଅଞ୍ଚଳରେ ଥିବା ବରଗଡ଼ ସିମେଣ୍ଟ କାରଖାନାର କ୍ୟାଲସିୟମ୍ ଓ ମ୍ୟାଗ୍ନେସିଅମ୍ ଧୂଳି ତଥା ରାଉରକେଲାସ୍ଥିତ ବିଭିନ୍ନ କାରଖାନାର ପାଉଁଶ ମିଶିଥାଏ, ଯାହାଦ୍ୱାରା ସେଠାରେ ପ୍ରବାହିତ ଦକ୍ଷିଣ ପଶ୍ଚିମ ମୌସୁମୀବାୟୁ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୁଏ । ଫଳରେ ଏହି ମୌସୁମୀବାୟୁ ଦିଗ ପରିବର୍ତ୍ତନ କରି ମଧ୍ୟପ୍ରଦେଶ ଆଡ଼କୁ ଚାଲିଯାଏ । ଏହି କାରଣରୁ ପଶ୍ଚିମାଞ୍ଚଳରେ ମରୁଡ଼ିର ସମ୍ଭାବନା ଅଧିକ ଦେଖାଦେଉଛି ।

ଆମ ପ୍ରଦେଶରେ ହୀରାକୁଦ ବ୍ୟତୀତ ଉପର କୋଲାବ, ଚଉଭୋଣ୍ଡା, ପୋଟେରୁ ଓ ଉପର ଇନ୍ଦ୍ରାବତୀ ଜଳଭଣ୍ଡାର ନିର୍ମିତ ହୋଇଛି । କିନ୍ତୁ ଏହି ଯୋଜନାମାନ କାର୍ଯ୍ୟକାରୀ କରିବାକୁ ବିସ୍ତୃତ ଘନଜଙ୍ଗଲକୁ ନିର୍ଦ୍ଦୟଭାବେ କାଟି ସଫା କରିବାକୁ ପଡ଼ିଥିଲା । ଫଳରେ କୋରାପୁଟ ଜିଲ୍ଲାର ଜଳବାୟୁରେ କ୍ଷତିକାରକ ପରିବର୍ତ୍ତନ ଦେଖାଦେଉଛି ।

ଜଳଭଣ୍ଡାରର ନିର୍ମାଣଯୋଗୁ କେବଳ ଜଳବାୟୁରେ ପରିବର୍ତ୍ତନ ଘଟି ନ ଥାଏ; ଭୂମିକମ୍ପ ମଧ୍ୟ ବେଳେବେଳେ ସୃଷ୍ଟି ହୋଇଥାଏ । ଏହାକୁ ଭୂତତ୍ତ୍ୱବିତ୍‌ମାନେ ଜଳଭଣ୍ଡାରଜନିତ ଭୂକମ୍ପନ (ରିଜର୍ଭଏର୍ ଇଣ୍ଡ୍ୟୁସଡ୍ ସେସ୍‌ମିସିଟି ବା ଆର୍ଆଇଏସ୍) ବୋଲି କହିଥାନ୍ତି । ମହାରାଷ୍ଟ୍ରର କୋୟନାନଗରରେ ୧୧ । ୧୨ । ୧୯୬୭ ତାରିଖର ପ୍ରତ୍ୟୁଷରେ ଯେଉଁ ଭୟାବହ ଭୂମିକମ୍ପ ଘଟିଥିଲା, ତାର ମୁଖ୍ୟ କାରଣ ହେଉଛି ନିକଟସ୍ଥ ଶିବାଜୀ ସାଗର ଜଳଭଣ୍ଡାରର ପ୍ରଭାବ । ରିକ୍ଟର ସ୍କେଲରେ ଏହି ଭୂକମ୍ପର ପରିମାଣ ଥିଲା ୭.୩ । ସାଧାରଣତଃ ଏହି ସଂଖ୍ୟା ୭ରୁ ଅଧିକ ହେଲେ ଭୂମିକମ୍ପକୁ ଶକ୍ତିଶାଳୀ ବୋଲି ପରିଗଣିତ କରାଯାଏ । ତେଣୁ ଜଳଭଣ୍ଡାରର ନିର୍ମାଣଯୋଗୁ ଯେ ଭୟଙ୍କର ଭୂମିକମ୍ପ ସୃଷ୍ଟି ହୋଇପାରେ, ଏହା ହେଉଛି ତାର ଏକ ନମୁନା । ଏହାଦ୍ୱାରା ଦୁଇଶହ ଜଣ ପ୍ରାଣ ହରାଇଥିଲେ ଓ ୧୫୦୦ରୁ ଅଧିକ ବ୍ୟକ୍ତି ଆହତ ହୋଇଥିଲେ । ପୁଣି କୋୟନାନଗରର ଶତକଡ଼ା ଅଶୀଭାଗ ବାସଗୃହ ଧ୍ୱଂସପ୍ରାପ୍ତ ହୋଇଯାଇଥିଲା ।

ଏହି ପ୍ରକାର ଭୂକମ୍ପ କେବଳ ଭାରତରେ ନୁହେଁ; ଅନ୍ୟ ଦେଶମାନଙ୍କରେ ମଧ୍ୟ ଘଟିଛି । ଇଟାଲୀର ଭେଜୋଣ୍ଟ ନଦୀରେ ନିର୍ମିତ ହୋଇଥିବା ଡ୍ୟାମ୍ ଯୋଗୁ ୯ । ୧୦ । ୧୯୬୩ ତାରିଖରେ କୋୟନାନଗରଠାରୁ ଅଢ଼େଇ ଅଧିକ ଭୟଙ୍କର

ଭୂମିକମ୍ପ ହୋଇଥିଲା, ଯାହାଦ୍ୱାରା କୋନ୍ନାରନ ସହରର ଦୁଇହଜାର ବ୍ୟକ୍ତି ମୃତ୍ୟୁବରଣ କରିଥିଲେ । ଅବଶ୍ୟ ଏଠାରେ ସୂଚାଇ ଦିଆଯାଇପାରେ ଯେ, କେବଳ ବୃହତ୍ ଜଳଭଣ୍ଡାରମାନ ସ୍ଥାନବିଶେଷରେ ଭୂମିକମ୍ପ ଜାତ କରାଇବାକୁ ସକ୍ଷମ । ଅର୍ଥାତ୍ ଯଦି ଜଳଭଣ୍ଡାରରେ ଜଳସ୍ତମ୍ଭର ଉଚ୍ଚତା ୧୦୦ ମିଟରରୁ ଅଧିକ ହୁଏ କିମ୍ବା ସଞ୍ଚିତ ଜଳରାଶିର ପରିମାଣ ଏକ ଘନ କିଲୋମିଟରରୁ ଊର୍ଦ୍ଧ୍ୱ ହୁଏ ତାହାହେଲେ ନିକଟବର୍ତ୍ତୀ ଅଞ୍ଚଳରେ ଭୂମିକମ୍ପର ସମ୍ଭାବନା ଦେଖାଦିଏ । ତେଣୁ ବୃହତ୍ ଜଳଭଣ୍ଡାରଗୁଡ଼ିକର ସୁଫଳ ଅପେକ୍ଷା କୁଫଳ ଅଧିକ ହୋଇପାରେ ବୋଲି ବର୍ତ୍ତମାନ ବିଶେଷଜ୍ଞମାନେ ଆଶଙ୍କା ପ୍ରକାଶ କଲେଣି ।

ଅନେକ ସମୟରେ ଭୂଗର୍ଭରେ ଦୁଇ ପ୍ରକାର ଭିନ୍ନ ଭିନ୍ନ ପ୍ରସ୍ତର-ସ୍ତରର ମିଳନ ଘଟିଥାଏ । ତେଣୁ ଯଦି ଦୈବାତ୍ ଏହି ସଂଯୋଗ-ସ୍ଥଳରେ ଜଳଭଣ୍ଡାର ନିର୍ମିତ ହୁଏ, ତାହାହେଲେ ଭୂମିକମ୍ପର ସୂତ୍ରପାତ ହୁଏ । ଏହି ଦୃଷ୍ଟିରୁ ଓଡ଼ିଶାର ବ୍ରାହ୍ମଣୀ ନଦୀରେ ଡିସେମ୍ବର ୧୯୮୫ରେ ଆରମ୍ଭ କରାଯାଇଥିବା ରେଙ୍ଗାଲି ଯୋଜନା ସମ୍ପର୍କରେ ଚିନ୍ତା କରାଯାଉ । ନିର୍ମାଣର ଉଦ୍‌ଘାଟନ ବ୍ୟବଧାନରେ ୧୯୮୬ ସାଲ ଜାନୁଆରୀ ୧୦ ତାରିଖରେ ତାର ନିକଟବର୍ତ୍ତୀ ଅଞ୍ଚଳରେ କିଛି ସମୟ ପାଇଁ ଭୂପୃଷ୍ଠ ଥରି ଉଠିଥିଲା ।

ବୃହତ୍ ଜଳଭଣ୍ଡାର ବିରୁଦ୍ଧରେ କେତେକ ବିଶେଷଜ୍ଞ ଏହି ଯେଉଁ ମତ ପୋଷଣ କରୁଛନ୍ତି, ସେହି ବିଷୟରେ ଅନ୍ତିମ ସିଦ୍ଧାନ୍ତରେ ଉପନୀତ ହେବା ପୂର୍ବରୁ ଅଧିକ ଗବେଷଣା କରାଯିବା ଉଚିତ । ତଥାପି ସହରବାସୀମାନେ ଜଳଭଣ୍ଡାରରୁ ପ୍ରେରିତ ଯେଉଁ ଗ୍ଲାସେ ଜଳ-ପାଣି ପିଉଛନ୍ତି, ସେଥିପାଇଁ ଭଣ୍ଡାର ନିକଟବର୍ତ୍ତୀ ଅଞ୍ଚଳରେ ଯେ ଭୂମିକମ୍ପ ହୋଇପାରେ କିମ୍ବା ବନ୍ୟା ମରୁଡ଼ି ଦେଖା ଦେଇପାରେ—ଏହା ଗୁରୁତ୍ୱସହ ଭାବିଲେ, ଆମେ ଆଉ ବେପରୁଆଭାବେ ମ୍ୟୁନିସିପାଲିଟି ପାଇପ୍ ଖୋଲି ଛାଡ଼ି ଦେଇ ବହିଯିବାକୁ ଦେବୁ ନାହିଁ । ସେତେବେଳେ ଆମେ ଦିଲ୍ଲୀ ନଗରୀର ପ୍ରଶାସକ ଶ୍ରୀ ଜଗ ପରବେଶ ଚନ୍ଦ୍ରଙ୍କ ବିଜ୍ଞାପନର ମହତ୍ତ୍ୱ ବୁଝିବୁ ।

ଭୂପୃଷ୍ଠରେ ଜଳଭଣ୍ଡାର ନିର୍ମାଣ କ୍ଷେତ୍ରରେ ଏମିତି ଅସୁବିଧା ଦେଖା ଦେଉଥିବା ଯୋଗୁଁ ଆମ ଜଳଯୋଜନାମାନ ଦେଶର ଚତୁର୍ଦ୍ଦିଗରେ ସମାନଭାବେ କାର୍ଯ୍ୟକାରୀ କରାଯାଇପାରୁ ନାହିଁ । ତେଣୁ ସମସ୍ତଙ୍କର ତୃଷା ମେଣ୍ଟାଇବା ପାଇଁ ଅନ୍ୟ ପନ୍ଥା ଗ୍ରହଣ କରିବା ଆବଶ୍ୟକ ହେଉଛି । ଏହି କାରଣରୁ ଭୂତଳରେ ଥିବା ଜଳ ପ୍ରତି ଆମେ ଅଧିକ ଦୃଷ୍ଟି ଦେବା ଉଚିତ ହେବ । ଭୂତତ୍ତ୍ୱବିତ୍‌ମାନେ ଜାଣିପାରିଛନ୍ତି ଯେ, ଭୂଗର୍ଭର କେତେକ ସ୍ଥାନରେ ଦୁଇଟି କଠିଣ ଶିଳା ପ୍ରସ୍ତର ମଧ୍ୟରେ ଛିଦ୍ରଯୁକ୍ତ କୋମଳ ପଥରର

ପୂର ଥାଏ । ଅନେକ ସମୟରେ ବର୍ଷା-ପାଣି ଏହି କୋମଳ ପଥର ମଧ୍ୟରେ ସଞ୍ଚିତ ହୋଇ ରହିଥାଏ । ବେଳେବେଳେ ପ୍ରବଳ ଚାପ ଯୋଗୁ ଏହା ଭୂପୃଷ୍ଠର ଦୁର୍ବଳ ଅଂଶକୁ ବିଦୀର୍ଣ୍ଣ କରି ଉପରକୁ ଉଠିଥାଏ । ନଚେତ୍ କୃତ୍ରିମ ଉପାୟରେ ନଳକୂପ ଦ୍ୱାରା ଏହି ପାଣି ଆମେ ଉତ୍ତୋଳନ କରିଥାଉ । ଭୂଗର୍ଭସ୍ଥ ଏହି ଜଳଭଣ୍ଡାରକୁ ଆମେ ଏକ୍ୱିଫେର ବୋଲି କହୁ । ସୌଭାଗ୍ୟବଶତଃ ମିଶର ଓ ଇସ୍ରାଏଲ ଦେଶର ମରୁଭୂମିର ନିମ୍ନରେ ପ୍ରାୟ ୬୭୦ ବିଲିଅନ୍ ଘନଗଜ ପରିମାଣର ମଧୁରଜଳ ଏମିତ ଏକ ଏକ୍ୱିଫେରରେ ସଞ୍ଚିତ ଅଛି । ଏତଦ୍‌ବ୍ୟତୀତ ସାହାରା ମରୁଭୂମିର ତଳେ ଏହାଠାରୁ ଅନେକ ଅଧିକ ବୃହଦାକାର ଏକ୍ୱିଫେର ରହିଛି । ଏଥିରୁ ମନେହୁଏ, ପ୍ରକୃତିର ପ୍ରଚ୍ଛନ୍ନ ଆଶୀର୍ବାଦ ମାନବ ସମାଜ ପ୍ରତି ରହିଛି । ସେ ଯାହାହେଉ, ଏହି ଭୂତଳ ଜଳର ସହଯୋଗରେ ଇସ୍ରାଏଲର ନେଗେଭ ମରୁ ଅଞ୍ଚଳ ଶସ୍ୟଶ୍ୟାମଳା ହୋଇପାରିଛି ।

କେବଳ ଭୂସ୍ତର ନୁହେଁ; ଜଳସ୍ତରରେ ମଧ୍ୟ ଏକ୍ୱିଫେର ପରିଦୃଷ୍ଟ ହୁଏ । ବ୍ରିଟେନ, ଆୟର୍ଲଣ୍ଡ ଓ ଯୁକ୍ତରାଷ୍ଟ୍ର ଅନେକଥର ଦକ୍ଷିଣ-ପୂର୍ବ ସମୁଦ୍ର ସ୍ତରରେ ଏପରି ମଧୁର ଜଳଥିବା ଜଳଭଣ୍ଡାର ସମୁଦ୍ରଯାତ୍ରୀଙ୍କ ପାଇଁ ଏକ ସୁସମ୍ବାଦ । ତେବେ କବି, ଯେତେବେଳେ କବି କଲେରିଜ ନାବିକମାନଙ୍କର ଦୁଃଖଦୁର୍ଦ୍ଦଶା ବର୍ଣ୍ଣନା କରିବାକୁ ଯାଇ 'ଏନସିଏଣ୍ଟ ମ୍ୟାରିନର' କବିତାରେ ଲେଖିଥିଲେ ।

"Water, Water, everywhere, And all the boards did shrink, Water, Water,everywhere, Nor any drop to drink"

ସମୁଦ୍ରର ଅପାର ଜଳରାଶି ମଧ୍ୟ ହାଲପାହାନ୍ତାରେ ଥିଲେ ଭୁଖା, ତୃଷାର୍ତ୍ତ ନାବିକମାନେ ଅସହାୟ ଭାବେ ଲୁହ ଗଡ଼ାଉଥିବେ ସିନା; ସେଥିରୁ ଟୋପାଏ ପାଣି ପାଟିରେ ଦେଇପାରିବେ ନାହିଁ । କିନ୍ତୁ ସେମାନେ ଯଦି ଏକ୍ୱିଫେର ଥିବା ସମୁଦ୍ର-ସ୍ତରରେ ଯାତ୍ରା କରୁଥିବେ, ତାହାହେଲେ ମନ ସନ୍ତୁଷ୍ଟ ହେବାଯାଏଁ ସମୁଦ୍ର ପାଣି ପିଇ ପାରିବେ ଏବଂ କବି କଲେରିଜଙ୍କ କବିତାରେ ବର୍ଣ୍ଣିତ ଦୁଃଖ ଦୁର୍ଦ୍ଦଶାର ସ୍ୱର ଯଥେଷ୍ଟ ମ୍ଳାନ ହୋଇଯିବ ।

ପ୍ରକୃତ ରହସ୍ୟ ହେଉଛି ଯେ, ସମୁଦ୍ରତଳସ୍ଥିତ ଭୂସ୍ତରର ଗର୍ଭରେ ମଧ୍ୟ ଏକ୍ୱିଫେର ଅଛି । ଏଥିରେ ମଧୁର ବର୍ଷାଜଳ ସଞ୍ଚିତ ହୋଇ ରହିଛି । ସମୁଦ୍ରଜଳ ଅପେକ୍ଷା ଏହି ଜଳର ଉତ୍ତାପ ଅଧିକ ଏବଂ ଏଥିରେ ଲବଣାଂଶ କମ୍ ଥିବା ଯୋଗୁଁ, ଏହାର ସାନ୍ଦ୍ରତା କମ୍ ରହେ । ତେଣୁ କୌଣସି କାରଣରୁ ସେଠାକାର ଭୂସ୍ତରରେ

ଫାଟ କମ୍ପା ଦୁର୍ବଳତା ଦେଖାଦେଲେ ଏହି ମଧୁରଜଳ ପ୍ରବଳ ବେଗର ସହିତ ଊର୍ଦ୍ଧ୍ୱକୁ ଉଠିଆସେ । ଏହାର ସାନ୍ଦ୍ରତା କମ୍ ଥିବା ଯୋଗୁ ଏହା ସମୁଦ୍ରର ଖର ଲୁଣିଆ ପାଣି ସହିତ ନ ମିଶି, ସମୁଦ୍ରଜଳର ଉପରକୁ ଉଠିଆସେ ଓ ସେଠାରେ ନିର୍ମଳ ଅବସ୍ଥାରେ ରହିଥାଏ ! ତେଣୁ ନାବିକମାନେ ଏହି ଅମିଶ୍ରିତ ମଧୁର ପାଣିପିଇ ଜଳ ତୃଷା ମେଣ୍ଟାଇ ପାରବେ । ଏହି ପ୍ରକାର ପାନୀୟଜଳର ସମ୍ଭାବନା କେବଳ ଆମେରିକା, ବ୍ରିଟେନ, ଅଷ୍ଟ୍ରେଲିଆର ସମୁଦ୍ରରେ ନୁହେଁ; ବାହାରିନ ନିକଟସ୍ଥ ପର୍ସିଆନ୍ ଗଲ୍ଫରେ ମଧ୍ୟ ଅତୀତରେ ଥିଲା ବୋଲି ପଞ୍ଚଦଶ ଶତାବ୍ଦୀର ଐତିହାସିକ ତଥ୍ୟରୁ ଜଣାଯାଏ ।

ଏଠାରେ ଉଲ୍ଲେଖ କରିବା ଉଚିତ ହେବ ଯେ, ସମୁଦ୍ରର ଏହି ବ୍ୟବହାର-ଉପଯୋଗୀ ଜଳରାଶି ଆମର ଆବଶ୍ୟକତା ମେଣ୍ଟାଇବା ପାଇଁ ପର୍ଯ୍ୟାପ୍ତ ନୁହେଁ । କୋଇଲା, ଖଣିଜ-ତୈଳ ଇତ୍ୟାଦି ଭୂଗର୍ଭସ୍ଥ ସମ୍ପଦ ଯେପରି ସୀମିତ ଏବଂ ଆଧୁନିକ ମଣିଷର ଅତ୍ୟଧିକ ବ୍ୟବହାର ଯୋଗୁ ଅତି ଶୀଘ୍ର ନିଃଶେଷ ହୋଇଯିବା ସମ୍ଭବ, ଠିକ୍ ସେମିତି ଏହି ଭୂତଳ ଜଳ କିନ୍ତୁ ସୀମିତ ସମୟ ଯାଏ ଆମ ତୃଷ୍ଣା ମେଣ୍ଟାଇ ପାରିବ ।

ବାସ୍ତବରେ ପିଇବା ପାଇଁ ପାଣି ଅସୀମ ନୁହେଁ । ଏହାର ଉପଯୁକ୍ତ ରକ୍ଷଣାବେକ୍ଷଣ ନ ହେଲେ ଆମ ଜୀବନଯାତ୍ରା ଅସ୍ତବ୍ୟସ୍ତ ହୋଇଯିବ । ବର୍ତ୍ତମାନ ପୃଥିବୀର ଜନସଂଖ୍ୟା ଯାହା, ୨୦୧୦ ଖ୍ରୀଷ୍ଟାବ୍ଦ ବେଳକୁ ତାହା ଦ୍ୱିଗୁଣିତ ହୋଇଯିବ । ସେତେବେଳେ ପାନୀୟଜଳ ସମସ୍ୟା ଅତି ଉତ୍କଟ ହେବ—ବିଶେଷତଃ ମଧ୍ୟପ୍ରାଚ୍ୟ ଓ ଆଫ୍ରିକାରେ । ଏଠାରେ ସ୍ମରଣ କରାଯାଇପାରେ ଯେ, ଜଳାଭାବରୁ ରକ୍ଷା ପାଇବା ପାଇଁ ଆମେ ବ୍ୟକ୍ତିଗତ ସ୍ତରରେ ପାଣିବୋତଲ ପରି ଟୋପି ତିଆରି କରି ପିନ୍ଧିଲେ । କିନ୍ତୁ ଆମ ମୁଣ୍ଡକୁ ଖରା ଲାଗିବ ବୋଲି ଆମେ ଆଉ ତାକୁ ପ୍ରଚଳନ କଲେ ନାହିଁ । ନଦୀର ସ୍ରୋତକୁ ଅଟକାଇ ବୃହଦ୍‌ବୃହ-ଜଳର ଭଣ୍ଡାର ସୃଷ୍ଟି କଲେ; କିନ୍ତୁ ସେଥିରୁ ଭୂମିକମ୍ପ ଓ ପାରିବେଶିକ ସଙ୍କଟ ହେଉଛି ବୋଲି ସେତେ ଆଗ୍ରହ ପ୍ରକାଶ କରୁ ନାହୁଁ । ସମୁଦ୍ରଜଳରୁ ପିଇବା ପାଣି ମିଳିବ ବୋଲି ଜଳଚର ହେଲେ; କିନ୍ତୁ ସମୁଦ୍ରର ଏହି ଲବଣ ପାଣିରେ ଶୋଷ ମେଣ୍ଟିବ ବୋଲି ଆମେ ବିଶେଷ ଆଶାବାନ୍ ନୋହୁଁ । ପରିଶେଷରେ ଯୌତୁକଭାବେ ପାନୀୟଜଳ ମାଗିବା ପାଇଁ ଆମେ ବାଧ୍ୟ ହେବା କି ?

ଭବିଷ୍ୟତରେ ଯୌତୁକ ପ୍ରଥା ରହିବ କି ନାହିଁ, ଆମେ ଜାଣିନାହୁଁ । ଯଦି ରହିବ, ତାହା କେଉଁ ପ୍ରକାରର ହେବ, ଆମେ ନିର୍ଦ୍ଧାର୍ଯ୍ୟ ଭାବେ କହି ପାରିବା ନାହିଁ; କାରଣ ତେତେବର୍ଷ ପୂର୍ବେ ଯୌତୁକରେ ରେଡ଼ିଓ, ସାଇକେଲ ଇତ୍ୟାଦି ମଗାଯାଉଥିଲା । କିନ୍ତୁ

ବର୍ତ୍ତମାନ ଏହା ପୁରୁଣା ହୋଇଗଲାଣି ଏବଂ ଆମେ ରଙ୍ଗୀନ୍ ଟିଂଭି, ସ୍କୁଟର ମାଗୁଛୁ । ତେଣୁ ଏକବିଂଶ ଶତାବ୍ଦୀରେ ଏହି ସାମଗ୍ରୀମାନ କେଉଁ ରୂପ ନେବ, ତାର ଭବିଷ୍ୟବାଣୀ କରିବା କଷ୍ଟସାଧ୍ୟ । କିନ୍ତୁ ପାଣିସୁଲଭ ସମସ୍ୟା ଯେପରି ଉତ୍କଟ ରୂପ ବର୍ତ୍ତମାନ ନେବାକୁ ଯାଉଛି, ସେଥିରୁ ଆମେ ଏକପ୍ରକାର ନିଶ୍ଚିତ ଯେ, ଏକବିଂଶ ଶତାବ୍ଦୀରେ ଯୌତୁକସ୍ୱରେ ଦୁଇ ଟିଣ ପାଣି ମଗାଯିବ । ଏହାଶୁଣି କନ୍ୟାପିତାମାନେ ହୁଏତ ଆନନ୍ଦର ସହିତ ଭାବିବେ ଯେ, ଏଣିକି ଯୌତୁକ ଶସ୍ତା ହୋଇଯିବ । କିନ୍ତୁ ଏହି ଧାରଣା ଠିକ୍ ନୁହେଁ; କାରଣ ସେତେବେଳେ ସୁନାରୁପାଠାରୁ ମଧ୍ୟ ଜଳର ଦାମ୍ ବହୁତ ଅଧିକ ହୋଇଥିବ ।



# ସ୍ୱପ୍ନଜଗତର ପ୍ରାସଂଗିକତା

ପଞ୍ଚଦଶ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଶାର ଶାସକ ଗାଦି ସମ୍ଭାଳିବା ବିଷୟ ନେଇ ବାଦାନୁବାଦ ସୃଷ୍ଟି ହୋଇଥିଲା । ସୂର୍ଯ୍ୟବଂଶୀ ଶାସକ କପିଳେନ୍ଦ୍ର ଦେବ (୧୪୩୫—୧୪୬୭)ଙ୍କ ଉତ୍ତରାଧିକାରୀ ଭାବେ ପୁରୁଷୋତ୍ତମ ଦେବଙ୍କୁ (୧୪୬୭-୧୪୯୭) ମନୋନୟନ କରାଯିବା ଯୋଗୁଁ ଗାଦି ବିସମ୍ବାଦର ସୂତ୍ରପାତ ହେଲା । 'ସରସ୍ୱତୀ ବିଳାସ' ଏବଂ ମୁସଲମାନ ଐତିହାସିକ ଫେରିସ୍ତାଙ୍କ ମତାନୁସାରେ ପୁରୁଷୋତ୍ତମ ଦେବ କପିଳେନ୍ଦ୍ର ଦେବଙ୍କ ପାର୍ବତୀ ଦେବୀନାମ୍ନୀ ଏକ ରକ୍ଷିତା ବ୍ରାହ୍ମଣୀ ସ୍ତ୍ରୀର ସନ୍ତାନ । ତେଣୁ ପୁରୁଷୋତ୍ତମ ଦେବଙ୍କୁ ଉତ୍ତରାଧିକାରୀ କରାଇ ନ ଦେବା ପାଇଁ କପିଳେନ୍ଦ୍ର ଦେବଙ୍କ ଔରସ୍ ଓ ଅଭିନବଗତ ଜ୍ୟେଷ୍ଠପୁତ୍ର ହମ୍ବୀରଦେବ ଚେଷ୍ଟିତ ହେଲେ । କିନ୍ତୁ ସେତେବେଳେ କପିଳେନ୍ଦ୍ର ଦେବ କହିଲେ ଯେ, ପ୍ରଭୁ ଜଗନ୍ନାଥ ତାଙ୍କୁ ସ୍ୱପ୍ନରେ ଆଦେଶ ଦେଇଥିବା ଯୋଗୁଁ ପୁରୁଷୋତ୍ତମ ଦେବଙ୍କ ସପକ୍ଷରେ ସେ ନିଷ୍ପତ୍ତି ନେଲେ । ଏହି ସ୍ୱପ୍ନାଦେଶ ସମ୍ପର୍କରେ ବିସ୍ତୃତ ବିବରଣୀ ମାଦଳାପାଞ୍ଜିରୁ ଜଣାପଡ଼େ । କିନ୍ତୁ ହମ୍ବୀର ଦେବ ଏହି ସ୍ୱପ୍ନବୃତ୍ତାନ୍ତକୁ ଛଳନାପୂର୍ଣ୍ଣ ଓ ଷଡ଼ଯନ୍ତ୍ରମୂଳକ ବୋଲି ବର୍ଣ୍ଣନା କରି ଅସ୍ୱୀକାର କଲେ ଏବଂ ପୁରୁଷୋତ୍ତମ ଦେବଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ସେତେବେଳେ ପ୍ରଜାମାନେ ପୁରୁଷୋତ୍ତମ ଦେବଙ୍କୁ କପିଳେନ୍ଦ୍ର ଦେବଙ୍କ ମନୋନୀତ ଉତ୍ତରାଧିକାରୀ ବୋଲି ନ ଭାବି ସ୍ୱୟଂ ପ୍ରଭୁ ଜଗନ୍ନାଥଙ୍କ ମନୋନୟନ ବୋଲି ଭାବିନେଲେ ଏବଂ ସ୍ୱପ୍ନାଦେଶକୁ ପ୍ରଭୁଙ୍କ ପରୋକ୍ଷ ଆଜ୍ଞା ବୋଲି ଗଭୀର ସମ୍ମାନ ଜଣାଇ ପୁରୁଷୋତ୍ତମ ଦେବଙ୍କୁ ପରିପୂର୍ଣ୍ଣ ଭାବରେ ସାହାଯ୍ୟ ଓ ସହାନୁଭୂତି ଜଣାଇଲେ ।

ଉପରୋକ୍ତ ଘଟଣାରୁ ସ୍ୱପ୍ନର ଜନପ୍ରିୟତା ତଥା କାର୍ଯ୍ୟକାରିତା ବିଷୟରେ ଯଥେଷ୍ଟ ସୂଚନା ମିଳେ । ସେମିତି ପୁରୁଷୋତ୍ତମ ଦେବଙ୍କ କାଞ୍ଚୀ-କାବେରୀ ଅଭିଯାନରୁ ମଧ୍ୟ ସ୍ୱପ୍ନାଦେଶର ଗ୍ରହଣୀୟତା ବିଷୟରେ ଅଧିକ ପ୍ରମାଣ ମିଳେ । କାଞ୍ଚୀ ନାମଧେୟ ରାଜ୍ୟର ରାଜାଙ୍କର ପଦ୍ମାବତୀ ନାମ୍ନୀ ଏକ ସୁନ୍ଦରୀ କନ୍ୟା ଥିଲେ । ପୁରୁଷୋତ୍ତମ ଦେବ ପଦ୍ମାବତୀଙ୍କର ପାଣିଗ୍ରହଣ କରିବାକୁ ଇଚ୍ଛୁକ ଥିଲେ । କିନ୍ତୁ କାଞ୍ଚୀ ରାଜା ପୁରୁଷୋତ୍ତମ ଦେବ ରଥଯାତ୍ରା ସମୟରେ ଛେରାପହଁରା ପରି ଏକ ନୀଚ କାର୍ଯ୍ୟ କରୁଥିବା ଯୋଗୁଁ ଏହି ବିବାହ ପ୍ରସ୍ତାବକୁ ସମର୍ଥନ କଲେ ନାହିଁ । ଏଥିରେ ପୁରୁଷୋତ୍ତମ ଦେବ ଅପମାନିତ ହୋଇ କାଞ୍ଚୀର ରାଜଧାନୀ କାଞ୍ଚି ଉପରେ ଆକ୍ରମଣ କଲେ; କିନ୍ତୁ ପରାଜିତ ହେଲେ । ସେ ଦୁଃଖରେ ଶଯ୍ୟା ପଡ଼ିଥିବା ବେଳେ ସ୍ୱପ୍ନଦେଖିଲେ ଯେ, ପ୍ରଭୁ ଜଗନ୍ନାଥ ତାଙ୍କୁ ଦ୍ୱିତୀୟ ଥର କାଞ୍ଚୀ ଅଭିଯାନ କରିବାକୁ ପ୍ରବର୍ତ୍ତାଉଛନ୍ତି । ବର୍ତ୍ତମାନ ପୁରୁଷୋତ୍ତମ ଦେବ ଉତ୍ସାହିତ ହୋଇ ଦ୍ୱିତୀୟ ଥର ଯୁଦ୍ଧ ଆରମ୍ଭ କଲେ ଏବଂ କାଞ୍ଚୀ ରାଜାଙ୍କୁ ପରାଜିତ କଲେ । କିମ୍ବଦନ୍ତୀ କହେ ଯେ, ଏହି ସମୟରେ ପ୍ରଭୁ ଜଗନ୍ନାଥ ଓ ବଳଭଦ୍ର ଛଦ୍ମବେଶରେ ଘୋଡ଼ା ଉପରେ ବସି ନିଜେ ଯୁଦ୍ଧ ଚଳାଇଥିଲେ । ବିଜୟୀ ହେବା ପରେ ପୁରୁଷୋତ୍ତମ ଦେବ ତତ୍ ପରବର୍ତ୍ତୀ ଛେରାପହଁରା ବେଳେ ପଦ୍ମାବତୀକୁ ବିବାହ କରିଥିଲେ ।

ଏଥିରୁ ଜଣାଯାଏ ଯେ, ସ୍ୱପ୍ନର ସୁଦୂରପ୍ରସାରୀ ପରିଣାମ ରହିଛି । ଏହା କେତେକ ବ୍ୟକ୍ତିବିଶେଷଙ୍କ ଜୀବନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ପୁଣି ସେହି ବ୍ୟକ୍ତିର ସାମାଜିକ ସ୍ଥିତି ଓ ସୁଯୋଗକୁ ନେଇ ଐତିହାସିକ ଘଟଣାବଳୀ ମଧ୍ୟ ସୃଷ୍ଟି ହୋଇଥାଏ । କେତେ ବିଶ୍ୱାସ କରନ୍ତି ଯେ, ସ୍ୱପ୍ନର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ସ୍ୱପ୍ନାବତୀ ଠାକୁରାଣୀ । ସେ ଲୋକଙ୍କୁ ସ୍ୱପ୍ନ ମାଧ୍ୟମରେ ଦେଖାଦେଇ ଆଦେଶ ଦିଅନ୍ତି; କେବଳ ସ୍ୱପ୍ନଦ୍ରଷ୍ଟାଙ୍କୁ ସତର୍କ କରାନ୍ତି ତ, ଅନ୍ୟ ଭାହ୍ୱାରିକୁ ଉପଦେଶ ଦେଇଥାନ୍ତି । ସେମିତି ଯେତେବେଳେ ଭକ୍ତମାନେ ଦେବତାଙ୍କ ନିକଟରେ ଧରଣା ପଡ଼ନ୍ତି, ଦେବତାମାନେ ସନ୍ତୁଷ୍ଟ ହେଲେ ସ୍ୱପ୍ନରେ ଦେଖାଦେଇ ବରଦାନ କରିଥାନ୍ତି । ମତ୍ସ୍ୟ-ପୁରାଣରେ ଏହି ସମ୍ପର୍କରେ ସୂଚନା ଦିଆଯାଇଛି ।

ଆଜିକାଲି ମଧ୍ୟ ଶିକ୍ଷିତମାନଙ୍କ ଉପରେ ସ୍ୱପ୍ନର ପ୍ରଭାବ ବିଭିନ୍ନ ମାତ୍ରାରେ ପଡ଼ୁଛି, ଆମ ଦେଶର ଶାସକ ଦଳର ଜନୈକ ରାଜନେତାଙ୍କ ପୁତ୍ର ନିକଟ ଅତୀତରେ ନିଜ ଦଳର ପ୍ରାର୍ଥୀ ଶ୍ରୀମତୀ ଶୀଲା କାଉଲ୍‌ଙ୍କ ବିରୁଦ୍ଧରେ ନିର୍ବାଚନ ଲଢ଼ିବାକୁ ଅଣ୍ଟା ଭିଡ଼ିବା ବେଳେ ଜଣାଇଥିଲେ ଯେ, ତାଙ୍କର ଜେଜେବାପା ସ୍ୱପ୍ନରେ ଏହି ଆଦେଶ ଦେଇଥିବା ଯୋଗୁଁ ସେ ନିର୍ବାଚନରୁ ଓହରି ଯିବା ପ୍ରଶ୍ନ ଉଠୁନାହିଁ । ତାଙ୍କ ବାପା ଏପରି ଦଳୀୟ

ଶୃଙ୍ଖଳାବିରୋଧୀ କାର୍ଯ୍ୟ ନ କରିବା ପାଇଁ ପ୍ରବର୍ତ୍ତାଇଲେ ମଧ୍ୟ ସେ ସ୍ୱପ୍ନର ଦ୍ୱାହି ଦେଇ ଶୁଣିବାକୁ ନାରାଜ ହୋଇଥିଲେ ।

ସ୍ୱପ୍ନର ଫଳାଫଳ ପ୍ରତି ଏହି ପ୍ରକାରେ ଦୃଢ଼ ବିଶ୍ୱାସ ରଖିବା ପଛରେ ମୁଖ୍ୟ କାରଣ ହେଉଛି ଯେ, ଲୋକେ ସ୍ୱପ୍ନକୁ ଦୈବୀ ବା ଆଧ୍ୟାତ୍ମିକ ଶକ୍ତି ଦ୍ୱାରା ପ୍ରେରିତ ବୋଲି ବିବୁଝନ୍ତି । ଏହାର ମଧ୍ୟ ଐତିହାସିକ ଓ ପୌରାଣିକ ପୃଷ୍ଠଭୂମି ରହିଛି ।

ବିଶିଷ୍ଟ ଗ୍ରୀକ୍ କବି ହୋମରଙ୍କ ଗ୍ରନ୍ଥରେ ଜିଅସ୍ ଦେବତା ସ୍ୱପ୍ନମାନଙ୍କର ମୂଳ କାରଣ ବୋଲି ଉଲ୍ଲେଖ କରାଯାଇଛି । ଇଜିପ୍ଟର ଲୋକମାନେ ସ୍ୱପ୍ନକୁ ଆହୂତ ଓ ଅନାହୂତ—ଏପରି ଦୁଇ ଭାଗରେ ବିଭକ୍ତ କରିଛନ୍ତି । ଆହୂତ ସ୍ୱପ୍ନମାନଙ୍କରେ ସ୍ୱପ୍ନଦ୍ରଷ୍ଟା ଯେଉଁ ଯେଉଁ ବିଷୟରେ ଜାଣିବାକୁ ଚାହେଁ, ଦେବତା ସ୍ୱପ୍ନଦ୍ୱାରା ତାହା ଜଣାଇ ଦିଅନ୍ତି । ବାବିଲନ୍‌ର ସ୍ୱପ୍ନ ବିଷୟକ ଗ୍ରନ୍ଥରେ ଲିପିବଦ୍ଧ ହୋଇଛି ଯେ, କୌଣସି ମନ୍ଦିରରେ ମାଶିର୍ ନାମକ ସ୍ୱପ୍ନ-ଦେବତାଙ୍କୁ ମନାସି ଶୋଇଲେ ସେ ସ୍ୱପ୍ନ ମାଧ୍ୟମରେ ପ୍ରଶ୍ନର ଉତ୍ତର ଦେଇଥାନ୍ତି ।

ବେଳେବେଳେ ଯାଦୁକରମାନେ (ମ୍ୟାଜିସିଏନ୍) ସ୍ୱପ୍ନ ସୃଷ୍ଟି କରିବାରେ ସାହାଯ୍ୟ କରିଥାନ୍ତି । ବ୍ରିଟେନ୍‌ର ଗୋଟିଏ ସଂଗ୍ରହାଳୟରେ ପାପିରସ୍ ନାମକ ଜଣେ ବ୍ୟକ୍ତିର ଚିଠି ସଂରକ୍ଷିତ ହୋଇଛି, ଯେଉଁଥିରେ ଯାଦୁକରମାନେ କେମିତି ଦେବତାଙ୍କୁ ସ୍ୱପ୍ନଦ୍ରଷ୍ଟାର ଶରୀରରେ ପ୍ରବେଶ କରାଇ ସ୍ୱପ୍ନାନ୍ତି—ତାହା ଚିତ୍ରିତ ହୋଇଛି ।

ଅନାହୂତ ସ୍ୱପ୍ନର ସୃଷ୍ଟି ଦେବତାମାନଙ୍କର ଇଚ୍ଛାରୁ ବ୍ୟକ୍ତିବିଶେଷର ମନରେ ଘଟିଥାଏ । କିମ୍ବଦନ୍ତୀ ଅଛି ଯେ ଚତୁର୍ଥ ଥୋଥମି ଇଜିପ୍ଟର ରାଜା ହେବ ବୋଲି ଈଶ୍ୱର ଜଣାଇବା ସଙ୍ଗେ ସଙ୍ଗେ ତାକୁ ଗୋଟିଏ ଧ୍ୱଂସପ୍ରାପ୍ତ ମନ୍ଦିରର ପୁନରୁଦ୍ଧାର କରିବାକୁ ଆଦେଶ ଦେଇଥିଲେ । ସେମିତି ସାଟନ୍‌କୁ ଅତି ଆଶ୍ଚର୍ଯ୍ୟଜନକ ଭାବେ ସ୍ୱପ୍ନରେ କୁହାଯାଇଥିଲା ଯେ ତାଙ୍କର ସ୍ତ୍ରୀ ଗର୍ଭବତୀ ଅଛନ୍ତି ଏବଂ ଏହି ଗର୍ଭରୁ ଯେଉଁ ସନ୍ତାନ ଜନ୍ମ ହେବ ତାର ନାମ ରଖାଯିବ ସେଜୋସିରସ୍ ସିଏଜି, ବହୁ ବିଚିତ୍ର ଘଟଣାର କେନ୍ଦ୍ର ହେବ ।

ବାଇବେଲରେ ମଧ୍ୟ ସ୍ୱପ୍ନ ବିଷୟରେ ଆଲୋକପାତ କରାଯାଇଛି । କିନ୍ତୁ ଏହା କେବଳ ଦେବତାମାନଙ୍କ ଦ୍ୱାରା ନ ହୋଇ ସଇତାନ ବା ଠକମାନଙ୍କ ଦ୍ୱାରା ସଂଘଟିତ ହେବା ସମ୍ଭବ ବୋଲି ଉଲ୍ଲେଖ କରାଯାଇଛି । କେଉଁ ସ୍ୱପ୍ନମାନଙ୍କ ମଧ୍ୟରୁ ଠିକ୍ ସ୍ୱପ୍ନକୁ ବାଛିବାର ଗୁରୁଦାୟିତ୍ୱ ସ୍ୱପ୍ନଦ୍ରଷ୍ଟାର ବୁଦ୍ଧି ଓ ବିବେକ ଉପରେ ନିର୍ଭର କରେ ।

ଅମେ ସ୍ୱପ୍ନାଦେଶର ବଶବର୍ତ୍ତୀ ହେବା କେତେ ଦୂର ଯଥାର୍ଥ ? ମନସ୍ତତ୍ତ୍ୱ ଜଗତର ପ୍ରାଣପ୍ରତିଷ୍ଠାତା ଫ୍ରଏଡ୍ "Interpretation of Dreams" (1900) ନାମକ ପୁସ୍ତକର ପ୍ରଣେତା । ସେ ସୂଚାଇଛନ୍ତି ଯେ, ଅମେ ସଚେତନ ଅବସ୍ଥାରେ ପରମ—ଅହମ୍ (super ego)ର ଅଧୀନସ୍ଥ ଥାଉଁ । ତେଣୁ ଭଲ-ମନ୍ଦ, ଉଚିତ-ଅନୁଚିତ ଇତ୍ୟାଦି ବିଷୟ ପ୍ରତି ସଚେତନ ରହି ଯାହା ଅପ୍ରୀତିକର ତାକୁ ପ୍ରକାଶ କରି ନଥାଉଁ । ମାନସିକ ଚାପ ଯୋଗୁଁ ମନ ମଧ୍ୟରେ ଦବି ରହିଥିବା ଏହି ତଥାକଥିତ ଅପବିତ୍ରଜନକ ବିଷୟବସ୍ତୁମାନ ନିଦ୍ରିତାବସ୍ଥାରେ ସ୍ୱପ୍ନ ମାଧ୍ୟମରେ ପ୍ରତିଫଳିତ ହୁଅନ୍ତି କାରଣ ଏହି ସମୟରେ ପରମ ଅହମ୍ ଅତ୍ୟନ୍ତ ଦୁର୍ବଳ ଥାଏ । ଅବଶ୍ୟ କେତେକ ବେଳେ ସ୍ୱପ୍ନରେ ମଧ୍ୟ ପରମ ଅହମ୍ କିଛି ପରିମାଣରେ ସକ୍ରିୟ ରହିଥିବା ଯୋଗୁଁ ଅପବିତ୍ରଜନକ ବିଷୟ ଏବଂ ଘଟଣାମାନ ସ୍ୱପ୍ନରେ ପ୍ରତ୍ୟକ୍ଷ ଭାବେ ନ ଘଟି ସଙ୍କେତ ଦ୍ୱାରା ପରିଦୃଷ୍ଟ ହୋଇଥାନ୍ତି । ଯଥା : ପୁରୁଷର ଜନନେନ୍ଦ୍ରିୟ ସାପ କୌଣସି ଲମ୍ବା ବସ୍ତୁ ଏବଂ ନାରୀର ଜନନେନ୍ଦ୍ରିୟ କୌଣସି ବାକ୍ସ କିମ୍ବା ଖାଲି ତେଜ୍‌ଟ ଦ୍ୱାରା ପରୋକ୍ଷ ଭାବେ ସୂଚିତ ହୁଏ । ତେଣୁ ଫ୍ରଏଡ୍ ସ୍ୱପ୍ନକୁ ମୁଖ୍ୟତଃ ଅଭିଳାଷର ପରିପୂରଣ (wish—fulfillment) ବୋଲି ମତ ଦେଇଛନ୍ତି ।

ଫ୍ରଏଡଙ୍କ ଏହି ଧରଣର ସାଙ୍କେତିକ ଉପାଦାନରେ ସ୍ୱପ୍ନବିଶ୍ଳେଷଣ ପଦ୍ଧତି ଯୋଗୁଁ ଏହା ଦେଶ, ଧର୍ମ, ବର୍ଣ୍ଣ, ଜାତି ଓ ଯୁଗ-ଉତ୍ତୀର୍ଣ୍ଣ ହୋଇ ସାର୍ବଜନୀନତା ହରାଇଛି । ସଙ୍କେତର ଅର୍ଥ ନିରୂପଣ କରିବା ପାଇଁ ଫ୍ରଏଡ ସାଧାରଣତଃ ମୂଳ ଅଙ୍କାରକ ବୋଲି ଗ୍ରହଣ କରିଥିବା ବେଳେ ଅନ୍ୟମାନେ ହୁଏତ ଏହି ମାପକକୁ ମାନିବା ପାଇଁ ପ୍ରସ୍ତୁତ ହୋଇ ନ ପାରନ୍ତି । ଫଳରେ ସଙ୍କେତର ଅର୍ଥ ନେଇ ଭିନ୍ନ ମୁନି ଭିନ୍ନ ମତ ଦେଇଥାନ୍ତି । ସ୍ୱପ୍ନରେ ସାପ ଦେଖିଲେ, ଫ୍ରଏଡ ଯୌନଇନ୍ଦ୍ରିୟ ବୋଲି ମତ ଦେଉଥିବା ବେଳେ ରଫେଲ୍ (ଗତ ଶତାବ୍ଦୀରେ ପ୍ରକାଶିତ ପ୍ରସିଦ୍ଧ ପୁସ୍ତକ Raval Book of Dreamsର ଲେଖକ) ଶୀଘ୍ର ଶତ୍ରୁର ଆଗମନ ବୋଲି ମନେ କରନ୍ତି । କିନ୍ତୁ ହିନ୍ଦୁମାନଙ୍କ ଶାସ୍ତ୍ର ଅନୁସାରେ ସାପ-ସ୍ୱପ୍ନ ଭବିଷ୍ୟତରେ ଶୁଭ ଲକ୍ଷଣ ସୂଚାଏ ।

"କେବଳ ସର୍ପ ଦର୍ଶନେ ଶତ୍ରୁ ଦୂରେ ହଟେ ।
ସର୍ପ ଦଂଶନ କରିଲେ ଲକ୍ଷ୍ମୀ ହୁଏ ନୃପେ ॥
ସତ୍ୟବଳେ ଧନ ହସ୍ତେ ଦେଖ ଶ୍ୱେତ ଅହି ।
ଜାଣ ଫଳଦନେ ରାଜ୍ୟ ନିଶ୍ଚେ ପାଇବଟି ॥"

( ବୃହତ୍ ସ୍ୱପ୍ନଫଳ ପରୀକ୍ଷା; ପୃ. ୧୧୯; ଧର୍ମଗ୍ରନ୍ଥ ଷ୍ଟୋର । )

ଏପରିକ ଏକ ନିର୍ଦ୍ଦିଷ୍ଟ ଧର୍ମ ମଧ୍ୟରେ ମଧ୍ୟ ମତୈକ୍ୟ ପ୍ରକାଶ ପାଉ ନାହିଁ । ସ୍ୱପ୍ନଦ୍ରଷ୍ଟା ଉପରକୁ ମାଙ୍କଡ଼ ଡେଇଁଲେ କିମ୍ବା ସ୍ୱପ୍ନଦ୍ରଷ୍ଟାକୁ ବାଘ ମାଡ଼ ପକାଉଥିବା ସ୍ୱପ୍ନ ଦେଖିଲେ, ମୃତ୍ୟୁର ପୂର୍ବ ସୂଚନା ବୋଲି ଅଷ୍ଟ୍ରିଆର ଅରଣ୍ୟକ ମତ ଦେଉଥିବା ବେଳେ ମନ୍ଦାର ଫୁଲର ମାଳ ପିନ୍ଧି, ରଥ ପିଠିରେ ବସି ଦକ୍ଷିଣ ଦିଗକୁ ଯିବାର ସ୍ୱପ୍ନ ଦେଖିଲେ ନିଶ୍ଚିତ ମୃତ୍ୟୁ ବୋଲି ବାଲ୍ମୀକି ଋଷି (ଲଙ୍କାକାଣ୍ଡ) ରାମାୟଣରେ ବର୍ଣ୍ଣନା କରିଛନ୍ତି ।

ସ୍ୱପ୍ନର କାରଣମାନ ଖୋଜି ବାହାର କରିବା ପାଇଁ ବୈଜ୍ଞାନିକ ଭାବରେ ବିଭିନ୍ନ ଚେଷ୍ଟା କରାଯାଉଛି । ସମରୂପ ଯମଜ ସନ୍ତାନ (Identical Twins) ମାନଙ୍କର ସ୍ୱପ୍ନ ବିଷୟରେ ଗବେଷଣା କରି ଜଣାପଡ଼ିଛି ଯେ, ସେମାନଙ୍କ ବିଭିନ୍ନ ନିଦ୍ରାର (REM & Deep Sleep) ପର୍ଯ୍ୟାୟ ଓ ଅବଧି ସମାନ । ତେଣୁ ସ୍ୱପ୍ନର କାରଣ ସହିତ ଜନ୍ମଗତ ସ୍ୱଭାବ ଓ ବଂଶଗୁଣ ସମ୍ପର୍କିତ ଅଛି ବୋଲି ମନେ କରାଯାଉଛି । ସେହିପରି ଡାରୱିନ୍ ଲକ୍ଷ୍ୟ କରିଥିଲେ ଯେ, ଯେତେବେଳେ ଜଣେ ଭଦ୍ରଲୋକଙ୍କୁ ଗଭୀର ନିଦ୍ରା ମାଡ଼ିଥାଏ, ସେ ତାଙ୍କ ଦକ୍ଷିଣ ହାତକୁ ମଧ୍ୟ ତାଙ୍କ ମୁହଁ ଉପରକୁ ଉଠାଇ ନେଇ ନାକ ଉପରେ ପକାଇ ରଖନ୍ତି । ତାଙ୍କର ଏହି ଗୁଣଟି ବଂଶାନୁକ୍ରମିକ ଭାବେ ତାଙ୍କ ପୁଅ ଓ ନାତିମାନଙ୍କ ଠାରେ ମଧ୍ୟ ପରିଲକ୍ଷିତ ହେଲା, ସେମାନେ ମଧ୍ୟ ଗାଢ଼ ନିଦ ସମୟରେ ଏହିପରି ନିଜ ନାକ ଉପରେ ଦକ୍ଷିଣ ହାତକୁ ରଖୁଥିଲେ । ତେଣୁ ନିଦ ଓ ସ୍ୱପ୍ନ ଉପରେ ବଂଶଗୁଣର ପ୍ରଭାବକୁ ଅସ୍ୱୀକାର କରି ହେବ ନାହିଁ ।

ସ୍ୱପ୍ନତତ୍ତ୍ୱକୁ ଐତିହାସିକ କ୍ରମ ଅନୁସାରେ ତିନୋଟି ପର୍ଯ୍ୟାୟରେ ବୁଝାଇ ହେବ । (୧) ବିଭିନ୍ନ ଧର୍ମଗ୍ରନ୍ଥକୁ ଭିତ୍ତି କରି ପୌରାଣିକ ମତବାଦ (୨) ଫ୍ରଏଡ୍, ମର୍ଟନ୍ ପ୍ରମୁଖ ମନସ୍ତତ୍ତ୍ୱବିତ୍ଙ୍କ ତଥ୍ୟ (୩) ସ୍ନାୟବିକ-ଶରୀର ତାତ୍ତ୍ୱିକ (Neurophysio-logical) ସିଦ୍ଧାନ୍ତ । ଉପରୋକ୍ତ ବିବରଣୀମାନଙ୍କର ପ୍ରଥମ ଦୁଇଟି ମତବାଦର ଅବତାରଣା କରାଯାଇଛି । ଐତିହାସିକ ଦୃଷ୍ଟିକୋଣରୁ ସ୍ନାୟବିକ ତତ୍ତ୍ୱ ହେଉଛି ଅତ୍ୟାଧୁନିକ ।

ଆମେ ଦୈନିକ ପ୍ରାୟ ଆଠଘଣ୍ଟା ସମୟ ନିଦ୍ରାରେ କଟାଉ । ନିଦ୍ରାବସ୍ଥାକୁ ଗାଢ଼ ନିଦ (Deep sleep) ଓ ହାଲୁକା ନିଦ (Superficial sleep) ଏହିପ୍ରକାରେ ଦୁଇ ଭାଗରେ ବିଭକ୍ତ କରି ଯାଇପାରେ । ମନସ୍ତତ୍ତ୍ୱବିତ୍ମାନଙ୍କ ମତ ହେଉଛି ଯେ, ସ୍ୱପ୍ନ ସାଧାରଣତଃ ଗାଢ଼ନିଦ୍ରା ସହିତ ସଂପୃକ୍ତ । ହାଲୁକା ନିଦରେ ପ୍ରାୟ

ନବେ ମିନଟ କଟାଇବା ପରେ ଆମକୁ ଗାଢ଼ ନିଦ୍ରା ଘାରିଥାଏ । ଗାଢ଼ ନିଦ ବେଳେ ଆମର ମାଂସପେଶୀ ଶିଥିଳ ହୋଇଯାଏ । ହୃତ୍ସ୍ପନ୍ଦନ, ରକ୍ତସଞ୍ଚଳନ ଓ ଶ୍ୱାସକ୍ରିୟାରେ ପରିବର୍ତ୍ତନ ପରିଲକ୍ଷିତ ହୁଏ । ଏହି ସମୟରେ ସ୍ୱପ୍ନଗୁଡ଼ିକ ଗଳ୍ପ ପରି ସମ୍ପୂର୍ଣ୍ଣ କାଳ୍ପନିକ ଭଙ୍ଗୀରେ ସୃଷ୍ଟିଥାଏ ।

ଗଭୀର ନିଦ ସମୟରେ କ୍ଷିପ୍ର ଚକ୍ଷୁଚଳନ (Rapid Eye Movement—REM) ଘଟିଥାଏ । ଏହି ସମୟରେ ଜଣେ ଯଦି କୌଣସି ଖେଳ ଦେଖୁଥିବା ସ୍ୱପ୍ନ ଦେଖେ, ତାହାହେଲେ ତାର ଆଖି ପ୍ରକୃତରେ ଖେଳ ପଡ଼ିଆରେ ଖେଳ ଦେଖୁଥିଲେ ଯେଉଁ ପରିମାଣରେ ଚଳପ୍ରଚଳ ହେବା କଥା, ସେହି ପରିମାଣରେ ଚଳନ ହୁଏ ।

ଡାକ୍ତର କ୍ରିକ୍ ଓ ଗ୍ରାମ୍ ମିଚିସନ୍ REM ନିଦ୍ରା ସମ୍ପର୍କରେ କହନ୍ତି ଯେ, ଏହାଦ୍ୱାରା ମସ୍ତିଷ୍କର ବହିଃସ୍ତରରେ ଥିବା କୋଷମାନଙ୍କ ପାଇଁ ଘଟୁଥିବା କ୍ଷତିକାରକ ପ୍ରତିକ୍ରିୟାମାନ (Fantasy)—ଅଦ୍ଭୁତ କଳ୍ପନା, obsession—ଆବେଶ Hallucination-ଭ୍ରାନ୍ତ ପ୍ରତ୍ୟକ୍ଷ) ଦୂରୀଭୂତ ହୁଏ । (Nature—14-7-83) ତେଣୁ ଏହି ଅବସ୍ଥାରେ ଦେଖିଥିବା ସ୍ୱପ୍ନକୁ ସ୍ମରଣ କରିବା ପାଇଁ ସେମାନେ ବାରଣ କରି ସତର୍କ କରାଇ ଦେଇଛନ୍ତି ! "One should not be encouraged to try to recall one's dreams, because this may help to retain patterns of thought, which need to be eliminated for a more effective cortical functioning" ଏହି ମତକୁ ସମର୍ଥନ କରି ଜନ ଫଟଲବର୍ଗ୍ ଜ୍ୟାକ୍‌ସନ ନାମକ ଜଣେ ପ୍ରଖ୍ୟାତ ସ୍ନାୟୁବିଶେଷଜ୍ଞ ମନ୍ତବ୍ୟ ଦେଇଛନ୍ତି ଯେ, ଆମେ ଯଦି ସମସ୍ତଙ୍କର ସବୁ ସ୍ୱପ୍ନମାନ ଲିପିବଦ୍ଧ କରୁ, ତାହାହେଲେ ପୃଥିବୀର ସବୁ ପ୍ରକାର ପାଗଳାମି ଆମେ ଅନାୟାସରେ ଜାଣିପାରିବା ।

ସ୍ନାୟୁବିଶେଷଜ୍ଞମାନଙ୍କ ଅଧ୍ୟୟନରୁ ପ୍ରକଟ ହୁଏ ଯେ, ସ୍ୱପ୍ନଦ୍ୱାରା ଆମର ମାନସିକ ସୁସ୍ଥତାର ସୁରକ୍ଷା ଘଟେ ଏବଂ ସ୍ୱପ୍ନକୁ ବାରମ୍ବାର ମନେ ପକାଇ ଉଣ୍ଡି ଧରିବାକୁ ଚେଷ୍ଟା କଲେ, ଆମେ ଅତି ଶୀଘ୍ର ପାଗଳ ହୋଇଯିବା ବିଚିତ୍ର ନୁହେଁ ।

ଏହି ପ୍ରକାର ଆଧୁନିକ ମତ ସତ୍ତ୍ୱେ ସ୍ୱପ୍ନାବସ୍ଥାରେ ଆମର ସ୍ମରଣ ଶକ୍ତି ଓ ଏହି କାରଣରୁ ତାର ଉପାଦେୟତା ସମ୍ବନ୍ଧରେ ଜର୍ମାନ୍ ଶାସ୍ତ୍ରଜ୍ଞ ଓ ଗବେଷକ ସିଲ୍‌ବର୍ଙ୍କ ଉକ୍ତି ମନେପଡ଼େ । ସେ ଦର୍ଶାଇଛନ୍ତି ଯେ, ସ୍ୱପ୍ନ ହେଉଛି ସ୍ମୃତିର ରୂପାନ୍ତର,

ସ୍ୱପ୍ନାବସ୍ଥାରେ ଅମର ସ୍ମରଣ ଶକ୍ତି ଅଲୌକିକ ଭାବେ କାର୍ଯ୍ୟ କରୁଥିବା ବିଷୟ ନିମ୍ନ ଘଟଣାରୁ ଜଣାପଡ଼େ ।

ଥରେ ସ୍ୱେବିନାର ନାମକ କୌଣସି ଏକ କବି ଭେରୋନା ସହରର ପ୍ରସିଦ୍ଧ ବ୍ୟକ୍ତିମାନଙ୍କ ସମ୍ପର୍କରେ ଗୋଟିଏ କବିତା ଲେଖିଲେ । ଏହି କବିତା ଲେଖା ସରିବା ପରେ ବ୍ରୁଗ୍ନୋଲୋଲ୍ ନାମକ ଜଣେ ବ୍ୟକ୍ତି ସ୍ୱେବିନାରଙ୍କୁ ସ୍ୱପ୍ନରେ ଦେଖା ଦେଇ ଅଭିଯୋଗ କଲେ ଯେ, ଭୁଲବଶତଃ ତାଙ୍କ ବିଷୟରେ ସେହି କବିତାରେ କିଛୁ ଉଲ୍ଲେଖ କରାଯାଇ ନାହିଁ । ନିଦ ଭାଙ୍ଗିବା ପରେ ବ୍ରୁଗ୍ନୋଲୋଲ୍ ନାମଧେୟ ଭେରୋନାରେ ବାସ କରୁଥିବା କୌଣସି ବ୍ୟକ୍ତିଙ୍କୁ ମନେ ପକାଇବାକୁ ଚେଷ୍ଟା କରି ସ୍ୱେବିନାର ବିଫଳ ହେଲେ । ତଥାପି ନିଜ ସ୍ୱପ୍ନକୁ ଖାତିର କରି ବ୍ରୁଗ୍ନୋଲୋଲ୍ଙ୍କୁ ନିଜ କବିତାରେ ଭର୍ତ୍ତି କରିଦେଲେ ।

କିଛିଦିନ ପରେ ସ୍ୱେବିନାରଙ୍କ ପୁଅ ଭେରୋନାକୁ ଯାଇ ତଦନ୍ତ କରି ଜାଣି-ପାରିଲେ ଯେ ବାସ୍ତବିକ ସେଠାରେ ବ୍ରୁଗ୍ନୋଲୋଲ୍ ନାମକ ଜଣେ ବ୍ୟକ୍ତି ସମାଲୋଚକ ଭାବେ ବେଶ୍ ଖ୍ୟାତି ଲାଭ କରିଥିଲେ । ତେଣୁ ଉକ୍ତ କବିତାରେ ତାଙ୍କ ନାମ ଯୋଡ଼ା ଯାଇନଥିଲେ, ତାହା ଅବଶ୍ୟ ଅସମ୍ପୂର୍ଣ୍ଣ ହୋଇଯାଇଥାନ୍ତା ।

କବି ସ୍ୱେବିନାର ସ୍ୱପ୍ନଯୋଗୁଁ ଉପକୃତ ହେବା ବିଷୟ ଏହି ଦୃଷ୍ଟାନ୍ତରେ ସୂଚିତ କରିଛନ୍ତି । ସ୍ୱପ୍ନ ଦ୍ୱାରା ଯେ ଅତଡ଼ କାର୍ଯ୍ୟ ଘଟିପାରେ, ଏହା ତାହାର ପ୍ରମାଣ । କିନ୍ତୁ ଏହା କେବଳ କବି ସ୍ୱେବିନାରଙ୍କ କ୍ଷେତ୍ରରେ ନୁହେଁ; ଅନ୍ୟମାନଙ୍କ ପାଇଁ ମଧ୍ୟ ପ୍ରଯୁଜ୍ୟ ହୋଇପାରେ । ଆମେ ସାଧାରଣତଃ ଦୁଇ ପ୍ରକାର ବ୍ୟକ୍ତି ଦେଖିଥାଉଁ, ପ୍ରଥମ ଶ୍ରେଣୀସ୍ଥ ବ୍ୟକ୍ତି ହେଉଛନ୍ତି ସୌରମାନସ-ସମ୍ପନ୍ନ, ଯେଉଁମାନେ ସବୁ ବିଷୟକୁ ଯୁକ୍ତିତର୍କ ମାଧ୍ୟମରେ ପରୀକ୍ଷା ନରୀକ୍ଷା କରି ସିଦ୍ଧାନ୍ତରେ ଉପନୀତ ହୋଇଥାନ୍ତି । କିନ୍ତୁ ଅନ୍ୟମାନେ ଅନ୍ତଶ୍ଚକ୍ଷୁ ଚେତନା ଦ୍ୱାରା ପ୍ରଣୋଦିତ । ସେମାନେ ସ୍ୱପ୍ନଜଗତରେ ବାସ୍ତବତା ପାଇଥାନ୍ତି ଏବଂ ସ୍ୱପ୍ନକୁ ନିରର୍ଥକ ବୋଲି ଭାବି ପାରନ୍ତି ନାହିଁ । ପ୍ରତ୍ୟେକ ଘଟଣା ବା ବସ୍ତୁର ପ୍ରତ୍ୟକ୍ଷତା ପଛରେ ଅନ୍ତର୍ନିହିତ ଓ ଲୁକ୍କାୟିତ ସତ୍ତା ପ୍ରତି ସେମାନେ ସଚେତନଶୀଳ ହୋଇଥାନ୍ତି । ଏହି ଶ୍ରେଣୀସ୍ଥ ବ୍ୟକ୍ତିମାନେ ସମାଜର ଯେକୌଣସି ସ୍ତରରେ ଜନ୍ମ ହୋଇଥାନ୍ତୁ ନା କାହିଁକି, ପରବର୍ତ୍ତୀ ଅବସ୍ଥାରେ ପ୍ରତିଷ୍ଠିତ ହେବା ବିଷୟ ଜଣାଯାଏ ।

ଏହି ପ୍ରସଙ୍ଗରେ ଫ୍ରାନ୍ସର ଜନ୍ ଅଫ ଆର୍କଙ୍କ (୧୪୧୨—୩୧) ଜୀବନୀ ପ୍ରତି ଦୃଷ୍ଟି ଦିଆଯାଉ । ଫ୍ରାନ୍ସ ରାଜଗାଦି ସମ୍ଭାଳିବାକୁ ବ୍ରିଟିଶ ସମ୍ରାଟମାନେ ଯୁଦ୍ଧ ଦ୍ୱାର

ବୋଲି ଦାବୀକରି ଇଂଲଣ୍ଡ ଫ୍ରାନ୍ସ ଉପରେ ଏକ ଶତାବ୍ଦୀ (୧୩୩୭—୧୪୫୩) ଧରି ଥରକୁ ଥର ଆକ୍ରମଣ ଚଳାଇଥାଏ । ଯୁଦ୍ଧଦ୍ୱାରା ଜର୍ଜରିତ ଫ୍ରାନ୍ସ ଦେଶରେ ଏହିସମୟରେ ଜନ୍ ଅଫ୍ ଆର୍କ ଏକ କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ଏହି କୃଷକ, ଅଶିକ୍ଷିତା ବାଳକାଟି ଦାବୀ କଲେ ଯେ, ନିଜ ଦେଶକୁ ଇଂଲଣ୍ଡର କବଳରୁ ମୁକ୍ତ କରିବା ପାଇଁ ତାକୁ ବାରମ୍ବାର ଦୈବୀବାଣୀ ଶୁଣାଯାଉଛି । ତଦନୁସାରେ ସେ ନିଜ ଦେଶରେ ଜାତୀୟ ପ୍ରେମ ସୃଷ୍ଟି କରି ପାରିଥିଲେ ଏବଂ ୧୪୨୯ ମସିହାରେ ଫ୍ରାନ୍ସ ଓର୍ଲିନ୍ସ ଠାରୁ ସଂଗ୍ରାମର ନେତୃତ୍ୱ ନେଇ ବିଜୟିନୀ ହୋଇଥିଲେ ।

ଜନ୍ ଅଫ୍ ଆର୍କ ପରି ଅନ୍ୟ ଅନେକ ଦୃଷ୍ଟାନ୍ତ ଦେଇ ହେବ, ଯେଉଁଥିରେ ଅଲୌକିକ, ଅପାର୍ଥିବ ଶକ୍ତି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଉଦାହରଣ ସ୍ୱରୂପ, ୧୯୮୫ ସାଲର ଜ୍ଞାନପୀଠ ପୁରସ୍କାର ବିଜେତା ଗୁଜରାଟୀ ଔପନ୍ୟାସିକ ପାନ୍ନାଲାଲ ପଟେଲଙ୍କୁ ନିଆଯାଇପାରେ । ସେ ମାଣ୍ଡଲିର ଗୋଟିଏ ସାଧାରଣ କୃଷକ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ବାଲ୍ୟାବସ୍ଥାରେ ସେ ବାପଛେଉଣ୍ଡ ହୋଇଯାଇଥିଲେ । ତାଙ୍କର ଶିକ୍ଷାଗତ ଯୋଗ୍ୟତା ଥିଲା ମାତ୍ର ଅଷ୍ଟମ ଶ୍ରେଣୀ ପାସ୍ । କିନ୍ତୁ ନିଜ ସାଧନା ଓ ପ୍ରତିଭା ବଳରେ ସେ ପଚିଶ ଖଣ୍ଡ ପୁସ୍ତକ ଲେଖି ଜ୍ଞାନପୀଠ ସମେତ ବହୁ ଉଲ୍ଲେଖଯୋଗ୍ୟ ପୁରସ୍କାର ପାଇଛନ୍ତି । ସେ ନିଜ ଜୀବନ-ଧାରା ପ୍ରତି ମନ୍ତବ୍ୟ ଦେଇଛନ୍ତି, "I regard everything in my life as a miracle. I generally do not do things after a great deal of thought, but more from intuition…"

ତେଣୁ ସ୍ୱପ୍ନ-ଜଗତରେ, ଯେଉଁଠାରେ କି ଧୀଶକ୍ତି (Intellect)ର ପ୍ରାଧାନ୍ୟ ନଥାଏ; କଳ୍ପନା-ଶକ୍ତିର ସ୍ୱାଧୀନ ଅଭିବ୍ୟକ୍ତି ଓ ଅବାଧ ଲୀଳା ଖେଳା ଚାଲେ । ଏହି ପରିବେଶରେ ଅତୀନ୍ଦ୍ରିୟ ଚେତନା ବିକଶିତ ହେବା ଅସମ୍ଭବ ନୁହେଁ । ତେଣୁ ଏକ ଦୃଷ୍ଟିରୁ ବିଚାର କଲେ, ସ୍ୱପ୍ନ-ଜଗତର ପ୍ରାସଙ୍ଗିକତା ଉପଲବ୍ଧି କରି ହେବ ।



# ଘଡ଼ି ଓ ଇଲେକ୍‌ଟ୍ରୋନିକ୍ସ

ପ୍ରାୟ ୧୩୦୦ ମସିହାରେ ୟୁରୋପରେ ଘଡ଼ି ଜନ୍ମ ନେଲା । ତାର କାରଣ ହେଉଛି ଧର୍ମଯାଜକ ଓ ପୁରୋହିତମାନେ ଠିକ୍ ସମୟରେ ପ୍ରାର୍ଥନା କରିବାକୁ ଚାହିଁଲେ । ତେଣୁ ପ୍ରତି ଘଣ୍ଟା ଅନ୍ତେ ଘଡ଼ି ଦ୍ୱାରା ପ୍ରଚଣ୍ଡ ଶବ୍ଦ କରି ସମସ୍ତଙ୍କୁ ସମୟ ଜଣାଇ ଦିଆଯାଉଥିଲା । ଏହି ଦୃଷ୍ଟିରୁ କ୍ଲକ୍ (ଘଡ଼ି)ର ନାମକରଣ ହୋଇଛି ଏକ ଫରାସୀ ଶବ୍ଦ cloche ରୁ ଯାହାର ଅର୍ଥ ହେଉଛି ବେଲ୍ । ଏହି ଘଣ୍ଟାର ଆବାଜ ଶୁଣି ଲୋକେ ପ୍ରାର୍ଥନା ପାଇଁ ପ୍ରସ୍ତୁତ ହେଉଥିଲେ । କିନ୍ତୁ ତାହାର ଆକାର ବୃହତ୍ ହୋଇଥିବା ଯୋଗୁଁ ବହୁଳଭାବେ ସବୁ ପରିସ୍ଥିତିରେ ବ୍ୟବହାର କରିବା ପାଇଁ ଅସୁବିଧା ହେଉଥାଏ ।

ପରବର୍ତ୍ତୀ ସମୟରେ ଘଡ଼ିର ଆକାର କମାଇ ଦିଆଗଲା ଏବଂ ତାକୁ ଏତେଦୂର ସୂକ୍ଷ୍ମ ଓ ସୌଖିନ କରାଯାଇପାରିଲା ଯେ ମହିଳାମାନଙ୍କର ସୁନ୍ଦର ବ୍ୟାଗ୍‌ରେ ଅଳଙ୍କାରର ଏକ ନିଦର୍ଶନ ଭାବେ ତାହା ଶୋଭା ପାଇଲା । କିନ୍ତୁ ଏହି ପରିବର୍ତ୍ତନ ହେଲା ପ୍ରଥମ ବିଶ୍ୱଯୁଦ୍ଧବେଳେ । ସେତେବେଳେ ସୈନ୍ୟମାନେ ଘଡ଼ିର ସାଙ୍ଗକରଣ ଉପାଦେୟତା ଅନୁଭବ କଲେ । ସାମରିକ କ୍ଷେତ୍ର ପାଇଁ ଠିକ୍ ସମୟ ଜାଣିବା ଅତ୍ୟନ୍ତ ଜରୁରୀ ହେଲା । ଦିନ ଥିଲା, ଯେତେବେଳେ ଘଡ଼ି ଧର୍ମଯାଜକମାନଙ୍କର ପ୍ରାର୍ଥନା ଦ୍ୱାରା ଶାନ୍ତି ଲାଭ ପାଇଁ ବ୍ୟବହାର କରାଯାଉଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ତାହା ସୈନ୍ୟମାନଙ୍କ ଦ୍ୱାରା ଯୁଦ୍ଧ ପାଇଁ ଏକ ମୌଳିକ ଅସ୍ତ୍ର ହେଲା । ଏହାର ଏକ ପରିଣତି ସ୍ୱରୂପ ଘଡ଼ିର ଆକାର ଓ ପ୍ରକାରରେ ବୈପ୍ଳବିକ ପରିବର୍ତ୍ତନ ଘଟିଲା । ପୂର୍ବେ ଲୋକେ ବୃହଦାକାର ଜଳଘଡ଼ି, ସୂର୍ଯ୍ୟଘଡ଼ି, ବାଲିଘଡ଼ି ବ୍ୟବହାର କରୁଥିଲେ । ଏପରିକି ୧୦୮୮ ସାଲରେ ଚୀନ୍ ଦେଶର ସୁସାଙ୍ଗଙ୍କ ଦ୍ୱାରା ଉଦ୍ଭାବିତ ପ୍ରଥମ ଯାନ୍ତ୍ରିକ ଘଡ଼ିର ଉଚ୍ଚତା ଥିଲା ଚାଳିଶ ଫୁଟ ଓ ତାହା ଅନୁଗାମୀ ଜଳସ୍ରୋତର ପ୍ରବୃତ୍ତି ଦ୍ୱାରା ଚାଳିତ ହେଉଥିଲା । ବୈଜ୍ଞାନିକ ଗାଲିଲିଓ ଓ ହାଇଗେନ୍‌ଙ୍କ ଅବଦାନ ଯୋଗୁଁ ଘଡ଼ିର

ଜଟିଳତା ବଢ଼ିବା ସଙ୍ଗେ ସଙ୍ଗେ ଅଧିକ ସୂକ୍ଷ୍ମତର ହେବାରେ ଲାଗିଲା । କ୍ରମଶଃ କାନ୍ଥ ଘଡ଼ିର ଦୋଳକ ସ୍ଥାନରେ ବାଲାନ୍ସ ହୁଇଲ୍ ବ୍ୟବହାର କରାଯାଇ ହାତଘଡ଼ି ନିର୍ମାଣ କରିବା ସମ୍ଭବ ହେଲା । ଏହାଦ୍ୱାରା ସମୟାନୁବର୍ତ୍ତିତା ସମସ୍ତଙ୍କ ହାତ ପାଖରେ ପହଞ୍ଚିଲା । ବର୍ତ୍ତମାନ ସମୟାନୁବର୍ତ୍ତିତା ସାମରିକ କ୍ଷେତ୍ରରୁ ଆରମ୍ଭ କରି ଦୈନନ୍ଦିନ ଜୀବନଯାତ୍ରାର ପ୍ରତ୍ୟେକ ସ୍ତରରେ ଅତ୍ୟାବଶ୍ୟକ ହୋଇଥିବା ଯୋଗୁଁ ଜଟିଳ ସମୟର ସଠିକ ପରିମାପ ବିଶେଷ ଗୁରୁତ୍ୱପୂର୍ଣ୍ଣ ! ଏହି ପ୍ରସଙ୍ଗରେ ଆଜିକାଲି ବହୁଳ-ଭାବେ ବ୍ୟବହୃତ ହେଉଥିବା ଇଲେକ୍ଟ୍ରୋନିକ୍ ଘଡ଼ି ବିଷୟରେ ଉଲ୍ଲେଖ କରାଯାଇପାରେ ।

ପ୍ରତ୍ୟେକ ଘଡ଼ିରେ ଏକ ସ୍ପନ୍ଦିତ ବସ୍ତୁ ଥାଏ, ଯାହାକି ନିୟମିତ ଭାବେ ସରଳ ଆବର୍ତ୍ତୀ ଗତିରେ ଘୂରେ । ତାକୁ ଦୋଳକ କୁହାଯାଏ । ଦୋଳକ ସେକେଣ୍ଡ୍‌ରେ ଯେତେ ଥର ଦୋଳିତ ହୁଏ, ତାକୁ ଦୋଳନ ସଂଖ୍ୟା ବୋଲି ନାମିତ କରାଯାଇଛି । ଯେଉଁ ଘଡ଼ିର ଦୋଳନ ସଂଖ୍ୟା ଯେତେ ଅଧିକ, ତାହା ସେତେ ଅଧିକ ସଠିକ ସମୟ ଦେଖାଇବାରେ ସକ୍ଷମ ହେବ । କାନ୍ଥ ଘଡ଼ି ପାଇଁ ଏହି ସଂଖ୍ୟା ହେଉଛି ମାତ୍ର ଏକ । ଯେଉଁ ହାତ ଘଡ଼ିରେ ବାଲାନ୍ସ ହୁଇଲ୍ ବ୍ୟବହାର କରାଯାଇଥାଏ, ଏହି ସଂଖ୍ୟା ଦୁଇରୁ ପାଞ୍ଚ ହୋଇଥିବା ବେଳେ, ଟ୍ୟୁନିଙ୍ଗ ଫୋର୍କ ବ୍ୟବହୃତ ହେଉଥିବା ହାତଘଡ଼ି-ପାଇଁ ଏହି ସଂଖ୍ୟା ହେଉଛି ତିନି ଶହରୁ ପାଞ୍ଚଶହ । କିନ୍ତୁ ଇଲେକ୍ଟ୍ରୋନିକ୍ ଘଡ଼ିରେ ଦୋଳନ ସଂଖ୍ୟା ପ୍ରାୟ ୫୦ ହଜାର । ସେଥିରେ ଦୋଳକ ଭାବେ ବ୍ୟବହୃତ ହେଉଥିବା କ୍ୱାର୍ଟଜ୍ କ୍ରିଷ୍ଟାଲ୍ (ସିଲିକନ୍ ଓ ଅମ୍ଳଜାନର ରାସାୟନିକ ମିଶ୍ରଣରୁ କମ୍ ବ୍ୟୟରେ କୃତ୍ରିମ ଭାବେ ପ୍ରସ୍ତୁତ କରାଯାଉଥିବା ଏକ ଯୌଗିକ ବସ୍ତୁ)କୁ ଉପଯୁକ୍ତ ଭାବେ ଟ୍ୟୁନିଙ୍ଗ୍ ଫୋର୍କ ପରି କାଟି ବ୍ୟବହାର କଲେ ସ୍ପନ୍ଦନ-ସଂଖ୍ୟା ଲକ୍ଷଣ ହଜାର ଯାଏଁ ବୃଦ୍ଧି ପାଏ । ସେହିପରି ଆଟୋମିକ୍ କ୍ଲକ୍ ନାମକ ସର୍ବାଧୁନିକ ଘଡ଼ିର ସ୍ପନ୍ଦନଶୀଳ ବସ୍ତୁ (ଆମୋନିଆ/ହାଇଡ୍ରୋଜେନ/ସିଜିଅମ୍ ଧାତୁର ବାଷ୍ପ) ସେକେଣ୍ଡରୁ ଚବିଶି ବିଲିଅନ୍ ଥର ସ୍ପନ୍ଦିତ ହୁଏ । ଫଳରେ ଏହି ଘଡ଼ିଟି ତିନି ହଜାର ବର୍ଷ ଏକାଦିକ୍ରମେ ବ୍ୟବହାର କରିବା ପରେ, ଠିକ୍ ସମୟଠାରୁ ମାତ୍ର ଗୋଟିଏ ସେକେଣ୍ଡ୍ ଅଧିକା କିମ୍ବା କମ୍ ଦେଖାଏ । ଦୋଳକର ସ୍ପନ୍ଦନ-ସଂଖ୍ୟାରୁ ଅନୁମିତ ହୁଏ ଯେ ସମୟ-ପରିମାପରେ ସାଧାରଣ ଘଡ଼ି ସପ୍ତାହରେ ଏକ ମିନିଟ୍ ଭୁଲ୍ କରୁଥିବାବେଳେ, ଇଲେକ୍ଟ୍ରୋନିକ୍ ଘଡ଼ି ବର୍ଷକରେ ମାତ୍ର ଏକ ମିନିଟ୍ ଭୁଲ୍ କରେ । ତେଣୁ ଯେଉଁମାନେ ସମୟାନୁବର୍ତ୍ତୀ ହେବାକୁ ଚାହାନ୍ତି, ସେମାନେ ସାଧାରଣ ହାତ ଘଡ଼ି ଅପେକ୍ଷା ଇଲେକ୍ଟ୍ରୋନିକ୍ ଘଡ଼ିକୁ ଅଧିକ ପସନ୍ଦ କରିବେ ।

ଇଲେକ୍‌ଟ୍ରୋନିକ ଘଡ଼ି ସାଧାରଣତଃ ଦୁଇ ପ୍ରକାର । ପ୍ରଥମଟି ହେଉଛି ଆନାଲୋଗ୍ ଶ୍ରେଣୀସ୍ଥ ଯେଉଁଥିରେ ସାଧାରଣ ଘଣ୍ଟା ପରି ତାଏଲ ଘୂରୁଥିବା କଣ୍ଟାମାନ ରହିଥାଏ । ପୁଣି କେତେକ ଆନାଲୋଗ ଘଣ୍ଟାରେ ସେକେଣ୍ଡ କଣ୍ଟାପ୍ରତି ସେକେଣ୍ଡ ଲମ୍ଫ ମାରି ଅଗ୍ରସର କରୁଥିବାବେଳେ ଅନ୍ୟ ଆନାଲୋଗ୍ ଘଣ୍ଟାମାନଙ୍କରେ ସେକେଣ୍ଡ କଣ୍ଟା ଧୀରେ ସୁସ୍ଥେ ବୁଲୁଥାନ୍ତି । ଆନାଲୋଗ୍ ଶ୍ରେଣୀସ୍ଥ ଘଡ଼ି ଇଲେକ୍‌ଟ୍ରୋନିକ୍ ଘଡ଼ିଠାରୁ ସ୍ୱତନ୍ତ୍ର, ଅନ୍ୟ ଇଲେକ୍‌ଟ୍ରୋନିକ ଘଡ଼ିର ନାମ ହେଉଛି ଡିଜିଟାଲ । ଯାହାର କ ମୁହଁରେ ଏକରୁ ବାର ଯାଏଁ ସଂଖ୍ୟା ଲେଖା ଯାଇ ନ ଥାଏ କିମ୍ବା ସେଥିରେ କୌଣସି କଣ୍ଟା ଘୂରୁ ନ ଥାଏ । ତେଣୁ ଏହି ପ୍ରକାର ଘଡ଼ିରେ ସମୟ ଦେଖିବା ପାଇଁ ପାର୍ଶ୍ୱସ୍ଥିତ ଏକ ସୁଇଚ୍ ଟିପିବାକୁ ପଡ଼େ ଯାହା ଫଳରେ ତରଳ ସ୍ଫଟିକ କିମ୍ବା ଆଲୋକ ଉତ୍ପାଦନକାରୀ ଡାଇଓଡ୍ ଦ୍ୱାରା ସମୟ, ତାରିଖ ଓ କ୍ୟାଲେଣ୍ଡର ଘଡ଼ିର ମୁହଁରେ ଦୃଶ୍ୟମାନ ହୁଏ । ବର୍ତ୍ତମାନ ଏଇ ଦୁଇ ପ୍ରକାର ଘଡ଼ିର ମିଶ୍ରଣରେ ପ୍ରସ୍ତୁତ ଏକ ନୂତନ ଘଡ଼ି ଦେଖିବାକୁ ମିଳେ, ଯାହାକୁ ଆନା-ଡିଜି ବା ଡିଜି-ଆନା ଇଲେକ୍‌ଟ୍ରୋନିକ୍ ଘଡ଼ି କୁହାଯାଉଛି ।

କ୍ୱାର୍ଟଜ ସ୍ଫଟିକ, ଘଡ଼ିର ସର୍ବପ୍ରଧାନ ଅଂଶ ହୋଇଥିବା ଯୋଗୁଁ ସୁରକ୍ଷା ଦୃଷ୍ଟିରୁ ତାକୁ ଭାକ୍ୟୁମ୍ କ୍ୟାପ୍‌ସୁଲ୍‌ରେ ରଖାଯାଏ । ବେଳେ ବେଳେ ବହୁଦିନ ବ୍ୟବହାର କରିବା ପରେ ଏହି ଘଡ଼ିର ଦୋଳନ-ସଂଖ୍ୟା ହ୍ରାସ ପାଇବା ଯୋଗୁଁ ଘଡ଼ି ଦୋଷଯୁକ୍ତ ହୁଏ ଏବଂ ଠିକ୍ ସମୟ ଦେଖାଏ ନାହିଁ । ତେଣୁ ଗୋଟିଏ ପରିବର୍ତ୍ତନକ୍ଷମ ଟ୍ରିମେର୍ କଣ୍ଡେନ୍‌ସର୍‌ର ଦ୍ୱାରା କ୍ରିଷ୍ଟାଲ୍‌ର ଦୋଳନ ସଂଖ୍ୟା ସ୍ଥିର ରଖାଯାଏ ।

ଇଲେକ୍‌ଟ୍ରୋନିକ ଘଡ଼ି ଖୋଲିଲେ ଇଣ୍ଟିଗ୍ରେଟେଡ୍ ସର୍କିଟ ନାମକ ଏକ ମୁଦ୍ରିତ ବିଦ୍ୟୁତ୍ ପରିପଥ ବା ଚିପ୍ସ ଆମ ଆଖିରେ ପଡ଼େ । ଏଥିରେ ଆବଶ୍ୟକତା ମୁତାବକ ଦୁଇ ହଜାରରୁ ଆଠ ହଜାର ଯାଏଁ ଟ୍ରାନ୍‌ଜିଷ୍ଟର୍ ଓ କଣ୍ଡେନ୍‌ସର୍ ପରି ବୈଦ୍ୟୁତିକ ଉପାଦାନମାନ ମାତ୍ର ଦୁଇ ବର୍ଗମିଲିମିଟରଠାରୁ କମ୍ ଜାଗାରେ ରୁନ୍ଧ ରଖାଯାଇଥାଏ । ଏପରି ସ୍ଥାନ-ସଂକ୍ଷିପ୍ତତା ତଥା ଉପାଦାନର ଘନ-ସାନ୍ଦ୍ରତା ଏକ ଉଲ୍ଲେଖନୀୟ ବୈଜ୍ଞାନିକ ସଫଳତା । ଏହାଦ୍ୱାରା ଘଡ଼ିର ଆୟତନକୁ ବହୁପରିମାଣରେ କମାଇବା ସମ୍ଭବପର ହୋଇପାରିଛି । ପୁଣି ଏହି ସହସ୍ରାଧିକ ଉପାଦାନମାନଙ୍କ ମଧ୍ୟରେ ଯୋଗାଯୋଗ ରକ୍ଷିବା ପାଇଁ କୌଣସି ତାର କିମ୍ବା ସୋଲଡ଼ରିଂ ପଦାର୍ଥ ବ୍ୟବହୃତ ହୋଇ ନ ଥାଏ । ସେହିସବୁ ଗୋଟିଏ ପତଳା ସିଲିକନ୍ ଆସ୍ତରଣରେ ରଖାଯାଇଥାଏ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, କ୍ୱାର୍ଟଜ କ୍ରିଷ୍ଟାଲ୍ ଯଦି ଇଲେକ୍‌ଟ୍ରୋନିକ୍ ଘଡ଼ିର ହୃତପିଣ୍ଡ, ତାହାହେଲେ ଇଣ୍ଟିଗ୍ରେଟେଡ୍ ସର୍କିଟ ହେଉଛି

ତା'ର ମସ୍ତିଷ୍କ । ଏହି ପ୍ରକାରେ ଏକ ଶକ୍ତ ମସ୍ତିଷ୍କ ଓ ସବଳ ହୃତ୍ପିଣ୍ଡ ନେଇ ଇଲେକ୍ଟ୍ରୋନିକ ଘଣ୍ଟା ନିର୍ଭୁଲ ସମୟ ଦେଖାଏ ।

ଘଣ୍ଟାର ସର୍କିଟ କାର୍ଯ୍ୟପ୍ରଣାଳୀକୁ ତିନି ସ୍ତରରେ ବିଭକ୍ତ କରାଯାଇପାରେ : (୧) ଓସିଲେଟର ସର୍କିଟ (ଦୋଳକ ପରିପଥ) । ଏହାଦ୍ୱାରା ଦୋଳକଟି ସ୍ପନ୍ଦିତ ହୁଏ ଏବଂ ତଦ୍‌ଜନିତ ଯାନ୍ତ୍ରିକ ସ୍ପନ୍ଦନମାନଙ୍କୁ ବୈଦ୍ୟୁତିକ ସଙ୍କେତରେ ରୂପାନ୍ତରିତ କରାଯାଏ । (୨) ବିଭାଜକ ପରିପଥ (ଡିଭାଇଡର୍ ସର୍କିଟ) ସାଧାରଣ ଘଣ୍ଟାରେ ଯେମିତି ଗିଅର୍ ଦ୍ୱାରା ଘଣ୍ଟାର ଗତିକୁ ନିୟନ୍ତ୍ରିତ କରାଯାଏ, ସେମିତି ଏହି ପରିପଥ ଦ୍ୱାରା ଉକ୍ତ ସ୍ପନ୍ଦନାଙ୍କ ଥିବା ବୈଦ୍ୟୁତିକ ସଙ୍କେତକୁ କମାଇ ନିମ୍ନକୁ ଅଣାଯାଏ । (୩) ଗଣକ ପରିପଥ (କାଉଣ୍ଟର ସର୍କିଟ) ଏହି ପରିପଥ ଦ୍ୱାରା ବିଭାଜକ ପରିପଥର ସଙ୍କେତ ଗଣାଯାଏ, ଯାହାକି ଘଣ୍ଟା ମିନଟ୍-ସେକେଣ୍ଡ ଆକାରରେ ଡିଜିଟାଲ ଘଣ୍ଟାର ମୁହଁରେ ପ୍ରକାଶିତ ହୁଏ । କିନ୍ତୁ ଯାନ୍ତ୍ରିକ ଘଣ୍ଟାରେ ଏହି ସଙ୍କେତମାନ ଏକ ଷ୍ଟେପର ମୋଟରକୁ ପରିଚାଳିତ କରେ, ଯାହାଫଳରେ ପ୍ରତି ସେକେଣ୍ଡକୁ ଥରେ ଘୂରେ ଏବଂ ସେକେଣ୍ଡ କଣ୍ଟା ପ୍ରତି ସେକେଣ୍ଡରେ ଥରେ ଲମ୍ଫମାରି, ସମୟ ଦେଖାଇ ଅଗ୍ରସର ହୋଇଥାଏ ।

ସାଧାରଣ ହାତଘଣ୍ଟାରେ ଆମେ ଚାବି ଦେଇ ଯାନ୍ତ୍ରିକ ଶକ୍ତି ଯୋଗାଉ, ତାହାକି ଘଣ୍ଟାର ସ୍ପ୍ରିଙ୍ଗ୍‌ରେ ସଞ୍ଚିତ ହୋଇରହେ । ଏହି ଶକ୍ତି ଶେଷ ହୋଇଗଲେ ଘଣ୍ଟା ବନ୍ଦ ହୋଇଯାଏ, କିନ୍ତୁ ଇଲେକ୍ଟ୍ରୋନିକ୍ ଘଣ୍ଟା ଲିଥିଅମ୍ ବ୍ୟାଟେରୀରୁ ବୈଦ୍ୟୁତିକ ଶକ୍ତି ଆହରଣ କରୁଥିବା ଯୋଗୁଁ ତାହା ଦୀର୍ଘ ସମୟଧରି କାର୍ଯ୍ୟକ୍ଷମ ରହେ ।

ଘଣ୍ଟାର ମୁହଁରେ ସମୟ ଦେଖାଇବା ପାଇଁ ଦୁଇଟି ଭିନ୍ନ ପ୍ରକାର ପଦ୍ଧତି ଅଛି । ପ୍ରଥମଟି ହେଉଛି ଗ୍ୟାଲିଅମ୍ ଓ ଆର୍ସେନାଇଡ୍‌ରୁ ସେମିକଣ୍ଡକ୍ଟରରୁ ପ୍ରସ୍ତୁତ ଡାଇଓଡ୍ ଭଲଭ (L.E.D.) ବା(Light emitting Diode)ଉପରେ ପର୍ଯ୍ୟବସିତ ଏବଂ ଅନ୍ୟଟି ହେଉଛି ତରଳସ୍ଫଟିକ ପଦ୍ଧତି (L.C.D) ବା (Liquid Crystal Device) । କିନ୍ତୁ ଡାଇଓଡ୍ ଭଲଭରେ ଅଧିକ ଶକ୍ତି ବ୍ୟୟ ହେଉଥିବାରୁ ଆଜିକାଲି ସାଧାରଣତଃ ତରଳସ୍ଫଟିକ ପଦ୍ଧତି ବ୍ୟବହୃତ ହେଉଛି । ତରଳସ୍ଫଟିକର ଧର୍ମ ହେଉଛି ଯେ ଯଦି ବିଦ୍ୟୁତ ସଙ୍କେତ ପ୍ରୟୋଗ ଯୋଗୁଁ ତାପମାତ୍ରାର ପରିବର୍ତ୍ତନ ଘଟେ, ତାହାହେଲେ ସେଇ ସ୍ଫଟିକର ରଙ୍ଗ ବଦଳିଯାଏ । ସେଥି ଇଲେକ୍ଟ୍ରୋନିକ ଘଣ୍ଟାରେ ଦୁଇଟି କାଚ୍ ପ୍ଲେଟ (ଯେଉଁଥିରେ ଡିଜିଟ୍ ପ୍ୟାଟର୍ଣ୍ଣ ମୁଦ୍ରିତ ହୋଇଥାଏ) ମଧ୍ୟରେ ତରଳସ୍ଫଟିକ ରଖାଯାଇଥାଏ ଏବଂ ତାହା ଗଣକ—ପରିପଥର ସଙ୍କେତ ଅନୁସାରେ ସମୟ ଦେଖାଏ ।

ପ୍ରକାଶ ଆଲୁଅ ସିଜିଅମ୍—୧୩୩ ଅଣୁଦ୍ୱାରା ନିର୍ମିତ ଘଡ଼ି ସର୍ବାଧୁନିକ ଓ ନିର୍ଭୁଲ ହୋଇଥିବା ସତ୍ତ୍ୱେ ଆକାର ତଥା ଅନ୍ୟାନ୍ୟ ବୈଷୟିକ ଅସୁବିଧା ଯୋଗୁଁ ତାହା ହାତଘଡ଼ି ପରି ବ୍ୟବହାର କରିବାକୁ ଆଜି ପର୍ଯ୍ୟନ୍ତ ଉପଯୁକ୍ତ ହୋଇପାରି ନାହିଁ । ତେଣୁ ଇଲେକ୍‌ଟ୍ରୋନିକ ଘଡ଼ିର ବ୍ୟବହାର, ଉପାଦେୟତା ଓ ଶ୍ରେଷ୍ଠତା ନିକଟ ଭବିଷ୍ୟତରେ ହ୍ରାସ ପାଇବାର କୌଣସି ସମ୍ଭାବନା ନାହିଁ ।



# ଏକ ବିକଳ୍ପ ମସ୍ତିଷ୍କ

୧୯୮୨ ସାଲରେ ଆମେରିକାର "ଟାଇମ୍" ମାଗାଜିନ କମ୍ପ୍ୟୁଟର୍ ପରି ଗୋଟିଏ ଯନ୍ତ୍ରକୁ ଶ୍ରେଷ୍ଠ ବ୍ୟକ୍ତିରୂପେ ବିବେଚନା କରିଥିଲା । ଏଥିରୁ ସ୍ପଷ୍ଟ ଜଣାପଡ଼େ, ଆଧୁନିକ ସଭ୍ୟତାରେ ଏହାର ସ୍ଥାନ କେତେ ଉଚ୍ଚ ଅଧିକାର କରୁଛି । କେବଳ ୧୯୮୨ ସାଲ ନୁହେଁ; ପ୍ରତିବର୍ଷ କମ୍ପ୍ୟୁଟର ନିଜର ପ୍ରାଧାନ୍ୟ ବଜାୟ ରଖିପାରୁଛି ଓ ଦିନକୁ ଦିନ ତାର ସାମ୍ରାଜ୍ୟ ଓ ବ୍ୟାପ୍ତି ବିସ୍ତାର କରିବାରେ ଲାଗିଛି । ଆଜିକାଲି ଅଧିକାଂଶ ଦୃଷ୍ଟି-ଆକର୍ଷଣକାରୀ ବୈଜ୍ଞାନିକ ମହସ୍ଥାନ ଓ ଅନୁଷ୍ଠାନ ପତ୍ରରେ କମ୍ପ୍ୟୁଟରର ବ୍ୟବହାର ଦେଖିବାକୁ ମିଳେ । ଏତଦ୍‌ବ୍ୟତୀତ ଆମର ଦୈନନ୍ଦିନ ଜୀବନରେ ମଧ୍ୟ କମ୍ପ୍ୟୁଟରର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ରେଳଗାଡ଼ି ପାଇଁ ସାମାନ୍ୟ ଟିକେଟ ଖଣ୍ଡେ କିଣିବା ପାଇଁ କମ୍ପ୍ୟୁଟର ଦରକାର ତ, ଆମ ଶରୀରର ଅଭ୍ୟନ୍ତରରେ ଲୁଚି ରହିଥିବା ରୋଗର ନିଦାନପୂର୍ବକ ଆବଶ୍ୟକୀୟ ଫଟୋ ଉଠାଇବା ପାଇଁ ମଧ୍ୟ କମ୍ପ୍ୟୁଟର ଆବଶ୍ୟକ, ଶିଶୁଟିଏ ଜନ୍ମ ହେଲେ ତା'ର ଜାତକ, ଏପରିକି ନାମକରଣ କରିବା ପାଇଁ ଆମେ କମ୍ପ୍ୟୁଟର ପାଖକୁ ଧାଇଁଲେଣି ତ, ଅନ୍ତରୀକ୍ଷରେ ମହାକାଶଯାନ ପ୍ରେରଣ ଓ ତା'ର ଗତିବିଧି ନିରୀକ୍ଷଣ କରିବା ପାଇଁ କମ୍ପ୍ୟୁଟରର ଦ୍ୱାରସ୍ଥ ହେଉଛେ । ଅତି ସାମାନ୍ୟ କାମଠାରୁ ଆରମ୍ଭ କରି ଅତ୍ୟନ୍ତ ଜଟିଳ କାର୍ଯ୍ୟମାନଙ୍କୁ କମ୍ପ୍ୟୁଟର ଖୁବ୍ ଶୀଘ୍ର ସମାଧାନ କରିପାରୁଥିବା ଯୋଗୁଁ ତାହା ଏତେବେଶି ଲୋକପ୍ରିୟତା ଓ ପ୍ରସିଦ୍ଧି ଲାଭ କରିଛି । ଅନ୍ତରୀକ୍ଷ ଗବେଷଣା, ପୁସ୍ତକ ଲେଖା, ଶିକ୍ଷାଦାନ, ରେଡ଼ିଓ ତଥା ଟେଲି ଯୋଗାଯୋଗ, ପାଣିପାଗ ଖବର ଏବଂ ଅନ୍ୟାନ୍ୟ ବୃହତ୍ ସଂସ୍ଥାମାନଙ୍କର ଯାନ୍ତ୍ରିକ ପରିଚାଳନା ପାଇଁ କମ୍ପ୍ୟୁଟର ଅପରିହାର୍ଯ୍ୟ ହେଲାଣି, ଏହି ପ୍ରକାରେ ବହୁବିଧ କାର୍ଯ୍ୟକାରିତା ଯୋଗୁଁ କମ୍ପ୍ୟୁଟରର ଗଠନ, ଆକାର ଓ ନିର୍ମାଣରେ ବହୁ-ବିଧତା

ପରିକଳିତ ହେଉଛି । ତେଣୁ ଆମେ ମିନି କମ୍ପ୍ୟୁଟରଠାରୁ ଆରମ୍ଭ କରି ସୁପର-କମ୍ପ୍ୟୁଟରର ପ୍ରଚଳନ ଦେଖିବାକୁ ପାଉ ।

କମ୍ପ୍ୟୁଟରକୁ ପ୍ରଥମେ କିଛି ଆଦେଶ ବା ଉପଦେଶ ଦେଲେ ସେ ଆମ କଥା ମାନି କାମକରେ । ଏହି ଆଦେଶ ଦେବା ପାଇଁ ଆମକୁ ଏକ ସ୍ୱତନ୍ତ୍ର ଭାଷା ବ୍ୟବହାର କରିବାକୁ ପଡ଼ିଥାଏ । ଏହାକୁ ପ୍ରୋଗ୍ରାମ ବୋଲି କୁହାଯାଏ । କମ୍ପ୍ୟୁଟରର ଭାଷା ବା ପ୍ରୋଗ୍ରାମର ଗୋଟିଏ ବିଶେଷତ୍ୱ ହେଉଛି ଯେ ଏହା ଏକାଥରକେ ବିଭିନ୍ନ କାର୍ଯ୍ୟ କରିପାରିବ ନାହିଁ । ଗୋଟିଏ କାମ ସରିଲେ ହିଁ ସେ ଅନ୍ୟ କାମ କରିପାରିବ । ତେଣୁ କମ୍ପ୍ୟୁଟର ଯେତେ ଦକ୍ଷ ହେଉ ବା କାହିଁକି, ତାର ଶକ୍ତି ସୀମିତ । ଏହି ସୀମାବଦ୍ଧତାର କାରଣ ହେଉଛି ସେଥିରେ ବ୍ୟବହୃତ ହେଉଥିବା "ଲିନିଅର ସିକ୍ୱେନସିଅଲ୍ ପ୍ରୋଗ୍ରାମ" ବା "ରୈଖିକ ପରପର ଯୋଜନା ।"

ଏହି ଦୃଷ୍ଟିରୁ ବିଚାର କଲେ ମଣିଷର ମସ୍ତିଷ୍କ କେତେ ଯେ ଉନ୍ନତ ଓ ମୌଳିକଭାବେ ଭିନ୍ନ ତାହା ଜଣାପଡ଼େ । ଆମେ ଭଲଭାବେ ଜାଣୁ ଯେ, ଆମର ପଞ୍ଚେନ୍ଦ୍ରିୟ ଆବଶ୍ୟକ ସ୍ଥଳେ ଏକା ସମୟରେ ସକ୍ରିୟ ହୋଇଥାନ୍ତି । ଉଦାହରଣସ୍ୱରୂପ ଆମେ ଆମ ଖାଇବା ବସ୍ତୁକୁ ବିଚାର କରିବା । ଆମେ ଖାଇବାବେଳେ ଖାଦ୍ୟ ସାମଗ୍ରୀ ଦେଖିପାରୁଁ; ତା'ର ଗନ୍ଧ ଶୁଙ୍ଘିପାରୁ; ତାହା ଥଣ୍ଡା କିମ୍ବା ଗରମ ଅନୁଭବ କରିପାରୁଁ; ତା'ର ସ୍ୱାଦ ବୁଝି କେଉଁଟା ପ୍ରଥମେ ଖାଇବା ଏବଂ କେଉଁଟା ପରେ ଖାଇବା ଇତ୍ୟାଦି ବିଚାର କରିପାରୁ । ପୁଣି ସେତେବେଳେ ଯଦି ପିଠି ଉପରେ ମଶାଟିଏ ବସିଲା, ଆମେ ତା' ଉପରେ ଚାପୁଡ଼ାଟାଏ ବସାଇ ଦେଉଁ । ଏହିପରି ଏକାଧିକ କାର୍ଯ୍ୟ ଆମେ ଏକା ସମୟରେ କରିପାରୁଁ । ତେଣୁ ଆମ ମସ୍ତିଷ୍କ ବହୁମୁଖୀ ଯୋଜନା କାର୍ଯ୍ୟକାରୀ କରିପାରେ, ଯାହା କି କମ୍ପ୍ୟୁଟର କରିପାରେ ନାହିଁ । କମ୍ପ୍ୟୁଟର ଯଦି ରେଳଯାତ୍ରା-ପାଇଁ ଟିକେଟ କାଟୁନ୍ତି ତ କାଟୁଛି, ସେତେବେଳେ ତାହାରେ ଯଦି ଉତ୍କଣ୍ଠା ହେଲା, ତାହା କହିବା ବା ଅନୁଭବ କରିବା ତ ଦୂରର କଥା; ଏଥିପାଇଁ ସଚେତନ ମଧ୍ୟ ହୁଏ ନାହିଁ । କିନ୍ତୁ କମ୍ପ୍ୟୁଟର ପରିବର୍ତ୍ତେ ଯଦି ଗୋଟିଏ ମଣିଷ ବସି ସେଠାରେ ଟିକେଟ କାଟୁଥାନ୍ତା, ଯାତ୍ରୀମାନଙ୍କୁ ଟିକେଟ ଦେବାବେଳେ ତାହାର ଉତ୍କଣ୍ଠା ଦେଖାଗଲେ, ସେ ଚଞ୍ଚଳ ହୋଇ ହୁଏତ ରହିପାରି ନ ଥାନ୍ତା । ତା' ମନରେ ଭୟ ଓ ଆବେଗ ସୃଷ୍ଟି ହୋଇଥାନ୍ତା । ହୁଏତ ଯାତ୍ରୀ ଭିଡ଼ ନ ଥିଲେ ପଦେ ଦି'ପଦ ଗୀତ ମଧ୍ୟ ଗାଇଥାନ୍ତା । ଏହି ଦୃଷ୍ଟିରୁ ବିଚାର କଲେ ଆମେ କହିପାରିବା ଯେ, ଆମ ମସ୍ତିଷ୍କ କମ୍ପ୍ୟୁଟରଠାରୁ ମୌଳିକଭାବେ ପୃଥକ୍ । ଆମ ମସ୍ତିଷ୍କ ଭଲ ମନ୍ଦ ବାଛିପାରେ । ମସ୍ତିଷ୍କର ଏହି ଅସୀମ କ୍ଷମତା ପଛରେ ଗୋଟିଏ ମୁଖ୍ୟ କାରଣ ହେଉଛି ଯେ,

କମ୍ପ୍ୟୁଟର ଲିନିଅର ସିକ୍ୱେନସିଅଲ ପ୍ରୋଗ୍ରାମଦ୍ୱାରା ପରିଚାଳିତ ହେଉଥିବାବେଳେ ଆମ ମସ୍ତିଷ୍କରେ ପାରାଲାଲ୍ ପ୍ରୋସେସିଂ ବା ସମାନ୍ତରାଳ ଯୋଜନାଦ୍ୱାରା କାର୍ଯ୍ୟ ସାଧିତ ହୁଏ ।

ସମାନ୍ତରାଳ ଯୋଜନା ସମ୍ପର୍କରେ ସ୍ପଷ୍ଟ ଧାରଣା ପାଇବା ପାଇଁ ଆମେ ଘରର ବୈଦ୍ୟୁତିକ ସଂଯୋଗ ପ୍ରଣାଳୀ ପ୍ରତି ଦୃଷ୍ଟି ଦେବା । ଘରେ ଆମେ ଫ୍ୟାନ୍, ବଲ୍ବ, ଫ୍ରିଜ, ଟି.ଭି ଇତ୍ୟାଦି ବ୍ୟବହାର କରୁ । ଏସବୁ ସରଞ୍ଜାମ ଏକାଥରକେ ବ୍ୟବହାର କରିବାରେ କୌଣସି ଅସୁବିଧା ହୁଏ ନାହିଁ । କାରଣ ଆମର ବୈଦ୍ୟୁତିକ ସଂଯୋଗମାନ ସମାନ୍ତରାଳ ପ୍ରଣାଳୀ ଉପରେ ପର୍ଯ୍ୟବସିତ । ଯଦି ଏହା ପଦ 'ପରପର ଯୋଜନା' ଅନୁସାରେ କରାଯାଇଥାନ୍ତା, ତା'ହେଲେ ଏକାଥରକେ ଫ୍ୟାନ, ବଲ୍ବ, ଫ୍ରିଜ, ଟି.ଭି ଇତ୍ୟାଦି ଚଳାଇବା ସମ୍ଭବ ହୋଇ ନ ଥାନ୍ତା । ଫଳରେ ଫ୍ରିଜ୍ ଚଳାଇଲେ ଟି.ଭି, ଫ୍ୟାନ୍ ଇତ୍ୟାଦି ବନ୍ଦ କରିବାକୁ ପଡ଼ିଥାନ୍ତା । ଏକ ନିର୍ଦ୍ଦିଷ୍ଟ ସମୟରେ ଅନ୍ୟସବୁ ବୈଦ୍ୟୁତିକ ସରଞ୍ଜାମ ବନ୍ଦ କରି କେବଳ ଗୋଟିଏ ସରଞ୍ଜାମ ହିଁ ବ୍ୟବହାର କରାଯାଇଥାନ୍ତା । ଏହି ଦୃଷ୍ଟାନ୍ତରୁ ଜଣାଯାଏ ଯେ, ପରପର ଯୋଜନା ପରିବର୍ତ୍ତେ ସମାନ୍ତରାଳ ଯୋଜନା ଲଗାଇଲେ, ସମକାଳୀନ ବହୁବିଧ ପ୍ରୟୋଗ ସମ୍ଭବ ହୁଏ । ସାଧାରଣ କମ୍ପ୍ୟୁଟର 'ପରପର ଯୋଜନା' ଉପରେ ପର୍ଯ୍ୟବସିତ ହୋଇଥିବାବେଳେ ସୁପର କମ୍ପ୍ୟୁଟର 'ସମାନ୍ତରାଳ ଯୋଜନା' ଉପରେ ପ୍ରତିଷ୍ଠିତ । ତେଣୁ ମୌଳିକ ସ୍ତରେ ସୁପର କମ୍ପ୍ୟୁଟର ସାଧାରଣ କମ୍ପ୍ୟୁଟର ଠାରୁ ଭିନ୍ନ ।

ପୁଣି ସାଧାରଣ କମ୍ପ୍ୟୁଟରର ଦକ୍ଷତା ଓ ବେଗ ବଢ଼ାଇବା ପାଇଁ ଅନ୍ୟ କେତେକ ପରିବର୍ତ୍ତନ କରାଯାଇ ସୁପର କମ୍ପ୍ୟୁଟର ନିର୍ମାଣ କରାଯାଏ । ଉଦାହରଣ-ସ୍ୱରୂପ, ସିଲିକନ୍‌କୁ ନଖପରି ପତଳା କରାଯାଇ ସାଧାରଣ କମ୍ପ୍ୟୁଟରରେ ଚିପ୍ ସବୁ ବ୍ୟବହାର କରାଯାଉଥିବା ବେଳେ, ସୁପର୍ କମ୍ପ୍ୟୁଟରରେ ସିଲିକନ୍ ପରିବର୍ତ୍ତେ ଗ୍ୟାଲିଅମ୍ ଆର୍ସେନାଇଡ ବ୍ୟବହୃତ ହୁଏ; କାରଣ ଗ୍ୟାଲିଅମ୍ ଆର୍ସେନାଇଡ୍ ସିଲିକନ୍ ଅପେକ୍ଷା ଚାରିଗୁଣ ଅଧିକ ଦ୍ରୁତବେଗରେ କାର୍ଯ୍ୟ କରିପାରେ, ଶୀଘ୍ର ଗରମ ହୁଏ ନାହିଁ । ଆଲୋକ ଯୋଗାଇପାରେ ଏବଂ ଆବଶ୍ୟକତା ଅନୁଯାୟୀ ତାର ସାନ୍ଦ୍ରତା ବୃଦ୍ଧି କରାଯାଇପାରେ, ଏହି ଚିପ୍‌ରେ ବହୁତ ସମନ୍ୱିତ ସର୍କିଟ ରହେ । ସେହି କମ୍ପ୍ୟୁଟରରେ ଚିପ୍ ଯେତେ ଅଧିକ ରଖାଯାଇ ପାରିବ, ତାର ସ୍ମରଣଶକ୍ତି ସେତେ ଅଧିକ ବୃଦ୍ଧି ପାଇବ । ୧୯୭୦ ମସିହାରେ ଇଲିଅକ୍‌ବ୍ର ନାମକ ସର୍ବପ୍ରଥମ ସୁପର୍ କମ୍ପ୍ୟୁଟର ନିର୍ମିତ ହୋଇଥିଲା । ଏହା ପ୍ରତି ସେକେଣ୍ଡରେ ୫୦ ମିଲିଅନ୍ ଫ୍ଲୋଟିଂ ପଏଣ୍ଟ ଅପରେସନ କରେ । ବର୍ତ୍ତମାନ ଏହାର ହାର୍ଡୱେରର ଉନ୍ନତି କରାଯାଇଛି ।

୧୯୮୫ ସାଲରେ କ୍ରେ ଦୁଇ ନାମକ ସେହି ସୁପର କମ୍ପ୍ୟୁଟର ଜୋଡ଼ଏ ମିଲିଅନ ଡଲାର ମୂଲ୍ୟରେ ନିର୍ମିତ ହୋଇଥିଲା, ତାହା ଏତେ ଦ୍ରୁତ ଗତିରେ କାମ କଲା ଯେ, ମାତ୍ର ଗୋଟିଏ ସେକେଣ୍ଡ ମଧ୍ୟରେ ବାରଶହ ମିଲିଅନ ଫ୍ଲୋଟିଂ ଅପରେସନ ପର୍ଯ୍ୟନ୍ତ ହାସଲ କଲା; କିନ୍ତୁ ଏତେ ବେଗରେ କାର୍ଯ୍ୟ କରୁଥିବା ଯୋଗୁଁ ଅତ୍ୟଧିକ ଉତ୍ତାପ ଜାତ ହୁଏ, ଯାହାକି ସର୍କିଟରେ ବ୍ୟବହାର କରାଯାଉଥିବା ସୂକ୍ଷ୍ମତାରକୁ ତରଳାଇ ନଷ୍ଟ କରିଦେବା ଭୟ ରହିଛି । ଏହି ଆଶଙ୍କାର ନିରାକରଣ ପାଇଁ ସୁପର କମ୍ପ୍ୟୁଟରକୁ ସଦାସର୍ବଦା ଶୀତଳ ରଖିବା ଅପରିହାର୍ଯ୍ୟ । ତେଣୁ ଶୀତଳକାରୀ ତରଳ ପଦାର୍ଥ ବ୍ୟବହାର କରାଯାଏ । କ୍ରେ-ଦୁଇ ସୁପର୍ କମ୍ପ୍ୟୁଟରରେ ଥିବା ବୈଦ୍ୟୁତିକ ସର୍କିଟ-ମାନଙ୍କର ଉତ୍ତାପ ସେମାନଙ୍କ ତଳରୁ ଖସାଇବା ପାଇଁ ଶୀତଳକାରୀ ଗ୍ୟାସ ବ୍ୟବହାର କରାଯାଏ । ଏହି ଗ୍ୟାସ ତରଳ-ଯବକ୍ଷାରଜାନ ହୋଇପାରିଲେ, ବ୍ୟୁତ୍ପନ୍ନ ବସ୍ତୁତ କମ୍ପିଉଟର ବୋର୍ଡ ବୈଜ୍ଞାନିକମାନେ ବିଶ୍ୱାସ କରି ଏହାର ସଫଳତା ପାଇଁ ପ୍ରଗାଢ଼ ଉଦ୍ୟମ ଚଳାଇଛନ୍ତି ।

ଆମେ ବର୍ତ୍ତମାନ ପାଣିପାଗ ସମ୍ପର୍କରେ ଯେଉଁ ଖବର ନେଉଁ କିମ୍ବା ଦୂରଦର୍ଶନରୁ ପାଉଁ, ତାହା ବିଶେଷ ନିର୍ଭରଯୋଗ୍ୟ ହୋଇପାରୁ ନାହିଁ । ପାଣିପାଗ ସମ୍ବାଦ ଅଧିକ ଠିକ୍ ଓ ନିର୍ଭରଯୋଗ୍ୟ ହେବା ପାଇଁ ସୁପର୍ କମ୍ପ୍ୟୁଟର ବ୍ୟବହାର କରାଯିବା ଆବଶ୍ୟକ । ପ୍ରକୃତରେ କହିବାକୁ ଗଲେ ପାଣିପାଗ ନିର୍ଣ୍ଣୟ କରିବା ଏତେ ସହଜ କାମ ନୁହେଁ । ଏହା ବିଭିନ୍ନ ତଥ୍ୟ ଉପରେ ନିର୍ଭର କରେ । ଯଥା—ସେହି ଅଞ୍ଚଳର ମୃତ୍ତିକାର ଅବସ୍ଥା, ସେଠାକାର ଜଙ୍ଗଲ, ବୃକ୍ଷଲତା, ସମୁଦ୍ର ଠାରୁ ଦୂରତ୍ୱ, ନିକଟବର୍ତ୍ତୀ ପର୍ବତମାନଙ୍କର ବିଶଦ ବିବରଣୀ, ବାୟୁର ବେଗ ଓ ଚାପ, ପ୍ରତି ଘଣ୍ଟାରେ ପୂର୍ବଦିନମାନଙ୍କରେ ହାରାହାରି ବୃଷ୍ଟିପାତ ତଥା ବଜ୍ରପାତ, ଅତୀତ ବର୍ଷର ମୌସୁମୀ ପ୍ରବାହ ସମ୍ପର୍କରେ ବିଭିନ୍ନ ତଥ୍ୟ ଇତ୍ୟାଦି । ପାଣିପାଗ ସମ୍ପର୍କରେ ସଠିକ୍ ଭାବେ ଭବିଷ୍ୟତ ବାଣୀ ଶୁଣାଇବାକୁ ଏତେଗୁଡ଼ାଏ ତଥ୍ୟ ଆବଶ୍ୟକ ହେଉଥିବା ଯୋଗୁଁ, ପୁଣି ଏଇ ତଥ୍ୟମାନଙ୍କ ମଧ୍ୟରେ କେତେକ ଶୀଘ୍ର ଶୀଘ୍ର ପରିବର୍ତ୍ତିତ ହେଉଥିବା କାରଣରୁ, କୌଣସି ସାଧାରଣ କମ୍ପ୍ୟୁଟର ବ୍ୟବହାର କରି ପାଣିପାଗ ବିଷୟରେ ଯଥାର୍ଥଭାବେ କିଛି ଜାଣିହେବ ନାହିଁ । ଏଥିପାଇଁ ଏପରି ଏକ ଯାନ୍ତ୍ରିକ କୌଶଳ ଆବଶ୍ୟକ, ଯାହାକି ଦ୍ରୁତ ଗତିରେ ଦକ୍ଷଭାବେ କାର୍ଯ୍ୟ କରି, ବିଭିନ୍ନ ତଥ୍ୟ-ମାନଙ୍କୁ ଏକା ସମୟରେ ପ୍ରୋସେସିଂ କରି, ଠିକ୍ ଫଳାଫଳ ଜଣାଇପାରିବ । ଏହି କାର୍ଯ୍ୟ ସୁପର କମ୍ପ୍ୟୁଟର ଦ୍ୱାରା କେବଳ ସମ୍ଭବ । ବାସ୍ତବରେ ଜଣାଯାଏ ଯେ, କୃତ୍ରିମ ଉପଗ୍ରହଦ୍ୱାରା ଯୋଗାଇ ଦିଆଯାଉଥିବା ତଥ୍ୟମାନ ବ୍ୟବହାର କରି ସୁପର୍ କମ୍ପ୍ୟୁଟର ପାଣିପାଗ ସମ୍ପର୍କରେ ଯେଉଁ ପୂର୍ବ ସୂଚନା ଦିଏ, ତାହା ଶତକଡ଼ା

ଅଣୀରୁ ପଞ୍ଚାନବେ ଭାଗ ଠିକ୍ । ଏହି କାରଣରୁ ଭାରତ ପରି ଏକ କୃଷିପ୍ରଧାନ ଦେଶ ପାଇଁ ଆମ ସରକାର ବିଦେଶରୁ ସାଇବର-୨୦୫ ଓ ଏନ.ଇ.ସି ର ୧୦୦୦ ସୁପର କଂପ୍ୟୁଟରମାନ ପାଇବା ପାଇଁ ତତ୍ପର ।

ପାଣିପାଗ ନିର୍ଣ୍ଣୟ ପରି ଜଟିଳ ଓ ଦୁଃସାଧ୍ୟ କାର୍ଯ୍ୟ କରିବା ପାଇଁ ସୁପର୍ କଂପ୍ୟୁଟର ବୈଦ୍ୟୁତିକ ଶକ୍ତି ବ୍ୟବହାର କରିଥାଏ । ଆମ ମସ୍ତିଷ୍କ ମଧ୍ୟ କାର୍ଯ୍ୟକ୍ଷମ ହେବାକୁ ଶାରୀରିକ ବୈଦ୍ୟୁତିକ ଶକ୍ତି ବ୍ୟବହାର କରେ । ଏଣୁ ପରିପ୍ରେକ୍ଷୀରେ ପ୍ରଶ୍ନ ଉଠୁଛି ଯେ, ସୁପର କମ୍ପ୍ୟୁଟର କ'ଣ କେବେ ମସ୍ତିଷ୍କର ସ୍ଥାନ ନେଇପାରିବ ? ଅଢ଼େଇ ଫୁଟ ଲମ୍ବା ସୁଷୁମ୍ନା କାଣ୍ଡ ଉପରେ ଦେଢ଼ କେଜି ଓଜନର ଧୂସର ରଙ୍ଗର ଆମ ମସ୍ତିଷ୍କ ଖପୁରିର କଠିନ ଆବରଣ ମଧ୍ୟରେ ସୁରକ୍ଷିତ ହୋଇ ରହିଥାଏ । ଏହାକୁ କେନ୍ଦ୍ରୀୟ ସ୍ନାୟୁ ତନ୍ତ୍ର କହନ୍ତି । ମସ୍ତିଷ୍କରୁ ୧୨ ହଳ ଓ ସୁଷୁମ୍ନାକାଣ୍ଡରୁ ୩୧ ଯୋଡ଼ା ସ୍ନାୟୁ ତାହାର ଆଖି, କାନ, ନାକ, ହାତ, ଗୋଡ଼ ପ୍ରଭୃତି ଆମର ବିଭିନ୍ନ ଅଙ୍ଗ-ପ୍ରତ୍ୟଙ୍ଗ ସହିତ ଯୋଡ଼ିହୋଇ ସେମାନଙ୍କ ଖବର ମସ୍ତିଷ୍କକୁ ପଠାଇଥାନ୍ତି ଏବଂ ଆବଶ୍ୟକୀୟ କାର୍ଯ୍ୟ କରିବା ପାଇଁ ନିର୍ଦ୍ଦେଶ ମଧ୍ୟ ମସ୍ତିଷ୍କରୁ ଯୋଗାଇଥାନ୍ତି । ତିନି ହଜାର ନିୟୁତ ଅନ୍ୟାନ୍ୟ କୋଷ (ଗ୍ଲାୟାଲ ସେଲ) ମସ୍ତିଷ୍କରେ ରହି ବିଭିନ୍ନ ଜଟିଳ କାର୍ଯ୍ୟମାନ ସମ୍ପାଦନ କରିଥାନ୍ତି । ଆମର ସାମ୍ପ୍ରତିକ ବୈଜ୍ଞାନିକ ପ୍ରଯୁକ୍ତି ବିଦ୍ୟା ଅନୁଯାୟୀ ମସ୍ତିଷ୍କପରି କାର୍ଯ୍ୟ ସାଧନ କରିବା ପାଇଁ ପଣ ଏକର ଜମିରେ ତିନି ମହଲା କୋଠା କରି,କୋଟିଏ ସୁପର କମ୍ପ୍ୟୁଟର ନିର୍ମାଣ କରିବା ଆବଶ୍ୟକ ହେବ । ଏଥିପାଇଁ କୋଟି କୋଟି ଟଙ୍କା ବ୍ୟୟ ହେବ । ତେଣୁ ଭଗବାନ ଆମକୁ ଯେଉଁ ମସ୍ତିଷ୍କ ଦେଇଛନ୍ତି, ତାହା କେତେଦୂର ମୂଲ୍ୟବାନ—ଏହା ଭାବିବା କଥା । ପୁଣି କାର୍ଯ୍ୟ ସ୍ଥଳରେ ସୁପର କମ୍ପ୍ୟୁଟର ଗରମ ହୋଇ ନଷ୍ଟ ହୋଇଯିବା ଭୟ ଥିବାବେଳେ ଆମର ମସ୍ତିଷ୍କ ଯେମିତି ସାରାଜୀବନ ଥଣ୍ଡା ଭାବେ ଅନବରତ କାର୍ଯ୍ୟ କରି ଚାଲିଥାଏ, ତାହା ଅଦ୍ଭୁତ ଅଧିକ ଆଶ୍ଚର୍ଯ୍ୟଜନକ । ନିର୍ଭୁଲ ଓ ଚମତ୍କାର ଭାବେ ସାଂଖ୍ୟିକ ଗଣନା କାର୍ଯ୍ୟ ଆମ ମସ୍ତିଷ୍କଦ୍ୱାରା ଯେ ସମ୍ଭବ, ତା'ର ପ୍ରମାଣ ଆମେ ବିଭିନ୍ନ ଦୃଷ୍ଟାନ୍ତରୁ ପାଉଛେ ।

୧୯୮୦ ସାଲ ଜୁନ୍ ମାସ ଅଠର ତାରିଖରେ ଲଣ୍ଡନସ୍ଥିତ ଇମ୍ପିରିଅଲ କଲେଜରେ ଗୋଟିଏ ସଭାର ଆୟୋଜନ କରାଯାଇଥିଲା । ସେଦିନର ମୁଖ୍ୟ ବିଷୟ ଥିଲା ଶ୍ରୀମତୀ ଶକୁନ୍ତଳା ଦେବୀଙ୍କର ଗଣନା-ପାରଦର୍ଶିତା ପରୀକ୍ଷା କରିବା । ତାଙ୍କୁ ତେରଅଙ୍କ ବିଶିଷ୍ଟ ଦୁଇଟି ସଂଖ୍ୟା ଗୁଣନ କରିବା ପାଇଁ କୁହାଗଲା । ସେ ମାତ୍ର ୨୮ ସେକେଣ୍ଡ ମଧ୍ୟରେ ଏହି ବିରାଟ ଗୁଣନର ଠିକ୍ ଉତ୍ତର ଦେଇ ସମସ୍ତଙ୍କୁ ଚମତ୍କୃତ କରିଦେଇଥିଲେ । ଏହିପ୍ରକାରେ ସେ ପ୍ରମାଣିତ କରିପାରିଥିଲେ ଯେ, ମଣିଷ ମଧ୍ୟ କମ୍ପ୍ୟୁଟରକୁ ବଳିଯାଇପାରେ । ଏହି କଠିନ ଗାଣିତିକ ପ୍ରଶ୍ନର ଠିକ୍ ଉତ୍ତର ସ୍ୱଳ୍ପ ସମୟ ମଧ୍ୟରେ କରିପାରି ସେ ଯେଉଁ ଅଭୂତପୂର୍ବ ଅତିମାନବୀୟ ସଫଳତା ହାସଲ

କରିପାରିଲେ, ସେଥିପାଇଁ ତାଙ୍କୁ 'ମଣିଷ-କମ୍ପ୍ୟୁଟର' ବୋଲି ଆଖ୍ୟା ଦିଆଯାଇଥିଲା । ଏହି ପ୍ରସଙ୍ଗକ୍ରମେ ତାଙ୍କ ନାମ "ଗିନିସ୍ ବୁକ୍ ଅଫ୍ ରେକର୍ଡ଼ସ୍"ରେ ଲିପିବଦ୍ଧ କରାଯାଇଛି ।

ଆମ ମସ୍ତିଷ୍କର ଏହି ପ୍ରକାର ପାରଙ୍ଗମତାର ପ୍ରମାଣ ଆମେ ପାଉଥିବାବେଳେ କମ୍ପ୍ୟୁଟର କପରି ମସ୍ତିଷ୍କର ମୌଳିକ ଗୁଣ ଅନୁକରଣ କରି ଉନ୍ନତ ହୋଇପାରୁଛି ? ତା'ର ସୂଚନା ମଧ୍ୟ ଆମେ ଇତ୍ୟବସରରେ ପାଇଲେଣି ।

୧୯୭୮ ମସିହାରେ ଅର୍ଥନୀତିରେ ନୋବେଲ ପୁରସ୍କାର ତଥା ୧୯୮୬ରେ ଯୁକ୍ତରାଷ୍ଟ୍ରର ବିଜ୍ଞାନ ପାଇଁ ଜାତୀୟ ପୁରସ୍କାର ଲାଭ କରିଥିବା ବିଶିଷ୍ଟ ଗବେଷକ ଡକ୍ଟର ହରବର୍ଟ ସିମନ୍ ମତ ଦେଇଛନ୍ତି ଯେ, କମ୍ପ୍ୟୁଟର ମଧ୍ୟ ମଣିଷପରି ଶିକ୍ଷାଲାଭ କରିପାରେ, ଯମେ ସେମିତି ଚେଷ୍ଟା କରି କରି ବିଭିନ୍ନ ବିଷୟରେ ଜ୍ଞାନ ଆହରଣ କରିଥାଉଁ, କମ୍ପ୍ୟୁଟର ମଧ୍ୟ ସେମିତି କରିବାକୁ ସକ୍ଷମ । ଯଦି କୌଣସି କମ୍ପ୍ୟୁଟର ଗୋଟିଏ ସମସ୍ୟା ସମାଧାନ କରିପାରୁ ନାହିଁ, ତାହାହେଲେ ତାକୁ ବିଭିନ୍ନ ଉଦାହରଣମାନ ଯୋଗାଇ ଦିଆଯାଉ, ତା'ପରେ ସେ ପୂର୍ବରୁ ସମାଧାନ କରିପାରି ନ ଥିବା ପ୍ରଶ୍ନ ସମାଧାନ କରି ପାରିବ—ଠିକ୍ ଯେମିତି ଆମର ପିଲାଛୁଆମାନେ ସ୍କୁଲ କଲେଜରେ ବିଭିନ୍ନ ଉଦାହରଣ ଦ୍ୱାରା କ୍ରମଶଃ ଶିକ୍ଷା ଲାଭ କରିଥାନ୍ତି ।

ଡକ୍ଟର ସିମନ୍‌ଙ୍କ ଏହି ମତ ଏବଂ ଦୃଷ୍ଟିଭଙ୍ଗୀ ଗଭୀର ଅନୁଧାନ ଉପରେ ପର୍ଯ୍ୟବସିତ । ୧୯୫୬ ମସିହାରେ ସେ ବିଶିଷ୍ଟ କମ୍ପ୍ୟୁଟର ବିଜ୍ଞାନୀ ନେଓ୍ୱେଲଙ୍କ ସହିତ କାର୍ଯ୍ୟ କରିବାକୁ ସୁଯୋଗ ପାଇଲେ । ସେତେବେଳେ ନେଓ୍ୱେଲ ଦାସ୍ତୁ ସତରଞ୍ଜ ପାଇଁ ସ୍ୱଡାର—ମାନଚିତ୍ର-ମାନ କାଲ୍‌କୁଲେଟର ଦ୍ୱାରା ପ୍ରସ୍ତୁତ କରୁଥିଲେ । ଏହା ଦେଖି ଡକ୍ଟର ସିମନ୍ ଦୃଢବିଶ୍ୱାସ କଲେ ଯେ, କମ୍ପ୍ୟୁଟର କେବଳ ସଂଖ୍ୟାମାନଙ୍କର ହିସାବ ରଖେ ନାହିଁ; ଏହା ଯେ କୌଣସି ସିମ୍ବଲ ଅର୍ଥାତ୍ ପ୍ରତୀକ ବା ସଙ୍କେତ ପ୍ରସ୍ତୁତ କରିବାକୁ ସକ୍ଷମ । ତେଣୁ ଏହାର କାର୍ଯ୍ୟପଦ୍ଧତି ଆମ ମସ୍ତିଷ୍କର କାର୍ଯ୍ୟପଦ୍ଧତି ସହିତ ସମକକ୍ଷ ହୋଇପାରେ । ଏହି ତଥ୍ୟ ଉପରେ ଭିତ୍ତିକରି ସେ କମ୍ପ୍ୟୁଟରର ଆର୍ଟିଫିସିଆଲ ଇଣ୍ଟେଲିଜେନ୍‌ସ ବା କୃତ୍ରିମ ବୁଦ୍ଧିମତ୍ତା ଉପରେ ଅଧିକ ଗବେଷଣା ଚଳାଇଲେ । ପରିଶେଷରେ ସେ ମତ ଦେଲେ, "ଯେଉଁ ବ୍ୟକ୍ତିର ଯେଉଁ ବିଷୟରେ ଅଭିଜ୍ଞତା ଥାଏ, ସେ ସେହି କ୍ଷେତ୍ରର ଅନ୍ତର୍ଦର୍ଶନ ବା ଅନ୍ତର୍ଦୃଷ୍ଟି ଚେତନା ହାସଲ କରିଥାଏ ।" ଏହି ଉକ୍ତି କମ୍ପ୍ୟୁଟର ପାଇଁ ମଧ୍ୟ ପ୍ରଯୁଜ୍ୟ । ତେଣୁ ଏହାର ଚରମ ସଫଳତାରେ ହୁଏତ ସୁପର କମ୍ପ୍ୟୁଟର ଦ୍ୱାରା ଦିନେ ମଣିଷ ପାଇଁ କୃତ୍ରିମ ମସ୍ତିଷ୍କ ପ୍ରସ୍ତୁତ କରାଯାଇ ପାରିବ । ମୋଟାମୋଟି ସବେ କହିହେବ—ଆମ ମସ୍ତିଷ୍କ ଓ କମ୍ପ୍ୟୁଟର କ୍ରମଶଃ ପରିପୂରକ କାର୍ଯ୍ୟ ସାଧନ କରି ଏକାଙ୍ଗ ହେବାକୁ ଯାଉଛନ୍ତି ।

●